# ଉତ୍କଳ ପ୍ରସଙ୍ଗ


**The Utkal Prasanga**

**February-March - 2021**

୭୭ ଭାଗ ୭ମ-୮ମ ସଂଖ୍ୟା ମାଘ-ଚୈତ୍ର ଫେବୃଆରୀ-ମାର୍ଚ୍ଚ - ୨୦୨୧




---




ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

ଫେବୃଆରୀ-ମାର୍ଚ୍ଚ-୨୦୨୧





# ଶ୍ରଦ୍ଧାଞ୍ଜଳି



ଉତ୍କଳଗୌରବ ମଧୁସୂଦନ ଦାସ



ଯୋଗଜନ୍ମା ଆଚାର୍ଯ୍ୟ ହରିହର





ଶହୀଦ ଲକ୍ଷ୍ମଣ ନାଏକ






₹ଓଡ଼ିଶା
ବଜେଟ ୨୦୨୧
ମହିଳା ଓ ଶିଶୁ କଲ୍ୟାଣ
ମୋଟ ଆବଣ୍ଟିତ ରାଶି:
₹୩,୯୦୭ କୋଟି





ପ୍ରମୁଖ ଆବଣ୍ଟନ
ମିଶନ ଶକ୍ତି କାର୍ଯ୍ୟକ୍ରମ
₹୩୧୬ କୋଟି
ପୁଷ୍ଟିସାଧନ କାର୍ଯ୍ୟକ୍ରମ
₹୧,୧୩୦ କୋଟି
ମମତା ଯୋଜନା
₹୨୭୯ କୋଟି
ବ୍ଲକସ୍ତରୀୟ ମିଶନ ଶକ୍ତି ଗୃହ ନିର୍ମାଣ
₹୧୦୦ କୋଟି





# ₹ ଓଡ଼ିଶା ବଜେଟ ୨୦୨୧

**ଶିକ୍ଷା ଓ ଦକ୍ଷତା ବିକାଶ**

**ମୋଟ ଆବଣ୍ଟିତ ରାଶି:**
**₹୨୪,୩୭୦ କୋଟି**

## ପ୍ରମୁଖ ଆବଣ୍ଟନ



ସମଗ୍ର ଶିକ୍ଷା ଅଭିଯାନ
**₹୩,୦୬୬ କୋଟି**

ମଧ୍ୟାହ୍ନ ଭୋଜନ ଯୋଜନା
**₹୯୫୭ କୋଟି**

ମେଧାବୃତ୍ତି
**₹୧,୦୦୨ କୋଟି**

ଗଙ୍ଗାଧର ମେହେର ଶିକ୍ଷା ମାନବୃଦ୍ଧି ଯୋଜନା
**₹୪୩୦ କୋଟି**

ଓଡ଼ିଶା ଆଦର୍ଶ ବିଦ୍ୟାଳୟ
**₹୨୮୦ କୋଟି**

ମୋ ସ୍କୁଲ ଅଭିଯାନ
**₹୨୫୩ କୋଟି**

ରାଷ୍ଟ୍ରୀୟ ଉଚ୍ଚତର ଶିକ୍ଷା ଅଭିଯାନ
**₹୨୧୨ କୋଟି**



# ₹ଓଡ଼ିଶା ବଜେଟ ୨୦୨୧

## କୃଷି

**ମୋଟ ଆବଣ୍ଟିତ ରାଶି:**
**₹୧୭,୪୬୯ କୋଟି**

### ପ୍ରମୁଖ ଆବଣ୍ଟନ



କାଳିଆ
₹୧,୮୦୦ କୋଟି

ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ
₹୧,୪୧୫ କୋଟି

କୃଷି ଋଣ ପ୍ରଦାନ
₹୮୧୯ କୋଟି

ପ୍ରଧାନମନ୍ତ୍ରୀ ଫସଲ ବୀମା ଯୋଜନା
₹୫୦୦ କୋଟି

କୃଷି ଯନ୍ତ୍ରପାତି କ୍ରୟରେ ରିହାତି
₹୪୫୪ କୋଟି

ଓୟୁଏଟି ଭିତ୍ତିଭୂମି ବିକାଶ
₹୧୪୮ କୋଟି

ଓଡ଼ିଶା ମିଲେଟ ମିଶନ
₹୧୦୬ କୋଟି



# ଓଡ଼ିଶା ବଜେଟ ୨୦୨୧

## ସାମାଜିକ ସୁରକ୍ଷା

**ମୋଟ ଆବଣ୍ଟିତ ରାଶି:**
**₹୨,୭୬୭ କୋଟି**



### ପ୍ରମୁଖ ଆବଣ୍ଟନ

ମଧୁବାବୁ ପେନସନ ଯୋଜନା
**₹୧,୫୦୯ କୋଟି**

ରାଜ୍ୟ ଖାଦ୍ୟ ସୁରକ୍ଷା ଯୋଜନା
**₹୯୬୯ କୋଟି**

ଜାତୀୟ ସାମାଜିକ ସହାୟତା କାର୍ଯ୍ୟକ୍ରମ
**₹୯୨୩ କୋଟି**

ଭିନ୍ନକ୍ଷମଙ୍କ କଲ୍ୟାଣ
**₹୧୦୫ କୋଟି**



# ₹ ଓଡ଼ିଶା ବଜେଟ୍ ୨୦୨୧

## ଐତିହ୍ୟ ସଂରକ୍ଷଣ ଏବଂ ପର୍ଯ୍ୟଟନ ବିକାଶ



### ପ୍ରମୁଖ ଆବଣ୍ଟନ

ବିଶ୍ୱସ୍ତରୀୟ ଭିତ୍ତିଭୂମି ନିର୍ମାଣ
₹୫୦୦ କୋଟି

ବିଶ୍ୱ ଐତିହ୍ୟ ସହର ପୁରୀ ପ୍ରକଳ୍ପ
₹୫୪୨ କୋଟି

ଏକାମ୍ର କ୍ଷେତ୍ର ପ୍ରକଳ୍ପ
₹୨୦୦ କୋଟି

ସମଲେଇ ପ୍ରକଳ୍ପ
₹୨୦୦ କୋଟି

ପର୍ଯ୍ୟଟନ ଭିତ୍ତିଭୂମିର ବିକାଶ ଓ ପରିଚାଳନା
₹୩୪୯ କୋଟି





# ଓଡ଼ିଶା ବଜେଟ ୨୦୨୧

## ଜଳସେଚନ

**ମୋଟ ଆବଣ୍ଟିତ ରାଶି:**
**₹୮,୨୬୬ କୋଟି**

### ପ୍ରମୁଖ ଆବଣ୍ଟନ



ଏଆଇବିପି ପ୍ରକଳ୍ପ
₹୨,୨୫୮ କୋଟି

ପାର୍ବତୀଗିରି ଉଠା ଜଳସେଚନ ପ୍ରକଳ୍ପ
₹୮୬୦ କୋଟି

ଇନଷ୍ଟ୍ରିମ୍ ଷ୍ଟୋରେଜ୍ ଷ୍ଟ୍ରକଚର୍
₹୭୯୫ କୋଟି

ବନ୍ୟା ପ୍ରତିରୋଧ ଓ ଡ୍ରେନେଜ୍ କାର୍ଯ୍ୟ
₹୭୧୦ କୋଟି

ଜଳ ଭିତ୍ତିଭୂମି ବିକାଶ କାର୍ଯ୍ୟକ୍ରମ
₹୪୫୪ କୋଟି

ବିଜୁ କୃଷକ ବିକାଶ ଯୋଜନା
₹୪୦୦ କୋଟି

ବୋର୍ ୱେଲ୍ ଖନନ
₹୩୮୯ କୋଟି



# ଓଡ଼ିଶା ବଜେଟ ୨୦୨୧

## କ୍ରୀଡ଼ା

### ପ୍ରମୁଖ ଆବଣ୍ଟନ

କ୍ରୀଡ଼ା ଭିତ୍ତିଭୂମି ବିକାଶ
**₹୪୦୦ କୋଟି**

ବୀର୍ସା ମୁଣ୍ଡା ଅନ୍ତର୍ଜାତୀୟ ହକି ଷ୍ଟାଡିୟମ ରାଉରକେଲା
**₹୧୨୦ କୋଟି**

କଳିଙ୍ଗ ଷ୍ଟାଡିୟମର ଉନ୍ନତିକରଣ
**₹୨୦୦ କୋଟି**

ରାଜ୍ୟ ସହରାଞ୍ଚଳ କ୍ରୀଡ଼ା ବିକାଶ ପ୍ରକଳ୍ପ
**₹୪୫୦ କୋଟି**






# ₹ ଓଡ଼ିଶା ବଜେଟ ୨୦୨୧

## ଭିତ୍ତିଭୂମି ବିକାଶ



### ପ୍ରମୁଖ ଆବଣ୍ଟନ

| ସଡକ ନିର୍ମାଣ ଓ ଉନ୍ନତିକରଣ | ଶକ୍ତି କ୍ଷେତ୍ର |
|---|---|
| ₹୨୨୯୬ କୋଟି | ₹୧୭୯୯ କୋଟି |
| **ରେଳ ପ୍ରକଳ୍ପ ବିକାଶ** | **ଏୟାରଷ୍ଟ୍ରିପ ନିର୍ମାଣ** |
| ₹୩୯୬ କୋଟି | ₹୧୦୦ କୋଟି |
| **କଟକରେ ବ୍ଲକସ୍ତରୀୟ ବସଷ୍ଟାଣ୍ଡ ଓ ନୂଆ ବସ ଟର୍ମିନାଲ ପ୍ରତିଷ୍ଠା** | **ସହରାଞ୍ଚଳ ସଡକ ଏବଂ ବରମୁଣ୍ଡା ବସଷ୍ଟାଣ୍ଡର ବିକାଶ** |
| ₹୧୦୦ କୋଟି | ₹୧୦୦ କୋଟି |



# ଓଡ଼ିଶା ବଜେଟ ୨୦୨୧





## ସ୍ୱାସ୍ଥ୍ୟ ସେବା

**ମୋଟ ଆବଣ୍ଟିତ ରାଶି:**
**₹୯,୧୬୪ କୋଟି**

### ପ୍ରମୁଖ ଆବଣ୍ଟନ



| ଯୋଜନା | ଆବଣ୍ଟନ |
| --- | --- |
| ଏସସିବି ମେଡିକାଲ କଲେଜ | ₹୫୦୦ କୋଟି |
| ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା | ₹୧,୩୫୩ କୋଟି |
| ମୁଖ୍ୟମନ୍ତ୍ରୀ ସ୍ୱାସ୍ଥ୍ୟ ସେବା ମିଶନ | ₹୧,୫୭୨ କୋଟି |
| ନିର୍ମଳ ଯୋଜନା | ₹୩୭୦ କୋଟି |
| ନିରାମୟ | ₹୬୦୦ କୋଟି |
| ନିଦାନ | ₹୨୨୯ କୋଟି |



# ₹ ଓଡ଼ିଶା ବଜେଟ ୨୦୨୧

## ଶିଳ୍ପ

**ମୋଟ ଆବଣ୍ଟିତ ରାଶି:**
**₹୧୭,୪୬୯ କୋଟି**



### ପ୍ରମୁଖ ଆବଣ୍ଟନ

ଏମଏସଏମଇକୁ ପ୍ରୋତ୍ସାହନ
**₹୪୬୫ କୋଟି**

ଶିଳ୍ପ ବିକାଶ
**₹୪୨୫ କୋଟି**

ଏମଏସଏମଇ କ୍ଷେତ୍ରକୁ କୋଭିଡ ସହାୟତା
**₹୨୮୯ କୋଟି**

ଶିଳ୍ପ ଭିତ୍ତିଭୂମି ବିକାଶ ପାଇଁ ଇଡକୋକୁ ଆର୍ଥିକ ସହାୟତା
**₹୧୫୫ କୋଟି**

ହସ୍ତତନ୍ତ, ହସ୍ତଶିଳ୍ପ, ସେରିକଲ୍ଚର ଏବଂ ବୟନଶିଳ୍ପ
**₹୧୬୩ କୋଟି**







# ₹ ଓଡ଼ିଶା ବଜେଟ ୨୦୨୧

## ଜୀବନଜୀବିକା

### ପ୍ରମୁଖ ଆବଣ୍ଟନ



ମନରେଗା ଯୋଜନା

**₹୨୦୦୧ କୋଟି**

ଦିନ ଦୟାଲ ଅନ୍ତୋଦୟ ଯୋଜନା

**₹୧୨୭୦ କୋଟି**

ମନରେଗା ଯୋଜନାରେ ଭତ୍ତା ପ୍ରଦାନ

**₹୫୦୦ କୋଟି**

ସହରାଞ୍ଚଳରେ ଶ୍ରମ ଦିବସ ସୃଷ୍ଟି

**₹୨୦୦ କୋଟି**

# ୫'ଟି' ନୀତି ତଥା 'ମୋ ସରକାର' କାର୍ଯ୍ୟକ୍ରମ ଜରିଆରେ ରାଜ୍ୟର ସମସ୍ତ ବିଭାଗ ଏବଂ ସବୁ ସରକାରୀ ସେବାରେ ପରିବର୍ତ୍ତନ ଆଣିବା ପାଇଁ ଆମେ ଅନେକ ପଦକ୍ଷେପ ଗ୍ରହଣ କରିଛୁ

ମାନ୍ୟବର ରାଜ୍ୟପାଳଙ୍କ ଅଭିଭାଷଣ ଉପରେ ଆଗତ ଧନ୍ୟବାଦ ପ୍ରସ୍ତାବକୁ ମୁଁ ସ୍ୱାଗତ କରୁଛି ।

୧. ଗତ ଏକ ବର୍ଷ ହେଲା ସାରା ବିଶ୍ୱ ଏକ ଅଭୂତପୂର୍ବ ସଙ୍କଟ ମଧ୍ୟ ଦେଇ ଗତି କରୁଛି । ମାନବ ସଭ୍ୟତାର ଇତିହାସରେ କେବେ ବି ଏପରି ଏକ ଭୟଙ୍କର ମହାମାରୀ ସାରା ବିଶ୍ୱକୁ କବଳିତ କରି ନଥିଲା । ଏହି ସଙ୍କଟ ପ୍ରତ୍ୟେକ ଦେଶ, ପ୍ରତ୍ୟେକ ସହର, ପ୍ରତ୍ୟେକ ଗାଁ ତଥା ପ୍ରତି ବ୍ୟକ୍ତିକୁ ପ୍ରଭାବିତ କରିଛି । ଏହା କେବଳ ଏକ ଜନସ୍ୱାସ୍ଥ୍ୟ ସମସ୍ୟା ନୁହେଁ, ଏହା ସମସ୍ତଙ୍କର ଅର୍ଥନୀତି ତଥା ଜୀବନ ଜୀବିକାକୁ ମଧ୍ୟ ଭୀଷଣ କ୍ଷତି କରିଛି ।




**ମାନ୍ୟବର ରାଜ୍ୟପାଳଙ୍କ ଅଭିଭାଷଣ ଉପରେ ଆଗତ ଧନ୍ୟବାଦ ପ୍ରସ୍ତାବ ଆଲୋଚନାରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଉତ୍ତର**

୨. କୋଭିଡ଼-୧୯ ମହାମାରୀ ସୃଷ୍ଟି କରିଥିବା ଆହ୍ୱାନକୁ ସମ୍ମୁଖୀନ ହେବାରେ ଆମର ବିପର୍ଯ୍ୟୟ ପ୍ରସ୍ତୁତି ତଥା ଜନସାଧାରଣଙ୍କ ସହଯୋଗ ପାଇଁ ମୁଁ ଓଡ଼ିଶାବାସୀଙ୍କୁ ଧନ୍ୟବାଦ ଜଣାଉଛି । ପରିସ୍ଥିତିର ଆଗୁଆ ଆକଳନ କରି ଆମ ସରକାର ଦୂରଦୃଷ୍ଟିର ସହ ଅନେକ ଆଗୁଆ ପଦକ୍ଷେପ ନେଇଛନ୍ତି । ଏହା ଥିଲା ଏକ ସଂପୂର୍ଣ୍ଣ ଭିନ୍ନ ଧରଣର ଯୁଦ୍ଧ ଏବଂ ଆମେ ସମସ୍ତେ ଏକ ଅଜଣା ଓ ଅଦୃଶ୍ୟ ଶତ୍ରୁ ବିରୋଧରେ ସଂଗ୍ରାମ କରୁଥିଲୁ । ସେ ଯାହାହେଉ ନା କାହିଁକି ଏକ ସମାଜ ଭାବରେ ଆମେ ସାହସ ଓ ଦୃଢ ଇଚ୍ଛାଶକ୍ତି ବଳରେ ଏହାର ଫଳପ୍ରଦ ମୁକାବିଲା କରିପାରିଛୁ ।

୩. ଓଡ଼ିଶାରେ କୋଭିଡ଼ର ପ୍ରଥମ ରୋଗୀ ଚିହ୍ନଟ ହେବାର ପୂର୍ବରୁ ଏହାକୁ ଏକ ବିପର୍ଯ୍ୟୟ ଭାବରେ ଘୋଷଣା କରିବାରେ ଆମେ ଥିଲୁ ଦେଶର ଅଳ୍ପ କେତେକ ରାଜ୍ୟମାନଙ୍କ ମଧ୍ୟରେ ଅନ୍ୟତମ । ଜାତୀୟ ସ୍ତରରେ ଲକ୍‌ଡ଼ାଉନ୍ ଘୋଷଣାର ବହୁ ପୂର୍ବରୁ ଆମ ରାଜ୍ୟ ଓଡ଼ିଶା ପ୍ରତିଷେଧକମୂଳକ ପଦକ୍ଷେପ ଭାବରେ ଲକ୍ଷ୍ୟଭିତ୍ତିକ

ଲକ୍‌ଡ଼ାଉନ୍ ଘୋଷଣା କରିଥିଲା । ସାରା ରାଜ୍ୟରେ କୋଭିଡ଼ ନିୟମାବଳୀକୁ କଡ଼ାକଡ଼ି ଭାବରେ ଲାଗୁ କରିଥିଲୁ । ଏହା ହିଁ ଭାଇରସ ସଂକ୍ରମଣକୁ ରୋକିବାରେ ବହୁ ପରିମାଣରେ ସାହାଯ୍ୟ କରିଥିଲା ।

୪. ଗରିବ ଲୋକମାନେ ଯେପରି ଅସୁବିଧାରେ ନ ପଡ଼ିବେ ସେଥିପାଇଁ ଆମେ ସେମାନଙ୍କ ପାଇଁ ଖାଦ୍ୟ ସାମଗ୍ରୀ, ପେନ୍‌ସନ୍ ଓ ବୃତ୍ତି ଆଦିର ବ୍ୟବସ୍ଥା କରିଥିଲୁ । ଅଙ୍ଗନବାଡ଼ି ମାଧ୍ୟମରେ ମଧ୍ୟ ଖାଦ୍ୟ ଯୋଗାଇ ଦିଆଯାଉଥିଲା । ରାଜ୍ୟରେ ଅନେକ ସ୍ଥାନରେ ମାଗଣା ରନ୍ଧା ଖାଦ୍ୟର ବ୍ୟବସ୍ଥା କରାଯାଇଥିଲା । ତୁଲା ବିକାଳୀଙ୍କ ପରି ଅଧିକ ସମ୍ବେଦନଶୀଳ ବର୍ଗଙ୍କ ପାଇଁ ଆର୍ଥିକ ସହାୟତାର ମଧ୍ୟ ବ୍ୟବସ୍ଥା କରାଯାଇଥିଲା ।

୫. କେବଳ କୋଭିଡ଼ ରୋଗର ଚିକିତ୍ସା ପାଇଁ ରାଜ୍ୟର ବିଭିନ୍ନ ସ୍ଥାନରେ dedicated କୋଭିଡ଼ ଡାକ୍ତରଖାନା କରିବାରେ ଓଡ଼ିଶା ହିଁ ଥିଲା ପ୍ରଥମ ରାଜ୍ୟ । ବଡ଼ ବଡ଼ ଘରୋଇ ଡାକ୍ତରଖାନା ସହିତ ମିଶି ଆମେ ସାରା ରାଜ୍ୟରେ କୋଭିଡ଼ ଡ଼ାକ୍ତରଖାନା ଖୋଲିଥିଲୁ । ଏସବୁ କାମ ରେକର୍ଡ଼ ସମୟ ମଧ୍ୟରେ ବ୍ୟବସ୍ଥା କରାଯାଇଥିଲା । covid care centre ଏବଂ temporary medical camp ସହିତ ଏହି କୋଭିଡ଼ ଡାକ୍ତରଖାନାଗୁଡ଼ିକ କମ୍ ସମୟ ମଧ୍ୟରେ ହଜାର ହଜାର ରୋଗୀଙ୍କୁ ସଫଳ ଭାବରେ ସ୍ୱାସ୍ଥ୍ୟ ସେବା ଯୋଗାଇ ଦେଇଥିଲେ । ଅଗଷ୍ଟ-ସେପ୍ଟେମ୍ବର ୨୦୨୦ ମାସରେ ରାଜ୍ୟରେ ଦ୍ରୁତ ଗତିରେ ବୃଦ୍ଧି ପାଉଥିବା ସଂକ୍ରମଣ ସମୟରେ ମଧ୍ୟ ଯେପରି ଲୋକମାନେ ଆତଙ୍କିତ ହେବେ ନାହିଁ ସେ ଦିଗରେ ଏହି ଡ଼ାକ୍ତରଖାନାଗୁଡ଼ିକ ଏବଂ ଆମ୍ବୁଲାନ୍ସ ସେବା ତା'ର ନିରଳସ ଉଦ୍ୟମ ଜାରି ରଖିଥିଲା ।

୬. ସେ ସଙ୍କଟ ସମୟରେ ଓଡ଼ିଶା ବାହାରେ ରହୁଥିବା ଆମର ଲକ୍ଷ ଲକ୍ଷ ଭାଇ ଭଉଣୀ ନିଜ ନିଜ ଘରକୁ ଫେରିଥିଲେ । ସେହି ଦାୟିତ୍ୱକୁ ଆମେ ଅତ୍ୟନ୍ତ ଦକ୍ଷତା ଓ ସମ୍ବେଦନଶୀଳତାର ସହ ନିର୍ବାହ କରିଥିଲୁ । ଗାଁ ସ୍ତର ପର୍ଯ୍ୟନ୍ତ ଏଭଳି ବିପୁଳ ସଂଖ୍ୟାରେ ସଙ୍ଗରୋଧ କେନ୍ଦ୍ର ଖୋଲିବାରେ ଆମେ ସମ୍ଭବତଃ ଦେଶର ଏକମାତ୍ର ରାଜ୍ୟ ଥିଲୁ । ସାରା ରାଜ୍ୟରେ କୋଭିଡ଼ ସଙ୍କଟର ସଫଳ ମୁକାବିଲା ପାଇଁ ଆମର ସରପଞ୍ଚ, ପଞ୍ଚାୟତ ପ୍ରତିନିଧି, ମିଶନ ଶକ୍ତିର ମା'ମାନେ ଏବଂ ଆଶାକର୍ମୀଙ୍କ ପରି କ୍ଷେତ୍ର କର୍ମଚାରୀମାନେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ନିର୍ବାହ କରିଥିଲେ ।

୭. ସେହି ସମୟରେ ଆମେ ଅମ୍ଫାନ ମହାବାତ୍ୟାର ମଧ୍ୟ ସମ୍ମୁଖୀନ ହୋଇଥିଲୁ । ଜନସାଧାରଣଙ୍କ ସାହାଯ୍ୟ ଓ ସହଯୋଗ ଯୋଗୁଁ ଏହି ଆହ୍ୱାନର ମଧ୍ୟ ସଫଳ ମୁକାବିଲା କରିଥିଲୁ ।

୮. ଆମ କୋଭିଡ଼ ପରିଚାଳନାର ବିଶେଷତ୍ୱ ଥିଲା ପରୀକ୍ଷାଠାରୁ ଆରମ୍ଭ କରି ଚିକିତ୍ସା ପର୍ଯ୍ୟନ୍ତ ସବୁକିଛି ସମସ୍ତଙ୍କ ପାଇଁ ମାଗଣାରେ ହିଁ ମିଳୁଥିଲା । କୋଭିଡ଼ ପଜିଟିଭ ରୋଗୀଙ୍କୁ ଶୀଘ୍ର ଚିହ୍ନଟ କରିବା, ଅଲଗା ରଖିବା ତଥା ଚିକିତ୍ସା କରିବାରେ ଏହା ବିଶେଷ ସହାୟକ ହୋଇଥିଲା । ଅନ୍ୟ ରାଜ୍ୟ ତୁଳନାରେ ଆମ ରାଜ୍ୟରେ ମୃତ୍ୟୁ ସଂଖ୍ୟା କମ୍ କରିବାରେ ଏହା ଥିଲା ଏକ ମୁଖ୍ୟ କାରଣ । କୋଭିଡ଼ ପରିଚାଳନାରେ ଗୋଷ୍ଠୀକୁ ଅନ୍ତର୍ଭୁକ୍ତ କରିବା ଦ୍ୱାରା ଆମେ ବ୍ୟାପକ ସଚେତନତା ସୃଷ୍ଟି କରିପାରିଥିଲୁ ଏବଂ ସ୍ଥାନୀୟ ଭାବରେ ମଧ୍ୟ କୋଭିଡ଼ ରୋଗ ପରିଚାଳନା ଠିକ୍ ଭାବରେ କରିପାରିଥିଲୁ । ମହାମାରୀର ସଫଳ ମୁକାବିଲା ପାଇଁ ଓଡ଼ିଶା ଡବ୍ଲୁଏଚ୍‌ଓ ତଥା ଅନ୍ୟ ପ୍ରସିଦ୍ଧ ଅନୁଷ୍ଠାନଗୁଡ଼ିକ ଦ୍ୱାରା ମଧ୍ୟ ପ୍ରଶଂସିତ ହୋଇଛି ।

୯. ଏକ ଅନିଶ୍ଚିତ ପରିସ୍ଥିତି ତଥା ସାମାଜିକ ପ୍ରତିବନ୍ଧକରୁ ଆମେ ଆଜି ଟିକାକରଣରେ ପହଞ୍ଚିଛୁ ଏବଂ ଜୀବନ ସ୍ୱାଭାବିକ ହେବା ଆରମ୍ଭ କରିଛି । ଏହି ଅବସରରେ ମୁଁ ଆମର ପଞ୍ଚାୟତ ପ୍ରତିନିଧିମାନଙ୍କଠାରୁ ଆରମ୍ଭ କରି ମିଶନ ଶକ୍ତିର ମା'ମାନଙ୍କୁ, ପ୍ରଶାସନ ତଥା ସ୍ୱାସ୍ଥ୍ୟ ବିଭାଗର କର୍ମଚାରୀ, ପୋଲିସ ଇତ୍ୟାଦି ସମସ୍ତଙ୍କୁ ଦୀର୍ଘ ସମୟଧରି ସେମାନଙ୍କ କଠିନ ପରିଶ୍ରମ ପାଇଁ ଧନ୍ୟବାଦ ଜଣାଉଛି । କରୋନା ବିରୋଧରେ ସଂଗ୍ରାମରେ ଶହୀଦ ହୋଇଥିବା ଆମର କୋଭିଡ଼ ଯୋଦ୍ଧାମାନଙ୍କ ତ୍ୟାଗକୁ ଆମେ ସବୁଦିନ ଶ୍ରଦ୍ଧାର ସହ ସ୍ମରଣ କରୁଥିବୁ । ଏହି ଯୋଦ୍ଧାମାନଙ୍କ ପରିବାରକୁ ସରକାର ସବୁ ପ୍ରକାର ସହଯୋଗ ଯୋଗାଇ ଦେବେ ଯଦିଓ ସଂକ୍ରମଣ କମିଛି । ତଥାପି ଯୁଦ୍ଧ ବିରତି ପାଇଁ ଆମକୁ ଆହୁରି ପଥ ଅତିକ୍ରମ କରିବାକୁ ହେବ । ମହାରାଷ୍ଟ୍ର ତଥା ଅନ୍ୟ କେତେକ

ରାଜ୍ୟରେ ଏବେ ଯେଭଳି କୋଭିଡ଼ ଆକ୍ରାନ୍ତଙ୍କ ସଂଖ୍ୟା ପୁଣି ବୃଦ୍ଧି ପାଉଛି, ତାହା ଚିନ୍ତାଜନକ । ତେଣୁ ମାସ୍କ ପିନ୍ଧିବା, ସାମାଜିକ ଦୂରତ୍ୱ ରଖିବା ଏବଂ କୋଭିଡ଼ ନିୟମାବଳୀକୁ କଡ଼ାକଡ଼ି ଭାବରେ ପାଳନ କରିବା ପାଇଁ ମୁଁ ଓଡ଼ିଶାବାସୀଙ୍କୁ ଅନୁରୋଧ କରୁଛି ।

୧୦. ଆମ ସରକାର ସବୁବେଳେ ଗୋଟିଏ ଲକ୍ଷ୍ୟ ନେଇ କାମ କରୁଛି, ତାହା ହେଲା ପ୍ରତିଟି ଜୀବନ ଆମ ପାଇଁ ମୂଲ୍ୟବାନ ।

ସ୍ୱାସ୍ଥ୍ୟ ସେବା କ୍ଷେତ୍ରରେ ବିକାଶ ପାଇଁ ଆମେ ଅନେକ ଅର୍ଥ ଖର୍ଚ୍ଚ କରୁଛୁ । ଜିଲ୍ଲା ଚିକିତ୍ସାଳୟ ତଥା ମେଡ଼ିକାଲ କଲେଜ ପରି ବଡ଼ ବଡ଼ ସ୍ୱାସ୍ଥ୍ୟ ପ୍ରକଳ୍ପ କାମ ଜାରି ରହିଛି । ଏସ୍‌ସିବି ମେଡିକାଲ କଲେଜ୍ ଏବଂ ହସ୍‌ପିଟାଲ୍‌କୁ ଦେଶର ଏକ ଅଗ୍ରଣୀ ସ୍ୱାସ୍ଥ୍ୟ ପ୍ରତିଷ୍ଠାନ ଭାବରେ ଗଢ଼ିବା ପାଇଁ ଆମେ ୩୫୦୦ କୋଟି ଟଙ୍କା ବିନିଯୋଗର ପ୍ରସ୍ତାବ ରଖିଛୁ । ମୁଁ ଆଶା କରୁଛି ଯେ ଏଭଳି ଏକ ଉଚ୍ଚସ୍ତରୀୟ ସ୍ୱାସ୍ଥ୍ୟ ଭିତ୍ତିଭୂମି ଏବଂ ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା ଦ୍ୱାରା ଆମ ରାଜ୍ୟର ଲୋକମାନେ ମାଗଣାରେ ଗୁଣାତ୍ମକ ସ୍ୱାସ୍ଥ୍ୟ ସେବା ପାଇପାରିବେ ।

୧୧. ରାଜ୍ୟ ଅର୍ଥନୀତିକୁ ମହାମାରୀ ପ୍ରଭାବରୁ ପୁନରୁଦ୍ଧାର କରିବା ଆମର ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଆହ୍ୱାନ ଥିଲା । ମୁଁ ଖୁସିର ସହ କହିବାକୁ ଚାହେଁ ଯେ, ଆମ ଅର୍ଥନୀତି ପୂର୍ବ ଅବସ୍ଥାକୁ ଫେରି ଆସିଛି ଏବଂ ଗତବର୍ଷର ଏହି ସମୟ ତୁଳନାରେ ଆମର ରାଜସ୍ୱ ୭.୫% ବୃଦ୍ଧି ପାଇଛି । ଓଡ଼ିଶାର ଆର୍ଥିକ ସ୍ଥିତି ଦେଶର ଅନ୍ୟ ରାଜ୍ୟମାନଙ୍କଠାରୁ ବହୁତ ଭଲ ଅଛି ।

୧୨. ମହାମାରୀ ସଙ୍କଟରୁ ଉଦ୍ଧାରିବା ପାଇଁ ଆମେ MSMEମାନଙ୍କୁ ଆର୍ଥିକ ସହାୟତା ଦେଇଛୁ । ଲକ୍‌ଡାଉନ୍ ସମୟରେ ଯେପରି ଶିଳ୍ପମାନଙ୍କର ଯୋଗାଣ ଓ production ପ୍ରଭାବିତ ନ ହୁଏ, ସେଥିପାଇଁ ଆମେ ସେମାନଙ୍କ ସହ ନିରନ୍ତର ସଂପର୍କରେ ଥିଲୁ ।

୧୩. ମହାମାରୀ ସତ୍ତ୍ୱେ ଓଡ଼ିଶା ଦେଶର ଏକ ପ୍ରମୁଖ ପୁଞ୍ଜିନିବେଶ ସ୍ଥାନ ହୋଇପାରିଛି । ଗତ ଏକ ବର୍ଷ ମଧ୍ୟରେ ଓଡ଼ିଶାରେ ୧.୨ ଲକ୍ଷ କୋଟିରୁ ଅଧିକ ଟଙ୍କାର ପୁଞ୍ଜି ବିନିଯୋଗ ହୋଇଛି । start up rankingରେ ମଧ୍ୟ ଆମେ top performer ହୋଇପାରିଛୁ । ଆଗାମୀ ଦିନରେ ଏ ଦିଗରେ ଆମେ ଆମର ଉଦ୍ୟମ ଜାରି ରଖିବୁ ।

୧୪. ଐତିହ୍ୟ ସଂରକ୍ଷଣ ଏବଂ ବିକାଶ ଆମର ସର୍ବୋଚ୍ଚ ପ୍ରାଥମିକତା ରହିଆସିଛି । ଜନସାଧାରଣଙ୍କ ସହଯୋଗରେ ପୁରୀ, ଏକାମ୍ର କ୍ଷେତ୍ର, ମା' ସମଲେଶ୍ୱରୀ, ହରିଶଙ୍କର, ନୃସିଂହନାଥ, କୋଣାର୍କ, ତାରାତାରେଣୀ ଆଦି ପୀଠମାନଙ୍କରେ ବ୍ୟାପକ ବିକାଶ ପାଇଁ ପଦକ୍ଷେପ ନେଇଛୁ । ଓଡ଼ିଶା ମହାନ୍ ଐତିହ୍ୟ ସମ୍ପନ୍ନ ରାଜ୍ୟ । ସାରା ବିଶ୍ୱରେ ଆମ ସଂସ୍କୃତିର ପ୍ରସାର ପାଇଁ ଆମେ ସମସ୍ତେ ଏକାଠି କାମ କରିବା ଦରକାର । ଉତ୍ତମ ସୁବିଧା ସୁଯୋଗର ବିକାଶ ଦ୍ୱାରା ଓଡ଼ିଶାକୁ ସାରା ବିଶ୍ୱର ବହୁ ତୀର୍ଥଯାତ୍ରୀ ଓ ପର୍ଯ୍ୟଟକଙ୍କ ଆଗମନ ବଢିବ । ତେଣୁ ପୁରୀରେ ଏକ ଆନ୍ତର୍ଜାତିକ ବିମାନବନ୍ଦର ପାଇଁ ଆମେ ପ୍ରସ୍ତାବ ଦେଇଛୁ । ଆମର ଏସବୁ ପଦକ୍ଷେପ ଆମ ସଂସ୍କୃତିର ବିକାଶ ସହ ଅର୍ଥନୀତିକୁ ମଧ୍ୟ ସମୃଦ୍ଧ କରିବ ।

୧୫. ଆମର eco retreat project ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବାରେ ସଫଳ ହୋଇଛି ଏବଂ ଏହା ପର୍ଯ୍ୟଟନ କ୍ଷେତ୍ରକୁ ଚଳଚଞ୍ଚଳ କରିଛି । ପୁରୀର blue flag beach ପ୍ରମାଣିତ କରିଛି ଯେ ଆମର ବେଳାଭୂମି ଓ ପର୍ଯ୍ୟଟନ ଭିତ୍ତିଭୂମି ବିଶ୍ୱସ୍ତରୀୟ ହେବାର ସାମର୍ଥ୍ୟ ରଖିଛି ।

୧୬. ଉଭୟ ସହର ଓ ଗ୍ରାମାଞ୍ଚଳରେ ପାଇପ ପାଣି ଯୋଗାଣ ଆମର ଏକ ମୁଖ୍ୟ ଫୋକସ । ୭୨୦୦ କୋଟି ଟଙ୍କାର ୨୭ mega pipe water supply ପ୍ରକଳ୍ପ କାମ ଆରମ୍ଭ ହୋଇଛି । ଶତପ୍ରତିଶତ ଘରକୁ ପାଇପ ପାଣି ଯୋଗାଇବାରେ ଭୁବନେଶ୍ୱର ଦେଶର ପ୍ରଥମ ପ୍ରମୁଖ ସହର ।

୧୭. ଗଭୀର ନଳକୂପ ଯୋଜନା ଏବଂ ପାର୍ବତୀ ଗିରି ମେଗା ଉଠା ଜଳସେଚନ ଯୋଜନା ରାଜ୍ୟର ଜଳସେଚନ ଦୃଶ୍ୟପଟ୍ଟରେ ବ୍ୟାପକ ପରିବର୍ତ୍ତନ ଆଣିଛି । ଜଳସମ୍ବଳର ଦକ୍ଷ ପରିଚାଳନା ତଥା ସଂରକ୍ଷଣ ପାଇଁ ଆମେ ଆଗାମୀ ୪.୫ ବର୍ଷ ମଧ୍ୟରେ ୧୧,୭୦୦ କୋଟି ଟଙ୍କା ବିନିଯୋଗ କରିବୁ ।

୧୮. ଆମର ଚାଷୀ କୈନ୍ଦ୍ରିକ ଯୋଜନା ଯଥା 'କାଳିଆ' ଓ 'ବଳରାମ' ଯୋଜନା କୃଷି କଲ୍ୟାଣ କ୍ଷେତ୍ରରେ ସାରା ଦେଶରେ ଅଗ୍ରଦୂତ ସାଜିଛି । ଆମର ମାଣ୍ଡିଆ ମିଶନକୁ ନୀତି ଆୟୋଗ ଶ୍ରେଷ୍ଠ ମଡ଼େଲ ସ୍ୱୀକୃତି ପ୍ରଦାନ କରିଛି । ମତ୍ସ୍ୟ production‌ରେ ଓଡ଼ିଶା best marine state ମାନ୍ୟତା ପାଇଛି । ଆନୁଷଙ୍ଗିକ କୃଷି ଉପରେ ଆମର ଦୃଷ୍ଟି କେନ୍ଦ୍ରିତ କରିବା ସହ କୃଷିକୁ ସହାୟତା କାର୍ଯ୍ୟକ୍ରମ ଜାରି ରହିବ ।

୧୯. ୫'ଟି' ନୀତି ତଥା 'ମୋ ସରକାର' କାର୍ଯ୍ୟକ୍ରମ ଜରିଆରେ ରାଜ୍ୟର ସମସ୍ତ ବିଭାଗ ଏବଂ ସବୁ ସରକାରୀ ସେବାରେ ପରିବର୍ତ୍ତନ ଆଣିବା ପାଇଁ ଆମେ ଅନେକ ପଦକ୍ଷେପ ଗ୍ରହଣ କରିଛୁ । କୋଭିଡ଼ ସଂପର୍କିତ କଟକଣା ସତ୍ତ୍ୱେ ଆମେ କେତେକ online services ଏବଂ ରୂପାନ୍ତରମୂଳକ ଉପକ୍ରମ ଆରମ୍ଭ କରିଛୁ । ସରକାରୀ ସେବା ଯୋଗାଣରେ ଦକ୍ଷତା ଏବଂ ଗୁଣବତ୍ତା କ୍ଷେତ୍ରରେ ଆସିଥିବା ପ୍ରଭେଦକୁ ଜନସାଧାରଣ ଭଲ ଭାବରେ ଉପଲବ୍ଧି କରୁଛନ୍ତି ଏବଂ ମୋ ସରକାର feed back‌ରେ ଏହାର ସ୍ପଷ୍ଟ ସୂଚନା ମିଳୁଛି।

୨୦. ଆମେ ଏପରି ଏକ ସଶକ୍ତ ଓଡ଼ିଶା ଗଠନ ପାଇଁ ଦୃଢ଼ ଭାବରେ ଅଗ୍ରସର ହେଉଛୁ, ଯାହାକି ଲୋକଙ୍କ ଆଶା ଆକାଂକ୍ଷାକୁ ପୂରଣ କରିବା ସହ ସେମାନଙ୍କୁ ବଡ଼ ବଡ଼ ସ୍ୱପ୍ନ ଦେଖିବା ଏବଂ ସେମାନଙ୍କ ସାମର୍ଥ୍ୟକୁ ସଫଳ ରୂପ ଦେବାରେ ଅମାପ ସୁଯୋଗ ଦେବ ।

**ବନ୍ଦେ ଉତ୍କଳ ଜନନୀ ।**



# ମା’ ସମଲେଶ୍ୱରୀ ମନ୍ଦିରର ବିକାଶ ପାଇଁ ୨୦୦ କୋଟି ଟଙ୍କାର ‘ସମଲେଇ ଯୋଜନା’ ପ୍ରସ୍ତୁତ



କୋଟି କୋଟି ଓଡିଆଙ୍କ ଆସ୍ଥା ଓ ବିଶ୍ୱାସର କେନ୍ଦ୍ର ମା’ ସମଲେଇ । ମା’ଙ୍କ ପବିତ୍ର ପୀଠ ସମ୍ବଲପୁରର ମା’ ସମଲେଶ୍ୱରୀ ମନ୍ଦିର । ପ୍ରତିଦିନ ରାଜ୍ୟ ତଥା ରାଜ୍ୟ ବାହାରୁ ହଜାର ହଜାର ଭକ୍ତ ମା’ଙ୍କ ଦର୍ଶନ ପାଇଁ ଆସିଥାନ୍ତି । ନବରାତ୍ରୀ, ଦଶହରା, ନୂଆଖାଇ ଓ ଗୁରୁତ୍ୱପୂର୍ଣ୍ଣ ପର୍ବପର୍ବାଣି ମାନଙ୍କରେ ମା’ଙ୍କ ପୀଠରେ ଭକ୍ତ ସମାଗମ ବୃଦ୍ଧି ହୋଇଥାଏ ।

ପୁରୀର ଶ୍ରୀଜଗନ୍ନାଥ ଓ ଭୁବନେଶ୍ୱରର ଶ୍ରୀ ଲିଙ୍ଗରାଜ ମନ୍ଦିର ପରେ ୫‘ଟି’ ଉପକ୍ରମ ଅଧୀନରେ ରାଜ୍ୟର ଅନ୍ୟତମ ପ୍ରସିଦ୍ଧ ଦେବୀପୀଠ ସମ୍ବଲପୁରର ମା’ ସମଲେଇଙ୍କ ମନ୍ଦିର ଅଞ୍ଚଳର ବିକାଶ ପାଇଁ ରାଜ୍ୟ ସରକାର ଯୋଜନା ପ୍ରସ୍ତୁତ କରିଛନ୍ତି । ଏ ସଂପର୍କରେ ପୂର୍ତ୍ତ ବିଭାଗ ପକ୍ଷରୁ ପ୍ରସ୍ତୁତ ଚିଠା ପ୍ରସ୍ତାବକୁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନିକଟରେ ଉପସ୍ଥାପନା କରାଯାଇଥିଲା ।

ଷୋଡ଼ଶ ଶତାବ୍ଦୀରେ ନିର୍ମିତ ମା’ ସମଲେଶ୍ୱରୀଙ୍କ ପୀଠର ବିକାଶ ପାଇଁ ରାଜ୍ୟ ସରକାର Samaleswari Temple Area Management & Local Economy Initiatives (SAMALEI) ଯୋଜନା ଆରମ୍ଭ କରିବାକୁ ଯାଉଛନ୍ତି । ୨୦୨୧-୨୨ ଆର୍ଥିକ ବର୍ଷରେ ୨୦୦ କୋଟି ଟଙ୍କା ଖର୍ଚ୍ଚ କରାଯାଇ ସମଲେଶ୍ୱରୀଙ୍କ ପୀଠ ତଥା ଆଖପାଖର ୧୦୮ ଏକର ଜମିରେ ବିକାଶ କରାଯିବ । ଏହି ଯୋଜନାରେ ମା’ଙ୍କ ମନ୍ଦିରର ସୌନ୍ଦର୍ଯ୍ୟକରଣ, ସ୍ଥାନୀୟ ଲୋକଙ୍କ ଆର୍ଥିକ ବିକାଶ ତଥା ପର୍ଯ୍ୟଟକ ଓ ଭକ୍ତମାନଙ୍କ ପାଇଁ ଏକ ଅନନ୍ୟ ଅନୁଭୂତି ହେବା ଉଦ୍ଦେଶ୍ୟରେ ଏହି ପ୍ରକଳ୍ପ କାର୍ଯ୍ୟ କରିବ ।

### ୧. ମା’ ଙ୍କ ମନ୍ଦିରର ସୁରକ୍ଷା ଓ ବିକାଶ

ମା’ଙ୍କ ମନ୍ଦିର ଅଞ୍ଚଳ ୧୨ ଏକର ଜମି ଉପରେ ପ୍ରତିଷ୍ଠିତ । ତେଣୁ ଏଠାକୁ ଆସୁଥିବା ଭକ୍ତମାନେ ଯେଭଳି ସୁବିଧାରେ ମା’ଙ୍କର ଦର୍ଶନ କରିପାରିବେ, ସେଥିପାଇଁ ଧାଡି ପରିଚାଳନା ବ୍ୟବସ୍ଥା, ବିଭିନ୍ନ ଧାର୍ମିକ ଉତ୍ସବ ଅନୁଷ୍ଠାନ ପାଇଁ ସ୍ଥାନ ସହିତ ଭୋଗମଣ୍ଡପ ଓ ପୂଜାରୀଙ୍କ ବିଶ୍ରାମଗୃହ ନିର୍ମାଣ କରାଯିବ ।

ମନ୍ଦିରର ଚାରି ଦିଗରେ ୪ଟି ସୁଦୃଶ୍ୟ ଐତିହ୍ୟ ଦ୍ୱାର ନିର୍ମାଣ କରାଯିବ । ଭକ୍ତମାନେ ପୂର୍ବଦ୍ୱାର ଦେଇ ମନ୍ଦିରକୁ ପ୍ରବେଶ କରିବେ ଏବଂ ଅନ୍ୟ ୩ଟି ଦ୍ୱାର ଦେଇ ବାହାରକୁ ବାହାରିବେ ।

ମନ୍ଦିରର ମୁଖ୍ୟ ପ୍ରବେଶ ଦ୍ୱାର ପାଖରେ ମନ୍ଦିର କାର୍ଯ୍ୟାଳୟ, Interpretation Centre ଏବଂ ଜନସାଧାରଣଙ୍କ ପାଇଁ ଜରୁରୀ ସୁବିଧାର ବିକାଶ କରାଯିବ ।

ମନ୍ଦିର ନିକଟରେ ଅବସ୍ଥିତ ଗୋପାଳଜୀ ମଠର ସଂରକ୍ଷଣ କରାଯିବ ଏବଂ ଏହାର ବିକାଶକୁ ମୂଳ ଯୋଜନା ସହ ସମନ୍ୱିତ କରାଯିବ ।

**ସୁଦୃଶ୍ୟ ସ୍ୱାଗତ ତୋରଣ , ପରିକ୍ରମା ଓ ମହାନଦୀ ଆଳତି ଭକ୍ତମାନଙ୍କୁ ଅନନ୍ୟ ଅନୁଭୂତି ଦେବ ।**

**ମାନବୀୟ ଦୃଷ୍ଟିରୁ ବିଚାର କରି ପ୍ରଭାବିତ ଲୋକଙ୍କ ପାଇଁ ଉଦାର ଥଇଥାନ ପ୍ୟାକେଜ ।**

### ୨. ଐତିହ୍ୟ କରିଡ଼ର

ମନ୍ଦିର ଚାରିପଟେ ଭକ୍ତମାନେ ଯେପରି ସୁବିଧାରେ ପରିକ୍ରମା କରିପାରିବେ, ସେଥିପାଇଁ ୧ କିଲୋମିଟର ଦୈର୍ଘ୍ୟ ବିଶିଷ୍ଟ ଏକ ପାଦଚଲା ରାସ୍ତା ନିର୍ମାଣ କରାଯିବ । ସମ୍ବଲପୁରର ଜଳବାୟୁକୁ ଦୃଷ୍ଟିରେ ରଖି ପରିକ୍ରମା ପଥରେ ଛାୟାପ୍ରଦ ବୃକ୍ଷ ଆଦି ରୋପଣ କରାଯିବ ।

### ୩. ଯାତ୍ରୀ ସୁବିଧା

ଯାତ୍ରୀମାନଙ୍କ ପାଇଁ ସେଠାରେ ପର୍ଯ୍ୟାପ୍ତ ସୁବିଧାର ବିକାଶ କରାଯିବ ଏବଂ ତା'ସହିତ ପାର୍କିଂ ଜାଗା, ସ୍ୱତନ୍ତ୍ର Vending zone, ଶୌଚାଳୟ, ସୂଚନା କେନ୍ଦ୍ର, ଦାନ କେନ୍ଦ୍ର ଇତ୍ୟାଦି ବ୍ୟବସ୍ଥା ରଖାଯିବ । ତା'ସହିତ ମନ୍ଦିର ପାଖରେ ଯାତ୍ରୀନିବାସର ମଧ୍ୟ ସୁବିଧା ଉପଲବ୍ଧ ହେବ ।

### ୪. ସେବାୟତ ପରିବାର ପାଇଁ ବାସଗୃହ

ମନ୍ଦିର ନିକଟରେ ରହୁଥିବା ସେବାୟତମାନଙ୍କ ପାଇଁ ସୁରକ୍ଷିତ ବାସଗୃହ ପ୍ରକଳ୍ପ ହାତକୁ ନିଆଯିବ ଏବଂ ଏଥିରେ ସମସ୍ତ ପ୍ରକାର ମୌଳିକ ସୁବିଧାର ବିକାଶ କରାଯିବ ।

### ୫. ମନ୍ଦିର ଓ ମହାନଦୀ ସଂଯୋଗ ରାସ୍ତା

ମା'ଙ୍କ ଦର୍ଶନ ପାଇଁ ଆସୁଥିବା ଭକ୍ତମାନେ ଯେପରି ମନ୍ଦିରରୁ ମହାନଦୀ ଘାଟକୁ ସୁବିଧାରେ ଯାଇପାରିବେ, ସେଥିପାଇଁ ୩୦ ମିଟର ଚଉଡା ବିଶିଷ୍ଟ ପାଦଚଲା ରାସ୍ତାର ମଧ୍ୟ ବିକାଶ କରାଯିବ ।

### ୬. ମହାନଦୀ ଆଳତି

ଉପରୋକ୍ତ ପାଦଚଲା ରାସ୍ତାର ମଧ୍ୟଭାଗରେ ଏକ ୩୦ ମିଟର ବିଶିଷ୍ଟ Deck ନିର୍ମାଣ କରାଯିବ, ଯେଉଁଠାରୁ କି ଉଭୟ ମହାନଦୀ ଓ ମା'ଙ୍କ ମନ୍ଦିର ସ୍ପଷ୍ଟ ଭାବରେ ଦେଖାଯିବ । ସେଠାରେ ପ୍ରତିଦିନ ମହାନଦୀ ଆଳତି ଭକ୍ତମାନଙ୍କୁ ଏକ ଅନନ୍ୟ ଆଧ୍ୟାତ୍ମିକ ଅନୁଭୂତି ଦେବ ।

### ୭. ରିଙ୍ଗ ରୋଡ ବିକାଶ

ବର୍ତ୍ତମାନର ରିଙ୍ଗ ରୋଡକୁ ଚଉଡା କରାଯିବ ଏବଂ ସେଥିରେ ସ୍ୱତନ୍ତ୍ର ଭାବରେ ନଦୀ କୂଳେ କୂଳେ ଚଲାପଥ ଓ ଅବସର ସୁବିଧା ରହିବ ।

### ୮. ନଦୀ କୂଳର ବିକାଶ

ନଦୀ କୂଳର ଯୋଜନାବଦ୍ଧ ଭାବରେ ବିକାଶ କରାଯିବ ଏବଂ ଲୋକମାନେ ଯେପରି ସୁବିଧାରେ ସେମାନଙ୍କର ପରମ୍ପରା ଓ ରୀତିନୀତି ପାଳନ କରିପାରିବେ, ସେଥିପାଇଁ ପ୍ଲାଟଫର୍ମ୍‌ର ବ୍ୟବସ୍ଥା କରାଯିବ ।

ତା'ସହିତ ପର୍ଯ୍ୟଟକମାନଙ୍କୁ ମହାନଦୀର ଦୃଶ୍ୟ ଅବଲୋକନ ପାଇଁ Pavilion, Plaza ଓ Deck ଆଦି ନିର୍ମାଣ କରାଯିବ । ପୁରୁଣା ଦିନ ଭଳି ମହାନଦୀରୁ ମନ୍ଦିର ସ୍ପଷ୍ଟ ଦେଖାଯିବ ।

### ୯. ହ୍ରଦ କୂଳର ବିକାଶ

ଏହି ପ୍ରକଳ୍ପ ଅଧୀନରେ ୨୨ ଏକର ଜମିରେ ହ୍ରଦ କୂଳର ବିକାଶ କରାଯିବ । ଏଥିରେ wetlandର ବିକାଶ ସହିତ ୫ MLD Sewerage Treatment Plant ନିର୍ମାଣ କରାଯିବ । wetland ଅଞ୍ଚଳର ପୁନରୁଦ୍ଧାର ଓ ସୌନ୍ଦର୍ଯ୍ୟକରଣ କରାଯିବ । ଏହାସହିତ ସେଠାରେ ପର୍ଯ୍ୟଟକମାନଙ୍କ ସୁବିଧା ପାଇଁ Food Park, ସ୍ଥାପତ୍ୟ ପାର୍କ ତଥା ମୁକ୍ତାକାଶ ରଂଗମଞ୍ଚର ବ୍ୟବସ୍ଥା ରହିବ । ସମ୍ବଲପୁରର ପ୍ରସିଦ୍ଧ ହସ୍ତତନ୍ତ ଓ ହସ୍ତଶିଳ୍ପ ସହିତ ବିଭିନ୍ନ ସ୍ମାରକୀ (Souvenirs) ସାମଗ୍ରୀର ବିକ୍ରି ପାଇଁ vending ବ୍ୟବସ୍ଥା କରାଯିବ ।

### ୧୦. ରେଲ୍‌ୱେ ରାସ୍ତାର ପ୍ରଶସ୍ତିକରଣ

ରେଳଷ୍ଟେସନରୁ ମନ୍ଦିରର ଉତ୍ତର ପାର୍ଶ୍ୱକୁ ସଂଯୁକ୍ତ କରୁଥିବା ରାସ୍ତାକୁ ପ୍ରଶସ୍ତ କରାଯିବ । ଯାହାଫଳରେ ଟ୍ରାଫିକ ସମସ୍ୟା ଦୂର ହୋଇପାରିବ ।

### ୧୧. ଶ୍ମଶାନର ପୁନର୍ବିନ୍ୟାସ

ବର୍ତ୍ତମାନ ଥିବା ଶ୍ମଶାନକୁ ପୂର୍ବ ପଟକୁ ସ୍ଥାନାନ୍ତର କରାଯିବ ଏବଂ ଏଠାରେ ଆଧୁନିକ ସୁବିଧାର ବିକାଶ କରାଯିବ । ଏହି ଶ୍ମଶାନଟି ୯ ମିଟର ବିଶିଷ୍ଟ ପାଦଚଲା ରାସ୍ତା ଦ୍ୱାରା ମହାନଦୀ ସହ ସଂଯୁକ୍ତ ହେବା ଫଳରେ ଲୋକମାନେ ସୁବିଧାରେ ନଦୀଘାଟକୁ ଯାଇ ପରମ୍ପରା ଓ ରୀତିନୀତି ପାଳନ କରିପାରିବେ ।

ଶ୍ମଶାନ ପାଖରେ ଶେଷକୃତ୍ୟ ସ୍ଥାନ, ଶ୍ରାଦ୍ଧମଣ୍ଡପ ଓ ବିଶ୍ରାମ ଗୃହର ବ୍ୟବସ୍ଥା କରାଯିବ ।

ଏହି ନୂଆ ଯୋଜନା ଫଳରେ ପ୍ରଭାବିତ ହେଉଥିବା ଜନସାଧାରଣଙ୍କ ପାଇଁ ମାନବୀୟ ଦୃଷ୍ଟିରୁ ବିଚାର କରି ଏକ ଉଦାର ଥଇଥାନ ଓ ପୁନର୍ବିନ୍ୟାସ ପ୍ୟାକେଜ ପ୍ରସ୍ତୁତ କରାଯାଉଛି ।

ଏଥିରେ ଘରୋଇ ଜମିରେ ଘର, ସରକାରୀ ଜମିରେ ଥିବା ବସ୍ତି, ସରକାରୀ ଜମିରେ ଅନ୍ୟ ବାସଗୃହ, ସରକାରୀ ଜମିରେ ଦୋକାନ ଘର, ସରକାରୀ ଜମିରେ vendorମାନଙ୍କ ସୁବିଧା ପାଇଁ ପ୍ୟାକେଜରେ ବିସ୍ତୃତ ବ୍ୟବସ୍ଥା ରଖାଯିବ ।

ସେହିପରି ସରକାରୀ ଜମିରେ ଥିବା କ୍ଲବ୍, ଧାର୍ମିକ ଅନୁଷ୍ଠାନ, ସରକାରୀ ଅଫିସ ଓ ପ୍ରତିଷ୍ଠାନମାନଙ୍କ ପାଇଁ ସହାୟତା ପ୍ରଦାନ କରାଯିବ ।



ଏହି ଚିଠା ମାଷ୍ଟର ପ୍ଲାନ୍ ସଂପର୍କରେ ଜନସାଧାରଣ development.samalei@gmail.com ଜରିଆରେ ମାର୍ଚ୍ଚ ୧୫ ସୁଦ୍ଧା ସେମାନଙ୍କର ମୂଲ୍ୟବାନ ମତାମତ ଦେଇପାରିବେ । 'ସମଲେଇ ପ୍ରକଳ୍ପ'ର ସଫଳ ରୂପାୟନ ପାଇଁ ମୁଖ୍ୟମନ୍ତ୍ରୀ ସମସ୍ତଙ୍କ ସହଯୋଗ କାମନା କରିଥିଲେ ।

ଏହି ବୈଠକରେ ମୁଖ୍ୟ ଶାସନ ସଚିବ, ଉନ୍ନୟନ କମିଶନରଙ୍କ ସମେତ ବିଭିନ୍ନ ବିଭାଗର ପ୍ରମୁଖ ଶାସନ ସଚିବ ଓ ଶାସନ ସଚିବ ଉପସ୍ଥିତ ଥିଲେ । ମୁଖ୍ୟମନ୍ତ୍ରୀଙ୍କ ସଚିବ (୫'ଟି') ଶ୍ରୀ ଭି.କେ. ପାଣ୍ଡିଆନ୍ କାର୍ଯ୍ୟକ୍ରମକୁ ସଂଯୋଜନା କରିଥିଲେ ।



## ମୁଖ୍ୟମନ୍ତ୍ରୀଙ୍କ ସୁନ୍ଦରଗଡ଼ ଗସ୍ତ

# ୨୦ ବର୍ଷ ତଳେ ରାଜ୍ୟର ଯୋଜନା ବଜେଟ ୨୮୦୦ କୋଟି ଥିବାବେଳେ ଆଜି କେବଳ ସୁନ୍ଦରଗଡ଼ ଜିଲ୍ଲା ପାଇଁ ୫ ହଜାର କୋଟି ଟଙ୍କାର ପ୍ରକଳ୍ପ ।



- ରାଉରକେଲାରେ ଆନ୍ତର୍ଜାତିକ ମାନର ହକି ଷ୍ଟାଡିୟମ୍‌ର ଶିଳାନ୍ୟାସ ।
- ଷ୍ଟାଡିୟମ୍‌କୁ ସଂଗ୍ରାମୀ ବିର୍ସା ମୁଣ୍ଡାଙ୍କ ନାମରେ ନାମିତ କଲେ ମୁଖ୍ୟମନ୍ତ୍ରୀ ।
- ହୋ ଏବଂ ମୁଣ୍ଡାରି ଭାଷାକୁ ସମ୍ବିଧାନର ଅଷ୍ଟମ ପରିଚ୍ଛେଦରେ ସ୍ଥାନିତ କରିବା ପାଇଁ ଉଦ୍ୟମ ଜାରି ରହିବ ।

ଶ୍ରୀପଞ୍ଚମୀର ପବିତ୍ର ତିଥିରେ ୨୦୨୩ ପୁରୁଷ ବିଶ୍ୱକପ୍ ହକି ପାଇଁ ପ୍ରସ୍ତୁତିର ଶୁଭାରମ୍ଭ କରିଛନ୍ତି ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ।

ଦିନିକିଆ ସୁନ୍ଦରଗଡ଼ ଗସ୍ତରେ ଯାଇ ମୁଖ୍ୟମନ୍ତ୍ରୀ ଜିଲ୍ଲା ପାଇଁ ପାଞ୍ଚ ହଜାର କୋଟି ଟଙ୍କାର ବିଭିନ୍ନ ପ୍ରକଳ୍ପର ଶୁଭାରମ୍ଭ କରିଛନ୍ତି । ରାଉରକେଲାଠାରେ ୨୦୨୩ ପୁରୁଷ ବିଶ୍ୱକପ୍ ହକି ଆୟୋଜନକୁ ଦୃଷ୍ଟିରେ ରଖି ମୁଖ୍ୟମନ୍ତ୍ରୀ ସେଠାରେ ଅନ୍ତର୍ଜାତୀୟ ମାନର ଷ୍ଟାଡିୟମ୍‌ର ଶିଳାନ୍ୟାସ କରିଛନ୍ତି । ଏହି ନୂତନ ଷ୍ଟାଡିୟମ୍ ବିଶିଷ୍ଟ ସଂଗ୍ରାମୀ ବିର୍ସା ମୁଣ୍ଡାଙ୍କ ନାମରେ ନାମିତ କରାଗଲା ବୋଲି ଏହି ଅବସରରେ ମୁଖ୍ୟମନ୍ତ୍ରୀ ଘୋଷଣା କରିଥିଲେ । ଏହି ଷ୍ଟାଡିୟମ୍ ଦେଶର ସବୁଠାରୁ ବଡ଼ ହକି ଷ୍ଟାଡିୟମ୍ ହେବ । ଏହି ଷ୍ଟାଡିୟମ୍ ଯୁବ ସମାଜ ମଧ୍ୟରେ ପ୍ରେରଣା ସୃଷ୍ଟି କରିବା ସହିତ ବଡ ବଡ ସ୍ୱପ୍ନ ଦେଖିବା ଓ ବଡ ବଡ କାମ କରିବା ପାଇଁ ଉତ୍ସାହ ସୃଷ୍ଟି କରିବ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ ।



ରାଉରକେଲା ସହିତ ବିଜୁବାବୁଙ୍କର ସଂପର୍କ ବିଷୟ ସ୍ମରଣ କରି ମୁଖ୍ୟମନ୍ତ୍ରୀ କହିଥିଲେ ଯେ, ରାଉରକେଲାର ଷ୍ଟିଲ୍ ପ୍ଲାଣ୍ଟଠାରୁ ଆରମ୍ଭ କରି NIT ପର୍ଯ୍ୟନ୍ତ ସବୁଥିରେ ବିଜୁବାବୁଙ୍କ ସ୍ମୃତି ଭରି ରହିଛି । ରାଉରକେଲାକୁ ଆଶାର ସହର –City of Hopes ଭାବରେ ବର୍ଣ୍ଣନା କରି ମୁଖ୍ୟମନ୍ତ୍ରୀ କହିଥିଲେ ଯେ କେବଳ ଓଡିଶା ନୁହେଁ, ଆଖପାଖ ରାଜ୍ୟର ଲୋକମାନେ ମଧ୍ୟ ଜୀବିକା ପାଇଁ ରାଉରକେଲାକୁ ଆସିଥା'ନ୍ତି ।



ସୁନ୍ଦରଗଡ଼ ଜିଲ୍ଲାର ମିଶନ ଶକ୍ତିର ମା'ମାନଙ୍କୁ ସେମାନଙ୍କର ବିକାଶ କାମରେ ସହଯୋଗ ପାଇଁ ମୁଖ୍ୟମନ୍ତ୍ରୀ ଧନ୍ୟବାଦ ଜଣାଇବା ସହ ବାଲିଶଙ୍କରାର ଜୟନ୍ତୀ ଏକ୍କା 'କିପ୍'ରେ ଭୁବନେଶ୍ୱରର ମେକ୍-ଇନ୍-ଓଡିଶା କନ୍‌କ୍ଲେଭରେ ତାଙ୍କର ଉଦ୍ୟୋଗ ପାଇଁ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ, ସେ ବିଷୟ ବର୍ଣ୍ଣନା କରି ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ, ଜୟନ୍ତୀଙ୍କ ନେତୃତ୍ୱର ଉଚ୍ଚ ପ୍ରଶଂସା କରିଥିଲେ ।

ଜନଜାତିର ପିଲାମାନଙ୍କ ଶିକ୍ଷା ସୁବିଧା ସହିତ ଜନଜାତି ସଂସ୍କୃତିର ସୁରକ୍ଷା ପାଇଁ ନିଆଯାଇଥିବା ପଦକ୍ଷେପ ସଂପର୍କରେ ମୁଖ୍ୟମନ୍ତ୍ରୀ ଆଲୋଚନା କରିବା ସହ ମୁଣ୍ଡାରି ଏବଂ ହୋ ଭାଷାକୁ ସମ୍ବିଧାନର ଅଷ୍ଟମ ପରିଚ୍ଛେଦରେ ଅନ୍ତର୍ଭୁକ୍ତ କରିବା ପାଇଁ କେନ୍ଦ୍ର ସରକାରଙ୍କ ନିକଟରେ ପୁଣି ଥରେ ଦାବୀ ଜଣାଇଥିଲେ ।

ମୁଖ୍ୟମନ୍ତ୍ରୀ କହିଥିଲେ ଯେ ୨୦୦୦ ମସିହାରେ ରାଜ୍ୟର ଯୋଜନା ବଜେଟ ମାତ୍ର ୨୮୦୦ କୋଟି ଟଙ୍କା ଥିବାବେଳେ, କେବଳ ସୁନ୍ଦରଗଡ ଜିଲ୍ଲା ପାଇଁ ୫ ହଜାର କୋଟି ଟଙ୍କାର ପ୍ରକଳ୍ପ ଆରମ୍ଭ କରାଯାଇଛି । ଏହାକୁ ମୁଖ୍ୟମନ୍ତ୍ରୀ ରୂପାନ୍ତରର ନମୂନା ତଥା ବିକାଶର ନମୂନା ଭାବରେ ବର୍ଣ୍ଣନା କରିବା ସହିତ ବିକାଶର ଏହି ଧାରାକୁ ଜାରି ରଖିବା ପାଇଁ ସମସ୍ତଙ୍କ ସହଯୋଗ କାମନା କରିଥିଲେ ।







ରାଉରକେଲା ଗସ୍ତ ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ।

# ପଞ୍ଚାୟତିରାଜ ଓ ମୋ'ସ୍ୱପ୍ନର ଭାରତବର୍ଷ

**ବିଜୁ ପଟ୍ଟନାୟକ**



ଷଷ୍ଠ ଦଶକରେ ସେତେବେଳର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ କହିଥିଲେ, ''ସରପଞ୍ଚ ହେଉଛି ପଞ୍ଚାୟତିରାଜର ମୁଖ୍ୟମନ୍ତ୍ରୀ '' । ଗ୍ରାମାଞ୍ଚଳର ବିକାଶକୁ ତ୍ୱରାନ୍ୱିତ କରିବା ପାଇଁ ସେ ପଞ୍ଚାୟତ ପଞ୍ଚାୟତ ଭିତରେ ଉନ୍ନୟନ କ୍ଷେତ୍ରରେ ପ୍ରତିଯୋଗିତାମୂଳକ ମନୋଭାବ ସୃଷ୍ଟି କରିଥିଲେ । ସର୍ବୋତ୍କୃଷ୍ଟ ବିବେଚିତ ଗ୍ରାମପଞ୍ଚାୟତ ସମିତି ପାଇଁ ଜିଲ୍ଲାସ୍ତରରେ ଆକର୍ଷଣୀୟ ପୁରସ୍କାର ବ୍ୟବସ୍ଥା କରାଯାଇଥିଲା ।

ଦ୍ୱିତୀୟବାର ମୁଖ୍ୟମନ୍ତ୍ରୀ ଆସନରେ ଅଧିଷ୍ଠିତ ହେବା ପରେ ଶ୍ରୀ ବିଜୁ ପଟ୍ଟନାୟକ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକ ସକ୍ରିୟ କରିବାକୁ ଉଦ୍ୟମ ଆରମ୍ଭ କଲେ । ନିର୍ବାଚନରେ ମହିଳାମାନଙ୍କ ପାଇଁ ସ୍ୱତନ୍ତ୍ର ଭାବରେ ସ୍ଥାନ ସଂରକ୍ଷଣ କରାଯିବାରୁ ୨୭ ହଜାର ମହିଳା ନିର୍ବାଚିତ ପ୍ରତିନିଧି ହେବାର ଗୌରବ ହାସଲ କଲେ । ଗ୍ରାମପଞ୍ଚାୟତରେ ସରପଞ୍ଚ ପୁରୁଷ ଥିଲେ ମହିଳା ନାଏବ ସରପଞ୍ଚ ଏବଂ ପଞ୍ଚାୟତିରାଜ ସମିତିରେ ପୁରୁଷ ଚେୟାରମ୍ୟାନ ଥିଲେ, ମହିଳା ଭାଇସ୍ ଚେୟାରମ୍ୟାନ୍ ରହିବା ପାଇଁ ଆଇନ୍ ପ୍ରଣୟନ କରାଗଲା । ଗ୍ରାମାଞ୍ଚଳର ବିକାଶ ପାଇଁ ଆଇନ ପ୍ରଣୟନ କରାଗଲା । ଗ୍ରାମାଞ୍ଚଳର ବିକାଶ ପାଇଁ ପ୍ରାଥମିକ ଶିକ୍ଷା, ସ୍ୱାସ୍ଥ୍ୟ, ବନୀକରଣ, ପୁଷ୍ଟିକର ଖାଦ୍ୟ ଯୋଗାଣ, ଅତ୍ୟାବଶ୍ୟକ ସାମଗ୍ରୀ ବଣ୍ଟନ କ୍ଷେତ୍ରରେ ମହିଳା ପ୍ରତିନିଧିମାନଙ୍କୁ ଦାୟିତ୍ୱରେ ରଖିବା ପାଇଁ ସେ ନିର୍ଦ୍ଦେଶ ଦେଲେ ।

୧୯୯୩ ମାର୍ଚ୍ଚ ୫ ତାରିଖ ଦିନ ତାଙ୍କ ଜନ୍ମ ଦିନରେ ରାଜଧାନୀ ଭୁବନେଶ୍ୱରରେ ରାଜ୍ୟସ୍ତରୀୟ ପଞ୍ଚାୟତିରାଜ ଦିବସ ପାଳିତ ହୋଇଥିଲା । ଏହି ସମାରୋହରେ ଓଡ଼ିଶାର ପୁରପଲ୍ଲୀରୁ ସମବେତ ହୋଇଥିବା ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକର ନିର୍ବାଚିତ ପ୍ରତିନିଧିମାନଙ୍କୁ ଉଦ୍‌ବୋଧନ ଦେଇ ସେ କହିଥିଲେ, ଏହି ଅନୁଷ୍ଠାନଗୁଡ଼ିକୁ ଅଧିକ ଦକ୍ଷ, ସକ୍ରିୟ ଓ ମଜଭୁତ୍ ନକଲେ ଉନ୍ନୟନମୂଳକ ଯୋଜନା କାର୍ଯ୍ୟକାରୀ କରିବା କ୍ଷେତ୍ରରେ ଜନସହଯୋଗ ମିଳିବା କଷ୍ଟକର ହେବ ।

ସେଠାରେ ସ୍ୱର୍ଗୀୟ ପଟ୍ଟନାୟକଙ୍କର ଅଭିଭାଷଣ ନିମ୍ନରେ ପ୍ରଦତ୍ତ ହେଲା –

''ପଞ୍ଚାୟତ ସମିତି ଓ ଗ୍ରାମପଞ୍ଚାୟତ ସଭ୍ୟ, ସଭ୍ୟାବୃନ୍ଦ !

ବହୁତ ଦିନ ତଳେ ମୁଁ ଗୋଟିଏ ନୂଆ ଭାରତବର୍ଷର ସ୍ୱପ୍ନ ଦେଖୁଥିଲି । ମୋ ସ୍ୱପ୍ନର ଭାରତରେ ଗଣତନ୍ତ୍ର କେଇଜଣ କୁହାଳିଆ ବା ତଥାକଥିତ ବୁଦ୍ଧିଜୀବୀଙ୍କ ବିଳାସ ହୋଇ ରହି ନଥାନ୍ତା । ମୁଁ ସ୍ୱପ୍ନ ଦେଖୁଥିଲି ଏପରି ଏକ

ଭାରତବର୍ଷ ଯେଉଁଠାରେ ଗଣତନ୍ତ୍ର କେବଳ ନିର୍ବାଚନ ସର୍ବସ୍ୱ ହେବ ନାହିଁ । ଏହା ହେବ ଲୋକଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ଘନିଷ୍ଠଭାବେ ଜଡ଼ିତ କରାଇବାର ଏକ ମାଧ୍ୟମ । ଗାଁ ଗଣ୍ଡା ହେଉଛି ଭାରତର ଆତ୍ମା । ମୋ ସ୍ୱପ୍ନର ଭାରତରେ ଗାଁ ଗହଳିରୁ ହିଁ ଗଣତନ୍ତ୍ର ଆରମ୍ଭ ହୋଇ କ୍ରମଶଃ ଉପରକୁ ପ୍ରସାରିତ ହୋଇଥାନ୍ତା ।

୩୨ ବର୍ଷ ତଳେ ମୋତେ ଓଡ଼ିଶାର ଜନସାଧାରଣଙ୍କ ଅଭୂତପୂର୍ବ ସମର୍ଥନ ମିଳିଥିଲା । ସେତେବେଳେ ମୁଁ ଗଣତନ୍ତ୍ରରେ ଲୋକଙ୍କୁ ସଂଶ୍ଳିଷ୍ଟ କରି ରାଜ୍ୟର ପ୍ରତ୍ୟେକଟି ଗ୍ରାମକୁ ନୂଆକରି ଗଢ଼ିବାର ପ୍ରକ୍ରିୟା ଆରମ୍ଭ କରିଥିଲି । ଏଥିପାଇଁ ଅନେକଗୁଡ଼ିଏ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା ଏବଂ ଲୋକଙ୍କ ହାତରେ କ୍ଷମତା ଓ ଦାୟିତ୍ୱ ଦେବା ପାଇଁ ଅନେକ ନୂଆ ଆଇନ ମଧ୍ୟ ତିଆରି କରାଯାଇଥିଲା । ଷଷ୍ଠ ଦଶକରେ ରାଜନୈତିକ ଝଡ଼ଝଞ୍ଜାରେ ସେହି ସ୍ୱପ୍ନକୁ ସାକାର କରିବାର କାର୍ଯ୍ୟ ଅସମାପ୍ତ ରହିଯାଇଥିଲା । ଆଜି ମୁଁ ଯେତେବେଳେ ପଛକୁ ଫେରି ଚାହୁଁଛି, ମୋତେ କିଛିଟା ହତାଶା, କିଛିଟା ବାକି ରହିଥିବା କାମ ଓ କିଛିଟା ପୂରା ହୋଇ ନ ଥିବା ପ୍ରତିଶ୍ରୁତି ଅସ୍ତବ୍ୟସ୍ତ କରୁଛି ।

ଆପଣମାନଙ୍କର ନାହିଁ ନଥିବା ସମର୍ଥନ ପାଇ ଦ୍ୱିତୀୟ ଥର ପାଇଁ ଆମେ ସମସ୍ତେ ଆମର ଜୟଯାତ୍ରା ଆରମ୍ଭ କରିଛୁଁ । ଗ୍ରାମପଞ୍ଚାୟତ ଓ ପଞ୍ଚାୟତ ସମିତି ସମ୍ପର୍କରେ ପ୍ରଚଳିତ ଆଇନଗୁଡ଼ିକୁ ସଂଶୋଧନ କରାଯାଇ ତ୍ରିସ୍ତରୀୟ ବ୍ୟବସ୍ଥା ପ୍ରବର୍ତ୍ତନ କରିବା ପାଇଁ ଏକ ସମ୍ପୂର୍ଣ୍ଣ ନୂଆ ଆଇନ ପ୍ରଣୟନ କରାଯାଇଛି । ଗ୍ରାମପଞ୍ଚାୟତ ଓ ପଞ୍ଚାୟତ ସମିତିଗୁଡ଼ିକ ପାଇଁ ନିର୍ବାଚନ ଶେଷ ହୋଇଛି । ଜିଲ୍ଲା ପରିଷଦ ପାଇଁ ଖୁବ୍‌ଶୀଘ୍ର ନିର୍ବାଚନ କରାଯିବ ।

ସେ ସମୟ ଓ ଆଜି ଭିତରେ ଅନେକଟା ତଫାତ୍ ଆପଣମାନେ ଲକ୍ଷ୍ୟ କରୁଥିବେ । ଏହି ପରିବର୍ତ୍ତନର ଆହ୍ୱାନ ହେଉଛି– ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ ଅଧିକ ପ୍ରତିନିଧିମୂଳକ କରିବା, ସେଗୁଡ଼ିକୁ ଅଧିକ କାର୍ଯ୍ୟକାଳ ଦେବା ଓ ସେଥିପାଇଁ ଅଧିକ ସମ୍ବଳର ବ୍ୟବସ୍ଥା କରିବା । କାରଣ ଆମର ଅନୁଷ୍ଠାନଗୁଡ଼ିକ ଅଧିକ ଦକ୍ଷ, ସକ୍ରିୟ ଓ ମଜଭୁତ୍ ନ ହେଲେ ଉନ୍ନୟନ ଯୋଜନା କରିବା ଓ ଜନସହଯୋଗ ମାଧ୍ୟମରେ ସେଗୁଡ଼ିକୁ ଠିକ୍ ରୂପେ କାର୍ଯ୍ୟକାରୀ କରାଇବା ମୁସ୍କିଲ ହେବ । ଏହି ପରିବର୍ତ୍ତନ ମାଧ୍ୟମରେ ଆମେ ବଡ଼ ବଡ଼ କଥା ଅପେକ୍ଷା ପ୍ରକୃତ କାମ କରିପାରିବା । ଆମେ କେବଳ କାମ ହିଁ ଚାହୁଁ । ଆପଣମାନଙ୍କ ଭିତରୁ ଅନେକ ପ୍ରଶ୍ନ କରୁଛନ୍ତି –ମୋର କ୍ଷମତା କ'ଣ ? ମୋର କାମ କ'ଣ ? କୌଣସି ବ୍ୟକ୍ତିବିଶେଷକୁ କ୍ଷମତା ଦିଆଯାଏ ନାହିଁ । କ୍ଷମତା ଦିଆଯାଏ ଏକ ପ୍ରତିନିଧିମୂଳକ ବ୍ୟବସ୍ଥାକୁ । ପଞ୍ଚାୟତିରାଜ ବ୍ୟବସ୍ଥା ଏକ ପ୍ରତିନିଧିମୂଳକ ବ୍ୟବସ୍ଥା ହୋଇଥିବାରୁ ସ୍ୱାସ୍ଥ୍ୟ, ଶିକ୍ଷା, ସମାଜ ମଙ୍ଗଳ, ଦାରିଦ୍ର୍ୟ ଦୂରୀକରଣ, ବୃକ୍ଷରୋପଣ, ପରିବେଶ, କୃଷି, ପଶୁପାଳନ, ଜଳସେଚନ ଏବଂ ରାସ୍ତାଘାଟ ଆଦି ବିଷୟରେ ନିଷ୍ପତ୍ତି ନେବାର କ୍ଷମତା ଏହି ସଂସ୍ଥା ଉପରେ ନ୍ୟସ୍ତ କରାଯାଇଛି । ଏହି ସମ୍ମିଳନୀ ଉପଲକ୍ଷେ ଆପଣମାନଙ୍କୁ ଯେଉଁ ପୁସ୍ତିକା ସବୁ ଦିଆଯାଇଛି, ସେଥିରୁ ଭଲ ଭାବେ ଜଣାଯିବ ଯେ, ଯୋଜନା ତିଆରି କରିବା, ତାକୁ କାର୍ଯ୍ୟକାରୀ କରିବା ଏବଂ ଏ ସମସ୍ତ କାର୍ଯ୍ୟକୁ ତଦାରଖ ଓ ତଦ୍‌ବିର କରିବାର ଦାୟିତ୍ୱ ସବୁ ଆପଣମାନଙ୍କର ।

ଆପଣମାନେ ଯଦି ଏହି କ୍ଷମତାକୁ ବିଜ୍ଞତାର ସହିତ ବ୍ୟବହାର କରନ୍ତି, ତା'ହେଲେ ପଞ୍ଚାୟତିରାଜ ବ୍ୟବସ୍ଥା ମଜଭୁତ୍ ହେବ । କ୍ଷମତା ସାଙ୍ଗକୁ ଆମେ ସମ୍ବଳ ମଧ୍ୟ ହସ୍ତାନ୍ତର କରିବୁ । ରାଜ୍ୟସ୍ତରରୁ କିଭଳି ଭାବେ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କୁ ସମ୍ବଳ ଦିଆଯାଇପାରିବ ସେ ବିଷୟରେ ଏକ ସ୍ୱତନ୍ତ୍ର ଅର୍ଥ କମିଶନ୍ ଟିକିନିଖି କରି ପରୀକ୍ଷାନିରୀକ୍ଷା କରୁଛନ୍ତି । ଏହାର ସୁପାରିସ୍‌ଗୁଡ଼ିକ ଖୁବ୍ ଶୀଘ୍ର ମିଳିଯିବ । ସମ୍ବଳକୁ ଚାହିଁ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର ଦାୟିତ୍ୱ ମଧ୍ୟ ନିର୍ଦ୍ଧାରଣ କରାଯିବ ।

ଶାସନ ବ୍ୟବସ୍ଥାର ପ୍ରକୃତ ବିକେନ୍ଦ୍ରିକରଣ ପାଇଁ ମହିଳାମାନଙ୍କୁ ସଂଶ୍ଳିଷ୍ଟ କରାଇବା ଉପରେ ମୁଁ ସଦାବେଳେ ଜୋର୍ ଦେଇଆସିଛି । ନାରୀମାନଙ୍କର ସୃଜନଶୀଳତା ଓ ଶକ୍ତିକୁ ଉପଯୋଗ କରି ତାଙ୍କର ସ୍ୱତନ୍ତ୍ର ସମସ୍ୟାଗୁଡ଼ିକର

ସମାଧାନ ପାଇଁ ଏଯାବତ୍ କୌଣସି ବିଧିବଦ୍ଧ ଉଦ୍ୟମ ଆରମ୍ଭ ହୋଇନାହିଁ । ସେମାନେ ଏ ପର୍ଯ୍ୟନ୍ତ ସମାଜ ଓ ଶାସନର ମୁଖ୍ୟସ୍ରୋତକୁ ଆସିପାରି ନାହାନ୍ତି । ପୁରୁଷପ୍ରଧାନ ସମାଜରେ ସେମାନଙ୍କ ସମସ୍ୟାପ୍ରତି ଯଥାର୍ଥ ଧ୍ୟାନ ଦିଆଯାଇନାହିଁ । ସେମାନଙ୍କଠାରେ ଥିବା ଅନ୍ୟକୁ ପ୍ରବର୍ତ୍ତାଇବା, ସହୃଦୟତା ଓ ସମ୍ବେଦନଶୀଳତା ପ୍ରଭୃତି ଗୁଣଗୁଡ଼ିକ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକର ଗୁଣାତ୍ମକ ମାନ ନିଶ୍ଚିତଭାବେ ବୃଦ୍ଧି କରିବ । ବିଶେଷ କରି ଶିକ୍ଷା, ସ୍ୱାସ୍ଥ୍ୟ, ବୃକ୍ଷରୋପଣ, ପରିବାର କଲ୍ୟାଣ, ମା' ଓ ଶିଶୁର ସ୍ୱାସ୍ଥ୍ୟରକ୍ଷା ଓ ପରିବେଶ ବିକାଶ ଭଳି କାମଗୁଡ଼ିକ ସେମାନଙ୍କ ଉପରେ ନ୍ୟସ୍ତ କରାଯିବା ଆବଶ୍ୟକ । ମୁଁ ଚାହେଁ, ଉପରୋକ୍ତ ବିଷୟଗୁଡ଼ିକ ପାଇଁ ଯେଉଁ ଷ୍ଟାଣ୍ଡିଂ କମିଟି ରହିବ, ତା'ର ନେତୃତ୍ୱ ମହିଳାମାନେ ନିଅନ୍ତୁ । ତାଙ୍କୁ ପୂର୍ଣ୍ଣ ସୁଯୋଗ ଦିଆଯାଉ ।

ମୁଁ ଏ କଥା ୧୯୬୧ରେ କହିଥିଲି, ଆଜି ମଧ୍ୟ କହୁଛି ଯେ, ଆମେ ସମାଜର ତଳସ୍ତରରେ ନେତା ଓ ନେତ୍ରୀ ଗଢ଼ିବା ପାଇଁ ଉଦ୍ୟମ କରୁଛୁ । ଏହା ଏକ ସହଜସାଧ୍ୟ ବ୍ୟାପାର ନୁହେଁ । ଏହି ଗଣଆନ୍ଦୋଳନକୁ ଆମେ କିଛି ରୂପ, କିଛି ଦିଗ୍‌ଦର୍ଶନ ଏବଂ କିଛି କର୍ତ୍ତୃତ୍ୱ ଦେଉଛୁଁ । ସୁନ୍ଦର ଭବିଷ୍ୟତକୁ ଆଖି ଆଗରେ ରଖି ଅଧିକ ସମ୍ବେଦନଶୀଳତା ଓ ଦୂରଦର୍ଶିତା ସହ ଆମକୁ ଚିନ୍ତା କରିବାକୁ ହେବ । ଆମେ ଗୋଟିଏ ନୂଆ ଶିଶୁ ଗଢୁଛୁଁ – ଏକ ଗଣତାନ୍ତ୍ରିକ ଶିଶୁ, ଯାହାର ଚିନ୍ତାରେ ଓ କାର୍ଯ୍ୟରେ ନେତୃତ୍ୱର ବିକାଶ ଘଟିବ । ଲୋକଙ୍କ ଭିତରେ ଯେଉଁ ସୁପ୍ତ ଶକ୍ତି ରହିଛି, ପଞ୍ଚାୟତି ବ୍ୟବସ୍ଥା ମାଧ୍ୟମରେ ତାକୁ ଜାଗ୍ରତ କରିବାକୁ ହେବ, ବିକଶିତ କରିବାକୁ ହେବ ।

ଆମର ସାମୂହିକ ବିଜ୍ଞତା ଦ୍ୱାରା ଆମେ ସମୟକ୍ରମେ ଏପରି ବାଟ ବାହାର କରିବା ଯଦ୍ଦ୍ୱାରା ଜନସାଧାରଣଙ୍କର ବିଶ୍ୱାସ ଓ ନେତୃତ୍ୱକୁ ଆଧାର କରି ବର୍ତ୍ତମାନର ପ୍ରଶାସନିକ ବ୍ୟବସ୍ଥା ଦ୍ୱାରା ସମ୍ଭବ ହେଉଥିବା କାର୍ଯ୍ୟଠାରୁ ବହୁ ଅଧିକ ସଫଳତା ହାସଲ କରାଯାଇପାରିବ ।

ସବୁଠାରେ ଦୋଷ ତ୍ରୁଟି ଅଛି ଏବଂ ରହିବ । ମଣିଷ ଚରିତ୍ର ଓ ପ୍ରକୃତିକୁ ମୁଁ ଯାହା ବୁଝିଛି, ଏଥିରେ କିଛି ଅସ୍ୱାଭାବିକତା ନାହିଁ । ଆମେ ଏଭଳି ଏକ ଶାସନ ଢାଞ୍ଚା ତିଆରି କରିବା ଯେଉଁଥିରେ କି ପ୍ରତ୍ୟେକ ସ୍ତ୍ରୀ, ପୁରୁଷ, ବଡ଼ ହେଉ କି ଛୋଟ ହେଉ, ଉତ୍କୃଷ୍ଟ ହେଉ କି ନିକୃଷ୍ଟ ହେଉ, ନିଜ ପ୍ରତିଭା ବିକାଶ ପାଇଁ ସୁଯୋଗ ପାଇବେ । ଚୀନ୍ ଦାର୍ଶନିକ ତାଇ ଚୁଙ୍ଗ୍ କହିଥିଲେ, 'ଯଦି ଆମେ କୌଣସି ଏକ କାର୍ଯ୍ୟକୁ ତ୍ରୁଟିଶୂନ୍ୟ ଭାବେ କରିବାକୁ ବସିବା, ଆମକୁ ଅନନ୍ତକାଳ ପାଇଁ ଅପେକ୍ଷା କରିବାକୁ ହେବ ।' ଆମ ହାତରେ ସମୟ ନାହିଁ । ଗଲା ତିରିଶ ବର୍ଷ ଭିତରେ ଅନେକ କିଛି ସୁଯୋଗ ଆମର ହାତଛଡ଼ା ହୋଇଯାଇଛି । ତେଣୁ ଆମକୁ ଆଜି ସଙ୍କଳ୍ପ ନେବାକୁ ହେବ – ବିଜ୍ଞତା, ଦୂରଦୃଷ୍ଟି, କରୁଣା ଓ ଉତ୍ତମ ବୁଝାମଣାକୁ ପୁଞ୍ଜି କରି ଆମେ ଆମ ନିଜର ସମସ୍ୟା ସମାଧାନର ରାସ୍ତା ବାହାର କରିବା ।''

ପୂର୍ବତନ ମୁଖ୍ୟମନ୍ତ୍ରୀ, ଓଡ଼ିଶା



# ସମ୍ପାଦକୀୟ





ବିର୍ସା ମୁଣ୍ଡା ଅନ୍ତର୍ଜାତୀୟ ହକି ଷ୍ଟାଡିୟମ୍‌, ରାଉରକେଲା









ବିକାଶର ଆଧାର ୫ 'ଟି' : ଯେଉଁଠି କାମ କହେ କଥା ଏବଂ ସ୍ୱପ୍ନ ନେଉଛି ବାସ୍ତବତାର ରୂପ

ସମ୍ପାଦକ, ଉତ୍କଳ ପ୍ରସଙ୍ଗ

## ଆମ ଐତିହ୍ୟ : ଆମ ଗୌରବ



୫'ଟି'ର କାର୍ଯ୍ୟକାରିତା : ଶ୍ରୀମନ୍ଦିର ସୁରକ୍ଷା ଓ ସୌନ୍ଦର୍ଯ୍ୟ ପ୍ରତି ଅଗ୍ରାଧିକାର ।



୫'ଟି'ର କାର୍ଯ୍ୟକାରିତା: ହଜାରେ ବର୍ଷର ଲିଙ୍ଗରାଜ ମନ୍ଦିରର ପାରିପାର୍ଶ୍ୱିକ ଅଞ୍ଚଳର ବିକାଶ ।

# ଓଡ଼ିଶୀ ସଙ୍ଗୀତ ଶାସ୍ତ୍ରୀୟତା ପାଇଁ ମୁଖ୍ୟମନ୍ତ୍ରୀଙ୍କ ସୁପାରିସ୍

**ପବିତ୍ର ମହାରଥୀ**

ଦିନଥିଲା, ଓଡ଼ିଆ ଭାଷାକୁ ପଡୋଶୀ ବଙ୍ଗଳା ସାହିତ୍ୟିକମାନେ 'ଉଡ଼ିଆ ଏକ୍‌ଟା ଭାଷା ନୟେ' ବୋଲି କହୁଥିଲେ । ସେହି ସମୟରେ ସ୍ୱଭାବ କବି ଗଙ୍ଗାଧର ମେହେରଙ୍କଠାରୁ ଆରମ୍ଭ କରି ବ୍ୟାସକବି ଫକୀର ମୋହନଙ୍କ ପର୍ଯ୍ୟନ୍ତ ଆମର ପୂର୍ବଜ ସାହିତ୍ୟିକମାନେ ଏପରି ବକ୍ତବ୍ୟର ଘୋର ପ୍ରତିବାଦ କରିଥିଲେ ଓ ଓଡ଼ିଆ ଭାଷାର ପ୍ରତିଷ୍ଠା ଓ ପ୍ରଭୁତ୍ୱ ପ୍ରତିପାଦିତ କରିଥିଲେ । ପରବର୍ତ୍ତୀ ସମୟରେ ଓଡ଼ିଆ ଭାଷା ଗବେଷକମାନେ ଦୁଇ ହଜାରରୁ ଅଧିକ ବର୍ଷର ତଥ୍ୟଭିତ୍ତିକ ଇତିହାସକୁ ଉତ୍ଥାପନ କରି ଶେଷରେ ବିଶ୍ୱର ଅନ୍ୟତମ ପୁରାତନ ଭାଷା ହୋଇଥିବାରୁ ତଥା ଶାସ୍ତ୍ରୀୟ ଭାଷାର ସମସ୍ତ ସର୍ତ୍ତ ପୂରଣ କରୁଥିବା କାରଣରୁ ଓଡ଼ିଆ ଭାଷା ଆଜି ସରକାରୀଭାବେ ଶାସ୍ତ୍ରୀୟ ମାନ୍ୟତା ଲାଭ କରିଛି । ଯେଉଁମାନେ ଓଡ଼ିଆ ଭାଷାକୁ ନ୍ୟୂନ ଭାବୁଥିଲେ ସେମାନଙ୍କ ମାତୃଭାଷାର କବି ରବୀନ୍ଦ୍ର ନାଥ ଠାକୁର ନୋବେଲ ପୁରସ୍କାର ପାଇଥିବା ସତ୍ତ୍ୱେ ଓଡ଼ିଆ ଭାଷାର ସମକକ୍ଷ ହେବା ପାଇଁ ଯୋଗ୍ୟ ହୋଇ ପାରିଲେ ନାହିଁ । ଓଡିଶାର ଭାଷା, ସାହିତ୍ୟ, ସଂସ୍କୃତି, ପରମ୍ପରା ଓତଃପ୍ରୋତ ଭାବେ ଜଡ଼ିତ ଥିବା ହେତୁ ଓଡ଼ିଶୀ ସଙ୍ଗୀତ ଯେ ଶାସ୍ତ୍ରୀୟ ମର୍ଯ୍ୟାଦା ପାଇବା ପାଇଁ ନିଶ୍ଚିତ ଯୋଗ୍ୟ, ଏଥିରେ ତିଳେହେଲେ ସନ୍ଦେହର ଅବକାଶ ନାହିଁ ।

ଭାଷାଭିତ୍ତିରେ ଗଠିତ ଦେଶର ପ୍ରଥମ ରାଜ୍ୟ ଓଡିଶା । ସ୍ୱତନ୍ତ୍ର ରାଜ୍ୟ ଗଠନର ଦୀର୍ଘ ଦିନ ପରେ ଭାଷା ଆନ୍ଦୋଳନ, ଓଡ଼ିଶାର ଦୀର୍ଘଦିନର ଆନ୍ଦୋଳନ ଫଳରେ ବିଧାନସଭାରେ ସର୍ବସମ୍ମତି କ୍ରମେ ୧୯.୦୯.୨୦୧୮ରେ, ଓଡ଼ିଆ ଭାଷାରେ ଓଡିଶା ଶାସନ ପାଇଁ ପଥ ପରିଷ୍କାର ହୋଇପାରିଥିଲା । ୧୯୫୪ ମସିହାରେ ପାରିତ 'ଭାଷା ଆଇନ' ସଂଶୋଧିତ ହୋଇ ଓଡ଼ିଆ ଭାଷାକୁ ସରକାରୀ ଭାଷାର ମାନ୍ୟତା ମିଳିଲା । କେବଳ ସେତିକି ନୁହେଁ, ଏହି ଆଇନ କାର୍ଯ୍ୟକାରୀ କରିବା ପାଇଁ ୧୩ .୦୮.୨୦୧୯ରେ ନିୟମାବଳୀ ମଧ୍ୟ ପ୍ରଣୀତ ହୋଇ ଖିଲାପକାରୀଙ୍କୁ ଦଣ୍ଡବିଧାନର ବ୍ୟବସ୍ଥା କରାଗଲା ।

ସେହିଭଳି ଓଡ଼ିଶୀ ସଙ୍ଗୀତ ଓଡ଼ିଶାରେ ଆରମ୍ଭ ହୋଇଥିବା ଏକ ଭାରତୀୟ ଶାସ୍ତ୍ରୀୟ ସଙ୍ଗୀତ । ଭରତ ମୁନିଙ୍କ ନାଟ୍ୟଶାସ୍ତ୍ରରେ ଉଲ୍ଲିଖିତ ଭାରତୀୟ ଶାସ୍ତ୍ରୀୟ ସଙ୍ଗୀତର ପାଞ୍ଚଟି ଶାଖା ହେଉଛି ଅବନ୍ତୀ, ପାଞ୍ଚାଳୀ, ଓଡ୍ରମାଗଧୀ, ହିନ୍ଦୁସ୍ଥାନୀ ଓ କର୍ଣ୍ଣାଟକୀ । ଏହି ମଧ୍ୟରୁ ଓଡ଼ିଶୀ ଉଡ୍ରମାଗଧୀ ଧାରା ଅଟେ । ଗାୟନ ପାଇଁ ଗୀତ ରଚନା କରୁଥିବା ଜୟଦେବଙ୍କ ସମୟରୁ ଓଡ଼ିଶୀ ସଙ୍ଗୀତ ଉନ୍ନତ ହୋଇ ବିକାଶଲାଭ କରିଥିଲା । ଓଡ଼ିଶୀ ସଙ୍ଗୀତ ଓଡ଼ିଆ ଭାଷାର ବିକାଶ ହେବା ଆଗରୁ ରହିଥିଲା ବୋଲି ଐତିହାସିକମାନେ ମତବ୍ୟକ୍ତ କରୁଛନ୍ତି । ଖ୍ରୀ.ପୂ. ଦ୍ୱିତୀୟ ଶତକରେ କଳିଙ୍ଗର ଶାସକ ଖାରବେଳ ସଙ୍ଗୀତ ଓ ନୃତ୍ୟର ପୃଷ୍ଠପୋଷକତା କରୁଥିବାର ଦେଖିବାକୁ ମିଳୁଛି । ଓଡ଼ିଶାର ସଂସ୍କୃତି ଓ ସଙ୍ଗୀତର ପ୍ରମାଣ ବିଭିନ୍ନ ପ୍ରତ୍ନତାତ୍ତ୍ୱିକ ଖନନରୁ ମିଳିଛି । ବିଭିନ୍ନ ସ୍ଥାନରୁ ପ୍ରତ୍ନତାତ୍ତ୍ୱିକ ଖନନରୁ ତାମ୍ର ଓ ପ୍ରସ୍ତର ଯୁଗର ପ୍ରମାଣ ମିଳୁଛି । ମିଳିଥିବା ଶିଳାଖମ୍ଭମାନଙ୍କରୁ ପୁରାତନ ବାଦ୍ୟଯନ୍ତ୍ରର ପ୍ରାମାଣିକ ତଥ୍ୟ ହସ୍ତଗତ ହେଉଛି ।

ସଙ୍ଗୀତକାରମାନଙ୍କର ସାଧନା ମାତୃଭୂମି, ମାତୃଭାଷାର ପ୍ରସାର ଓ ପ୍ରଚାର ଦିଗରେ ଅଗ୍ରସର ହୋଇ ସଂସ୍କୃତି ପରମ୍ପରାର ସମନ୍ୱୟ ରକ୍ଷା କରି ମାତୃଭୂମିର ସେବାରେ ନିଜକୁ ଯେଉଁ ଉତ୍ସର୍ଗ କରିଛନ୍ତି, ତାହାର ପଟାନ୍ତର ନାହିଁ । ସେମାନଙ୍କ ମଧ୍ୟରୁ ଜନମାନସରେ ଉଜ୍ଜ୍ୱଳ ନକ୍ଷତ୍ର ହୋଇ ରହିବେ, ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାଶ(କଣ୍ଠସଙ୍ଗୀତ) ତାରିଣୀଚରଣ ପାତ୍ର (କଣ୍ଠସଙ୍ଗୀତ), ବୀଣାକାର, ସୁରମଣି ରଘୁନାଥ ପାଣିଗ୍ରାହୀ(କଣ୍ଠସଙ୍ଗୀତ) ରାମହରି ଦାଶ, ବିଜୟ କୁମାର ଜେନା, କେଶବ ଚନ୍ଦ୍ର ରାଉତ, ଆଦିଗୁରୁ ଦେଶରଜା ମଉଡ଼ମଣି, ସିଂହାରୀ ଶ୍ୟାମସୁନ୍ଦର କର, ଚନ୍ଦ୍ରମଣି ଲେଙ୍କା, ରାମାରାଓ ପାତ୍ର, ବୀଣାକାର, ଭୁବନେଶ୍ୱର ମିଶ୍ର, ବେହେଲା ବାଦକ, ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ, କଣ୍ଠସଙ୍ଗୀତ, ଗୋକୁଳ ଶ୍ରୀଚନ୍ଦନ, ଅପର୍ଣ୍ଣା (ଆପନ୍ନା) ପାଣିଗ୍ରାହୀ, ବାସୁଦେବ ମହାପାତ୍ର, ରାଜମଣି ପାତ୍ର, ଗୁଣ୍ଡି ନନ୍ଦ କଣ୍ଠସଙ୍ଗୀତ, ଭଜନ ସମ୍ରାଟ୍ ଭିକାରୀ ଚରଣ ବଳ, ଶ୍ୟାମାମଣି ଦେବୀ, ମିତାଲି ଚିନ୍ନାରା, ଆରତୀ ମିଶ୍ର, କ୍ଷେତ୍ରମଣି ଦେବୀ, ହରପ୍ରିୟା ଦେବୀ, ସଚ୍ଚିଦାନନ୍ଦ ରାଉତରାୟ, ମର୍ଦ୍ଦଳ ବାଦକ, ଦାମୋଦର ହୋତା, ଲୋକନାଥ ପାଳ, ନୃସିଂହନାଥ ଖୁଣ୍ଟିଆ, ଲୋକନାଥ ରଥ, ଧୀରଜ ମହାପାତ୍ର, ଗୋପାଳ ଚନ୍ଦ୍ର ପଣ୍ଡା, ପ୍ରଫୁଲ୍ଲ କର, ସଙ୍ଗୀତା ପଣ୍ଡା, ମହାପାତ୍ର ମିନତି ଭଞ୍ଜ, ଶ୍ୟାମସୁନ୍ଦର ଧୀର, କାଶୀନାଥ ପୂଜାପଣ୍ଡା, ବିଶ୍ୱନାଥ ପୂଜାପଣ୍ଡା, ଭୁବନେଶ୍ୱରୀ ମିଶ୍ର, ଘନଶ୍ୟାମ ପଣ୍ଡା, ବିନୋଦ ବିହାରୀ ପଣ୍ଡା, କାଳୀଚରଣ ପଟ୍ଟନାୟକ ପ୍ରମୁଖ । ଓଡିଶୀ ସଙ୍ଗୀତ ପ୍ରତି ସେମାନଙ୍କର ମମତ୍ୱକୁ ଆଖି ଆଗରେ ରଖି ଓଡ଼ିଶା ସରକାର ଦୃଢ ଭାବେ ସେମାନଙ୍କ ପଛରେ ଛିଡା ହେଲେ ଓଡିଶୀ ସଂଗୀତ ଶାସ୍ତ୍ରୀୟ ମର୍ଯ୍ୟାଦା ପାଇବା ପାଇଁ କଷ୍ଟକର ହେବ ନାହିଁ । ଯେତେବେଳେ କି ଓଡ଼ିଆ ଭାଷା, ଓଡିଶୀ ନୃତ୍ୟ ପୂର୍ବରୁ ଶାସ୍ତ୍ରୀୟତା ପାଇସାରିଛି ।

ଏହି ସଫଳତା ଆଧାରରେ, ଓଡ଼ିଶୀ ସଙ୍ଗୀତକୁ ମଧ୍ୟ ଶାସ୍ତ୍ରୀୟ ମର୍ଯ୍ୟାଦା ପ୍ରଦାନ ପାଇଁ ଭାଷା ଆନ୍ଦୋଳନ, ଓଡିଶା ପକ୍ଷରୁ ୨୦୧୭ ମସିହାରୁ ଉଦ୍ୟମ ଜାରି ରହିଛି । ଓଡ଼ିଶୀ ସଙ୍ଗୀତ ଶାସ୍ତ୍ରୀୟ ମର୍ଯ୍ୟାଦା ପାଇବା ପାଇଁ କାହିଁକି ଯୋଗ୍ୟ, ତାହା ଉପରେ ସବିଶେଷ ବିବରଣୀ ଓ ତଥ୍ୟ, ଭାଷା ଆନ୍ଦୋଳନ, ଓଡ଼ିଶାର ଉଦ୍ୟମରେ ଓଡିଶୀ ସଙ୍ଗୀତ ଗବେଷକ ଡ଼ଃ କୀର୍ତନ ନାରାୟଣ ପାଢୀଙ୍କ ଦ୍ୱାରା ଉପାଦେୟ, ତଥ୍ୟଭିତ୍ତିକ, ଗବେଷଣାଲବ୍ଧ ଲିଖିତ ପୁସ୍ତକ The Classicality of Odishi Music ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ କର କମଳରେ ତା ୨୨.୦୮.୨୦୧୭ ରିଖ ଦିନ ଲୋକାର୍ପଣ କରାଯାଇଥିଲା । ଏହି ଅବସରରେ ଭାଷା ଆନ୍ଦୋଳନ, ଓଡିଶା ପକ୍ଷରୁ ଦାବୀ ଉପସ୍ଥାପନ କରିଯାଇଥିଲା କି, ରାଜ୍ୟ ସରକାର ଏହା ଉପରେ ପଦକ୍ଷେପ ନେଇ, କେନ୍ଦ୍ର ସରକାରଙ୍କୁ ଚିଠି ଲେଖିବା ସହିତ ତଥ୍ୟଭିତ୍ତିକ ସନ୍ଦର୍ଭ ପ୍ରଦାନ କରନ୍ତୁ । ଏହି ପୁସ୍ତକ ଉନ୍ମୋଚନ ଉତ୍ସବରେ ପୁସ୍ତକର ଲେଖକ ଡ଼ଃ ପାଢୀଙ୍କ ସମେତ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ ପ୍ରଫେସର ଗଣେଶ ପ୍ରସାଦ ଦାସ, ପ୍ରଫେସର ରଘୁନାଥ ପଣ୍ଡା, ଦୂରଦର୍ଶନର ଉପନିର୍ଦ୍ଦେଶକ ରବୀନ୍ଦ୍ର ନାଥ ମିଶ୍ର ଓ ଭାଷା ଆନ୍ଦୋଳନ, ଓଡିଶାର ଆବାହକ ପବିତ୍ର ମହାରଥୀ ତଥା ଅନ୍ୟମାନେ ଉପସ୍ଥିତ ଥିଲେ । ପର୍ଯ୍ୟାୟ କ୍ରମେ ବିଭିନ୍ନ ସମୟରେ ଆଲୋଚନା ଓ ପର୍ଯ୍ୟାଲୋଚନା ଚାଲିଥିବା ବେଳେ ୦୯.୦୮.୨୦୧୯ରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କର ପରାମର୍ଶଦାତା ଆର୍. ବାଲ୍‌କ୍ରିଷ୍ଣନ୍‌ଙ୍କ ସହ ଭାଷା ଆନ୍ଦୋଳନ, ଓଡିଶା ପକ୍ଷରୁ ଆବାହକ ପବିତ୍ର ମହାରଥୀ ଏବଂ ଜାନକୀଶ ବଡ଼ପଣ୍ଡା ଆଲୋଚନା କରିଥିଲେ । ଧାର୍ଯ୍ୟ ସମୟ ମୁତାବକ ୧୩/୦୮/୨୦୧୯ ରେ ମୁଖ୍ୟମନ୍ତ୍ରୀଙ୍କର ପ୍ରତିଶ୍ରୁତିକୁ ମନେ ପକାଇ ଆଗାମୀ ଦିନରେ ଦୃଢ଼ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ ପାଇଁ ଅନୁରୋଧ କରାଯାଇଥିଲା । ସେହି ଆଲୋଚନାରେ ଭାଷା ଆନ୍ଦୋଳନ ଆବାହକ ପବିତ୍ର ମହାରଥୀ, ଗବେଷକ ଡ଼ଃ ପାଢ଼ୀ, ଗୁରୁ ଗୋପାଳ ପଣ୍ଡା ଏବଂ ସଙ୍ଗୀତଜ୍ଞ ସଂଗୀତା ପଣ୍ଡା ପ୍ରମୁଖ ଉପସ୍ଥିତ ଥିଲେ । ପୁନର୍ବାର ୧୪/୦୮/୨୦୧୯ ରିଖରେ ଏମାନଙ୍କର ସହିତ ସଂସ୍କୃତି ବିଭାଗ ନିର୍ଦ୍ଦେଶକ ଏବଂ ପ୍ରମୁଖ ଶାସନ ସଚିବ ମନୋରଂଜନ ପାଣିଗ୍ରାହୀ ମଧ୍ୟ ଯୋଗ ଦେଇଥିଲେ ଓ ଏହି କାର୍ଯ୍ୟକ୍ରମକୁ ଆଗେଇ ନେବା ପାଇଁ ନିଷ୍ପତ୍ତି ନିଆଯାଇଥିଲା । ଏଥିରେ ଡ଼ଃ ପାଢ଼ୀ ଓ ଜାନକୀଶ

ବଡ଼ପଣ୍ଡାଙ୍କ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ଫଳରେ ପ୍ରଥମ ପଦକ୍ଷେପ ସ୍ୱରୂପ, ସେପ୍ଟେମ୍ବର ୦୨, ୨୦୨୦ରେ ରାଜ୍ୟ ଐତିହ୍ୟ କ୍ୟାବିନେଟ ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟ ମାନ୍ୟତା ଦେବା ନିମନ୍ତେ କେନ୍ଦ୍ରକୁ ଅନୁରୋଧ କରିବା ପାଇଁ ଏକ ସଂକଳ୍ପ ପାରିତ କରିଥିଲେ ।

ଦୁଇ ହଜାର ପାଞ୍ଚଶହ ବର୍ଷରୁ ଅଧିକ ସମୟ ପାଇଁ ଓଡ଼ିଶୀ ସଙ୍ଗୀତର ସୁଦୀର୍ଘ ପରମ୍ପରା, ସମୃଦ୍ଧ ଉତ୍ତରଣ ସମ୍ପନ୍ନ ଐତିହ୍ୟ ଏବଂ ଲିଖିତ ଇତିହାସ ରହିଛି । ରାଜଦରବାର ଏବଂ ସରକାରଙ୍କ ପୃଷ୍ଠପୋଷକତା ହେତୁ ଏହା ବିକଶିତ ହୋଇ ଅଭିବୃଦ୍ଧି ହାସଲ କରିଛି । ଏଥିରେ ଲିପିବଦ୍ଧ ପ୍ରମାଣ ଏବଂ ଚମତ୍କାରିତା ଅଛି । ଏହା ଶାସ୍ତ୍ରୀୟ ଓଡ଼ିଆ ଭାଷାରେ ରଚିତ ନାଟକ ଏବଂ ଗୀତି ସାହିତ୍ୟ ଉପରେ ପ୍ରଭାବ ପକାଇଛି । ଓଡ଼ିଶୀ ସଂଗୀତ ତତ୍ତ୍ୱଗତ ନିୟମ ଏବଂ ବ୍ୟାକରଣଗତ ନିୟମ ପାଳନ କରେ । ସର୍ବୋପରି, ଶ୍ରୋତାମାନଙ୍କ ହୃଦୟରେ ଚିତ୍ତାକର୍ଷକ ପ୍ରଭାବ ସୃଷ୍ଟି କରୁଥିବା ଉନ୍ନତମାନର ନିତ୍ୟନୂତନ ଏବଂ ସୌନ୍ଦର୍ଯ୍ୟପୂର୍ଣ୍ଣ ଆବେଦନ ହେତୁ ପ୍ରଖ୍ୟାତ ସଂଗୀତ ଗୁରୁ ଓ ସଂଗୀତଜ୍ଞଙ୍କ ଦ୍ୱାରା ଉଚ୍ଚମାନର ନିୟମିତ ଗାୟନ, ବାୟନ ଏବଂ କ୍ରମାଗତ ପରିବେଷଣ ଲାଗିରହିଛି ।

ଅତୀତରେ ବିଶିଷ୍ଟ ଗାୟକ, ଗୁରୁ ଏବଂ ସଙ୍ଗୀତ–ବିଦ୍ୱାନ୍‌ମାନଙ୍କର ଏକ ସଙ୍ଗଠନ ୧୯ ଜୁନ୍, ୨୦୦୭ରେ ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟ ମାନ୍ୟତା ଦେବାକୁ ରାଜ୍ୟ ସରକାରଙ୍କୁ ଅନୁରୋଧ କରିଥିଲେ। ସରକାର ୨୯ ଫେବୃଆରୀ ୨୦୦୮ରେ ଓଡ଼ିଶୀ ସଂଗୀତକୁ ଶାସ୍ତ୍ରୀୟ ସଙ୍ଗୀତ ଭାବରେ ଘୋଷଣା କରିଥିଲେ ହେଁ ବାସ୍ତବରେ ରାଷ୍ଟ୍ରୀୟ ସ୍ତରରେ କିଛି ପଦକ୍ଷେପ ନେଇନଥିଲେ । ଯଦିଓ ଓଡ଼ିଶୀ ନୃତ୍ୟକୁ ଦେଶର ଅନ୍ୟତମ ଶାସ୍ତ୍ରୀୟ ନୃତ୍ୟର ମାନ୍ୟତା ଦିଆଯାଇଛି ଏବଂ ଏହା ନିଜସ୍ୱ ଚରିତ୍ର, ଭଙ୍ଗୀ, ଠାଣୀ, ଲାଳିତ୍ୟ ଓ ମୁଦ୍ରା ଇତ୍ୟାଦି ହେତୁ ପ୍ରଖ୍ୟାତି ପାଇପାରିଛି, ବିଡମ୍ବନାର ବିଷୟ, ଓଡ଼ିଶୀ ସଙ୍ଗୀତକୁ ଜାତୀୟ ସ୍ତରରେ ସଂଗୀତର ଅନ୍ୟତମ ଶାସ୍ତ୍ରୀୟ ରୂପ ଭାବରେ ସ୍ୱୀକୃତି ଦିଆଯାଇ ନାହିଁ ।

ଏହି ପ୍ରେକ୍ଷାପଟରେ ୦୫/୦୪/୨୦୧୯ ଏବଂ ୦୬/୦୪/୨୦୧୯ରେ ଦିଲ୍ଲୀଠାରେ ସଙ୍ଗୀତଜ୍ଞ ଗୁରୁ ଗୋପାଳ ପଣ୍ଡା ଏବଂ ସଙ୍ଗୀତା ପଣ୍ଡା ଓଡ଼ିଶୀ ଏକାଡେମୀ ମାଧ୍ୟମରେ ଦିଲ୍ଲୀରେ ଅନ୍ତର୍ଜାତୀୟ ଆଲୋଚନାଚକ୍ର ଆୟୋଜନ କରିଥିଲେ । ଏହି ଦୁଇଦିନିଆ କର୍ମଶାଳାରେ ଭାଷାବିତ୍ ତଥା ସଂସ୍କୃତି ଗବେଷକ ଡକ୍ଟର କୀର୍ତ୍ତନ ନାରାୟଣ ପାଢ଼ୀ, ଓଡିଶୀ ସଙ୍ଗୀତ କାହିଁକି ଶାସ୍ତ୍ରୀୟ ମର୍ଯ୍ୟାଦା ପାଇବା ଉଚିତ– ସେହି ବିଷୟ ଉପରେ ସାରଗର୍ଭକ ତଥ୍ୟ ଉପସ୍ଥାପନା କରି ଉପସ୍ଥିତ ବିଭିନ୍ନ ରାଜ୍ୟର ସଙ୍ଗୀତଜ୍ଞମାନଙ୍କୁ ଚକିତ କରିଦେଇ ଥିଲେ । ଏହି କର୍ମଶାଳା ସଙ୍ଗୀତଜ୍ଞ ଗୁରୁ ଗୋପାଳ ପଣ୍ଡାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିବାବେଳେ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର କମଳା କାନ୍ତ ମିଶ୍ର ମୁଖ୍ୟ ଅତିଥି ଭାବେ ଯୋଗଦେଇ ବକ୍ତବ୍ୟ ରଖିଥିଲେ । ପ୍ରଫେସର ଡକ୍ଟର ସୁନିରା କାଶଲିଓ୍ୱାଲ, ଦିଲ୍ଲୀ ବିଶ୍ୱବିଦ୍ୟାଳୟ, ଡକ୍ଟର କେ. ଭଗେଶ, ଲୀଲା ଭେଙ୍କଟରମଣ ଓ ଡକ୍ଟର ଭଗବାନ ପ୍ରକାଶ ପ୍ରମୁଖ ଆଲୋଚନାରେ ଭାଗ ନେଇଥିଲେ । ହିନ୍ଦୁସ୍ତାନୀ ସଙ୍ଗୀତରେ ଦିଲ୍ଲୀର ଶାଶ୍ୱତୀ ମଣ୍ଡଳ, କର୍ଣ୍ଣାଟକୀରେ ସୁଧା ରଘୁରମଣ ଓ ଓଡ଼ିଶୀରେ ସଙ୍ଗୀତା ପଣ୍ଡା ଗାୟନ କରିଥିଲାବେଳେ ଗୀତଗୋବିନ୍ଦ ଗାନ କରିଥିଲେ ମିତାଲି ଚିନ୍ନାରା, ମଞ୍ଜରୀ ସିହ୍ନା ପ୍ରମୁଖ ସଙ୍ଗୀତଜ୍ଞ । ଏହି କର୍ମଶାଳାରେ ସଙ୍ଗୀତଜ୍ଞ ସଙ୍ଗୀତା ପଣ୍ଡା, ସରିତା ପଣ୍ଡା, ଅଚ୍ୟୁତ ମହାରଣା ପ୍ରମୁଖ ଗାୟନ କରିଥିବାବେଳେ ବାଦ୍ୟରେ ନିରଞ୍ଜନ ସାହୁ ପ୍ରମୁଖ ଭାଗ ନେଇଥିଲେ । ପଦ୍ମଶ୍ରୀ ମାଧବୀ ମୁଦଗଲ ଓ ଜ୍ୟୋତି ଶ୍ରୀବାସ୍ତବଙ୍କ ସମେତ ପ୍ରାୟ ୧୫ ଜଣ ନୃତ୍ୟଶିଳ୍ପୀ ମଧ୍ୟ ଏଥିରେ ଭାଗ ନେଇଥିଲେ, ଯାହାକି ଓଡ଼ିଶୀ ସଂଗୀତ ପ୍ରତି ଏକ ଉତ୍ସାହ ପ୍ରଦାନ କରିଥିଲା ।

ଓଡିଶୀ ସଙ୍ଗୀତ ନିଜର ହକ୍ ପାଇଲେ, ଅଧିକ ଛାତ୍ରଛାତ୍ରୀ ବୃତ୍ତି ପାଇ ଓଡିଶୀ ସଙ୍ଗୀତ ଶିଖିବେ । ଏହା ଅଭ୍ୟାସ କଲେ ଆଧୁନିକ ଗୀତ, ପଲ୍ଲୀଗୀତ, ଜଣାଣ ଭଜନ ଗାୟନ ସୁଲଳିତ ହୋଇପାରିବ । ଏବେ ଆମ ପିଲାଏ ହିନ୍ଦୁସ୍ଥାନୀ ଓ କର୍ଣ୍ଣାଟକୀ ସଙ୍ଗୀତ ଶିଖୁଛନ୍ତି । ମାନ୍ୟତା ମିଳିଲେ ଦେଶୀ ବିଦେଶୀ ଛାତ୍ରଛାତ୍ରୀ ଓଡିଶୀ

ସମେତ ତିନୋଟି ଶାସ୍ତ୍ରୀୟ ସଂଗୀତ ମଧ୍ୟରୁ ଯେକୌଣସି ଗୋଟିଏ ସଙ୍ଗୀତ ଶିକ୍ଷାଲାଭ କରିପାରିବେ । ପ୍ରଶିକ୍ଷିତ ସଙ୍ଗୀତ ଶିଳ୍ପୀ ଯେ କୌଣସି ଭାଷାର ଗୀତ ଯେକୌଣସି ତାଳ, ରାଗ ଓ ତାନରେ ସହଜରେ ଗାନ କରି ପାରିବେ । ମା' ସରସ୍ୱତୀଙ୍କ ଆରାଧନା ପାଇଁ ସଙ୍ଗୀତର ବିକଳ୍ପ ନାହିଁ । ଯେକୌଣସି ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା, ଉନ୍ନୟନ, ଗବେଷଣା ତଥା ବିବର୍ତ୍ତନ ଧାରା ପାଇଁ କେନ୍ଦ୍ର ସରକାର ବୃତ୍ତି, ଅନୁଦାନ ତଥା ପୁରସ୍କାର ଦେଇଥାଆନ୍ତି । ସଂଗୀତ ଶାସ୍ତ୍ରୀମାନେ ଓଡିଶୀ ସଙ୍ଗୀତର ବ୍ୟାକରଣ, ରାଗ, ତାଳ, ବାଦ୍ୟ ଜାଣନ୍ତି । ସେମାନଙ୍କ ପାଖରୁ ଶିକ୍ଷା ପାଇଥିବା ଛାତ୍ରଛାତ୍ରୀ ଚଳଚ୍ଚିତ୍ର, ବେତାର, ଦୂରଦର୍ଶନ ଓ ସଙ୍ଗୀତ ସଭାରେ ଗୀତ ପରିବେଷଣ କରିପାରିବେ । ଶାସ୍ତ୍ରୀୟ ସଙ୍ଗୀତ ଭାବେ କେବଳ କର୍ଣ୍ଣାଟକୀ ଓ ହିନ୍ଦୁସ୍ତାନୀ ସଙ୍ଗୀତ ମାନ୍ୟତାପ୍ରାପ୍ତ ହୋଇଥିବାରୁ, ସେହି ଦୁଇ ପ୍ରକାର ସଙ୍ଗୀତ ଶିକ୍ଷା ସହିତ ସମ୍ପର୍କିତ ଭାଷାଗୁଡିକ ମଧ୍ୟ ଲୋକପ୍ରିୟ ହୋଇପାରିଛି । ରାଗ ଆଧାରିତ ଭଜନ, ଜଣାଣ, ଆଧୁନିକ ଗୀତ କେବଳ ଯେ ଜଣେ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା କରିଥିବା ବ୍ୟକ୍ତି ସଠିକ୍ ଓ ସୁମଧୁର ଭାବେ ଗାନ କରିପାରିବେ, ଏହା ନିଃସନ୍ଦେହରେ କୁହାଯାଇପାରେ ।

ସଙ୍ଗୀତପ୍ରେମୀଙ୍କ ଦୀର୍ଘ ଦିନର ସ୍ୱପ୍ନକୁ ସାକାର କରିବା ପାଇଁ କେନ୍ଦ୍ର ସଂସ୍କୃତି ମନ୍ତ୍ରୀଙ୍କୁ ମୁଖ୍ୟମନ୍ତ୍ରୀ ଚିଠିଲେଖି ଓଡ଼ିଶୀ ସଙ୍ଗୀତ (ଉଭୟ କଣ୍ଠଦାନ ଏବଂ ବାଦ୍ୟଯନ୍ତ୍ର)କୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ କରିବାକୁ ଅନୁରୋଧ କରିଛନ୍ତି । ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ୨୫/୦୯/୨୦୨୦ରେ ଲେଖାଯାଇଥିବା ଚିଠିଟି ଦୀର୍ଘ ପ୍ରତୀକ୍ଷିତ ସମ୍ମାନ ପାଇବା ପାଇଁ ଏକ ବଳିଷ୍ଠ ପଦକ୍ଷେପ । ଭାଷା ଆନ୍ଦୋଳନର ଦାବୀ ଓ ବହୁଦିନର ସ୍ୱପ୍ନ ପୂରଣ ଦିଗରେ ଏହି ପଦକ୍ଷେପ ଏକ ମାଇଲ୍ ଖୁଣ୍ଟ ସଦୃଶ । ଓଡ଼ିଆ ଭାଷା, ସାହିତ୍ୟ, ସଙ୍ଗୀତ ଏବଂ ସଂସ୍କୃତି ପାଇଁ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କର ବଳିଷ୍ଠ ପଦକ୍ଷେପ ଆଗାମୀ ପିଢ଼ି ପାଇଁ ନୂତନ ଆଶା ସଞ୍ଚାର କରିଛି ।

କେନ୍ଦ୍ର ସଂଗୀତ ନାଟକ ଏକାଡେମୀର ସଙ୍ଗୀତ ବିଶାରଦମାନେ ଯେପରି ସଠିକ୍ ଆକଳନ ଓ ମୂଲ୍ୟାୟନ କରି ଓଡିଶୀ ସଙ୍ଗୀତକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ କରିବେ, ସେଥିପାଇଁ ଓଡ଼ିଶୀ ସଂଗୀତଜ୍ଞ, ଗବେଷକ, ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ, ସଂଗୀତ ମହାବିଦ୍ୟାଳୟ ଏବଂ କଳା ଓ ସଂସ୍କୃତି ପରାମର୍ଶଦାତାମାନଙ୍କୁ ଏକାଠି ବସି ନିର୍ଦ୍ଦିଷ୍ଟ ରଣନୀତି ପ୍ରସ୍ତୁତ କରିବାକୁ ହେବ । ରାଜ୍ୟ ସରକାର ଚାହିଁଲେ ଭାଷା ଆନ୍ଦୋଳନ, ଓଡ଼ିଶା, ଏ ଦିଗରେ ପରାମର୍ଶ ଦେଇପାରିବ ଓ ସମସ୍ତଙ୍କୁ ଗୋଟିଏ ମଞ୍ଚକୁ ଆଣିପାରିବ ।

ଆବାହକ
ଭାଷା ଆନ୍ଦୋଳନ, ଓଡ଼ିଶା



# ହିମାଳୟ ବ୍ୟକ୍ତିତ୍ୱର କଳିଙ୍ଗ ସମ୍ରାଟ୍ ବିଜୁ ପଟ୍ଟନାୟକ

**ପ୍ରଫୁଲ୍ଲ କୁମାର ଦାସ**

ସମଗ୍ର ବିଶ୍ୱର ରାଜନୈତିକ ଆକାଶରେ କଳିଙ୍ଗ ସମ୍ରାଟ୍ ବିଜୁ ପଟ୍ଟନାୟକ ଦୀପ୍ତିମାନ ସୂର୍ଯ୍ୟ । ଯାହାଙ୍କର ବିସ୍ମୟକର ବ୍ୟକ୍ତିତ୍ୱର ଦ୍ୟୁତି ବୀର ଓଡିଆ ଜାତି ପ୍ରାଣରେ ସୃଷ୍ଟିକରେ ନବୀନ ଆଲୋଡନ ଓ ଆନ୍ତର୍ଜାତୀୟ ସୁଖ୍ୟାତି । କଳିଙ୍ଗର ଖାରବେଳଙ୍କଠାରୁ ବିଜୁବାବୁଙ୍କ ପର୍ଯ୍ୟନ୍ତ ଏ ମାଟିର ସ୍ୱାଭିମାନ କାଳ ମହାକାଳକୁ ବିସ୍ମିତ ଚକିତ କରି କ୍ୱଚିତ୍ ଏପରି ଯୋଗଜନ୍ମା ବ୍ୟକ୍ତିଙ୍କର ଆବିର୍ଭାବ ହୋଇଥାଏ । ଯେଉଁମାନେ ଇତିହାସ ସୃଷ୍ଟି କରନ୍ତି, ଇତିହାସ ବଦଳେଇ ପାରନ୍ତି ଓ ଇତିହାସ ନିର୍ମାଣର ସୁବର୍ଣ୍ଣ ଆୟରେ ସୁନେଲି ସ୍ୱପ୍ନ ବୁଣି ଦିଅନ୍ତି, ଶତାବ୍ଦୀ ଶତାବ୍ଦୀ ଧରି ଉତ୍ତର ପୁରୁଷଙ୍କ ଆଖିର ଆଇନାରେ । ପୁଣି ଇତିହାସ ସେମାନଙ୍କ କାଳଜୟୀ କୀର୍ତ୍ତି ଓ କୃତିତ୍ୱକୁ ସ୍ୱର୍ଣ୍ଣାଭ ପୃଷ୍ଠାରେ ଧାରଣ କରି ନିଜେ ଆୟୁଷ୍ମାନ ହୁଏ, ଯଶସ୍ୱୀ ହୁଏ ଓ ଶତ ଧନ୍ୟ ହୁଏ । ଯାହାଙ୍କ ଅପୂର୍ବ ଦୁଃସାହସିକତାର ସ୍ୱର୍ଣ୍ଣିମ ଝଲକରେ ମାଟିରୁ ଆକାଶ ଚିର ଆଲୋକିତ ହୁଏ । ସେହି ଦୂରଦର୍ଶୀ କିମ୍ବଦନ୍ତୀ ପୁରୁଷ ବିଜୁ ପଟ୍ଟନାୟକ, ଯାହାଙ୍କ ହିମାଳୟ ବ୍ୟକ୍ତିତ୍ୱର ମହିମା ଓ ଗରିମାରେ ମୁଗ୍ଧ ଓ ଅଭିଭୂତ ଏ ଆକୁମାରୀ ହିମାଳୟର ସୁବର୍ଣ୍ଣ ବସୁଧା । ଇଏ ସେଇ ଓଡ଼ିଶା ଏ ବୀର ଜାତିର ତ୍ୟାଗ ଓ ସାହସର ପ୍ରଚଣ୍ଡ ସ୍ୱାଭିମାନ ବିଜୁ ପଟ୍ଟନାୟକ, କଳିଙ୍ଗ ସମ୍ରାଟ୍ ଖାରବେଳଙ୍କ ପରି ଯିଏ କି କଳିଙ୍ଗର ହୃତ ଗୌରବ ଫେରାଇ ଆଣିବା ପାଇଁ ଇତିହାସ ସୃଷ୍ଟି କରିଥିଲେ । ବାଲ୍ୟକାଳରୁ ଯାହାଙ୍କ ଜୀବନ ବୀର ବିକ୍ରମରେ ସଂଗ୍ରାମର ବାଲ୍ୟକାଳରୁ ମହାସାଗର ସନ୍ତରଣ କରିଥିଲା ଓ ଝଡର ଆକାଶରେ ଉଡିଥିଲା, ଝଡ଼ର ଇଗଲ ସିଏ । ପ୍ରତିକୂଳ ପରିସ୍ଥିତି ଓ ପ୍ରତିବନ୍ଧକର ଅମା ଅନ୍ଧାରକୁ ଭେଦ କରି ସୁଦୂର ଆକାଶର ଅନନ୍ତ ନୀଳିମାରେ ଉଡ୍ଡୀୟମାନ । ଡେଣାରେ ନ ଥିଲା କ୍ଳାନ୍ତି, ମନରେ ନ ଥିଲା ଅବସାଦ । ସମଗ୍ର ବିଶ୍ୱବାସୀଙ୍କୁ ଅଭିଭୂତ କରିଥିଲା ନିଜ ଶକ୍ତି ସାମର୍ଥ୍ୟର ହିରଣ୍ମୟ ଔଜ୍ଜ୍ୱଲ୍ୟର ଆଭା ବିଭାରେ । ଆକାଶରେ ଉଡିବାର ଅଦମନୀୟ ସଂକଳ୍ପ ତାଙ୍କୁ ଭବିଷ୍ୟତରେ ଦୁର୍ଦ୍ଧର୍ଷ ପାଇଲଟ୍‌ରେ ପରିଣତ କରିଥିଲା । ଉତ୍କଳଗୌରବ ମଧୁସୂଦନ ଦାସଙ୍କର ପଦିଏ କଥା –‘‘କୋଟିଏ ସନ୍ତାନ ମା ଗୋ ଧରିଅଛି କୋଳେ, –ଗୋଟିଏ ସନ୍ତାନ ମାତ୍ର ନ ଦେଖିଲି ଡୋଳେ’’ ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା । ସ୍ୱାଭିମାନ ପୌରୁଷରେ କହି ଉଠିଥିଲେ, ‘‘ମୁଁ ଖାରବେଳ ଜାତିର ଦାୟାଦ, ମୁଁ କପିଳେନ୍ଦ୍ର ଦେବଙ୍କ ବଂଶଧର,ଦୁଃସାହସିକତା ପାଇଁ ଏ ରାଜ୍ୟ କଳିଙ୍ଗ ଓ କଳାର ଉତ୍କର୍ଷ ପାଇଁ ମୋ ରାଜ୍ୟର ନାମ ଉତ୍କଳ’’। ଓଡିଆ ସାଧବ ପୁଅର ନୌବାଣିଜ୍ୟ ସଂସ୍କୃତିକୁ ଉଜ୍ଜୀବିତ କରି ଜଣେ ଓଡିଆ ଝିଅ ନିବେଦିତା ମିଶ୍ରଙ୍କୁ ବିକ୍ଷୁବ୍ଧ ସମୁଦ୍ର ବକ୍ଷରେ ବାଲିଦ୍ୱୀପକୁ ପଠାଇଥିଲେ ।

ଏହି ମହାନ୍ ଜନନାୟକଙ୍କର ଜନ୍ମ ମାର୍ଚ୍ଚ ୫ ତାରିଖ ୧୯୧୬ ମସିହାରେ ହୋଇଥିଲା । ପିତା ଲକ୍ଷ୍ମୀ ନାରାୟଣ ପଟ୍ଟନାୟକ ଓ ମାତା ଆଶାଲତା ଦେବୀଙ୍କର ଏହି ସନ୍ତାନ ଦିନେ ଓଡିଶାର ଏକ ଶତାବ୍ଦୀର ଇତିହାସ ରଚନା କରିବ, ଅନ୍ଧକାରରେ ହଜିଯାଇଥିବା ଏକ ଦୁର୍ବଳ ଜାତିକୁ ପୁଣି ସବଳ କରି ଗଢିତୋଳି ନୂଆ ଓଡିଶା ଗଠନ କରିବ – ସେତେବେଳେ କେହି ହୁଏତ ଏ କଥା ଭାବି ନ ଥିବେ । ବିଭିନ୍ନ କ୍ଷେତ୍ରରେ

ବହୁ ସ୍ମୃତି ସ୍ତମ୍ଭ ତାଙ୍କୁ ଆଜି ଏକ ମହାନ୍ ରାଷ୍ଟ୍ରନୀତିଜ୍ଞ ଓ ବହୁ ଚର୍ଚ୍ଚିତ ପ୍ରବାଦପୁରୁଷରେ ପରିଣତ କରିଛି । ଶିଳ୍ପ ସମୃଦ୍ଧ ଓଡିଶା ଗଠନ ପାଇଁ ସେ ପଂଚାୟତିରାଜ ଓ ମୋ ସ୍ୱପ୍ନର ଭାରତବର୍ଷର ପରିକଳ୍ପନା କରିଥିଲେ । ବିଜୁ ବାବୁଙ୍କ ଦୁଃସାହସର କାହାଣୀ କହେ, ଭାରତର ସଶସ୍ତ୍ର ସ୍ୱାଧୀନତା ଆନ୍ଦୋଳନର ରୋମାଂଚ ଓ ଲୋମହର୍ଷଣର ଇତିହାସ । କେବଳ ସେତିକି ନୁହେଁ , ତାଙ୍କ ଯୁବ ମାନସରେ ପୃଥିବୀ ମୁକ୍ତିର ଆଶା ଓ ଉପନିବେଶ ସ୍ୱାଧୀନତାର ସଂଗ୍ରାମ । ବିଶେଷ କରି ଇଣ୍ଡୋନେସିଆ ଅଭିଯାନ କିମ୍ବଦନ୍ତୀରେ ପରିଣତ ଓ ''ଭୂମିପୁତ୍ର'' ଭାବରେ ସମ୍ମାନିତ ଓ ଇଣ୍ଡୋନେସିଆର ୫୦୦କୋଟି ଟଙ୍କାର ଦାନକୁ ବିଜୁବାବୁ ଫେରାଇ ଦେଇ ତାଙ୍କ ପାର୍ଲିଆମେଣ୍ଟରେ କହିଥିଲେ କଳିଙ୍ଗ ସାମ୍ରାଜ୍ୟ କାହାର ଦାନ ଗ୍ରହଣ କରେନା । ପରେ ତାଙ୍କୁ ତ୍ୟାଗର ସର୍ବୋଚ୍ଚ ଉପାଧିରେ ଘୋଷିତ କରାଯାଇଥିଲା । ସରୋଜିନୀ ନାଇଡୁ ତାଙ୍କ ଆଗ୍ନେୟ ଜିଜ୍ଞାସାର ପ୍ରତିଛବି ଦେଖି କହିଥିଲେ ବିଜୁବାବୁ ନିଜର ପରାଧୀନ ଜାତିକୁ ନେତୃତ୍ୱ ଦେବାରେ ଜଣେ ସଫଳ ନେତା ।

କଲିକତା ବିମାନ ବନ୍ଦରରେ ପ୍ରତିକୂଳ ପାଗ ଦେଖି କଣ୍ଟ୍ରୋଲ ଇଂଜିନିୟର ତାଙ୍କୁ ବାରଣ କରିବାରୁ ସେଦିନ ବେପରୁଆ ଭାବରେ ସେ କହିଥିଲେ– ବିଜୁର ପ୍ଲେନ୍ କେବଳ ଝଡର ଆକାଶରେ ଉଡେ । କାରଣ ବିଜୁ ସର୍ବତ୍ର ଦୁଃସାହସର ପ୍ରତୀକ । ସୁଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ସେ ରାଜନୀତିଜ୍ଞରୁ ରାଷ୍ଟ୍ରନୀତିଜ୍ଞ ପାଲଟି ଯାଇଛନ୍ତି । ସେ କହନ୍ତି – ''ଯେଉଁ ଜାତି ମରି ଶିଖିନି, ସେ ଜାତି କେବେବି ଉଠି ପାରିବନି ''। ଓଡିଶାର ପରିଭାଷା ବଦଳାଇବା ପାଇଁ ସେ ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳା ସଂରକ୍ଷଣ ବ୍ୟବସ୍ଥା କରି ଏକ ସୁବିଶାଳ ଇତିହାସ ରଚିଛନ୍ତି । ଅସୂର୍ଯ୍ୟମ୍ ପଶ୍ୟା ନାରୀକୁ ଆଗ ଧାଡିକୁ ନେଇଆସିଛନ୍ତି । ଫଳରେ ଗଣତନ୍ତ୍ର ରାଷ୍ଟ୍ରରେ ସେ ମୁକୁଟ ବିହୀନ କଳିଙ୍ଗ ସମ୍ରାଟ୍ । ତାଙ୍କ ଭାଷାରେ ଓଡିଶା ଏକ କ୍ଷୁଦ୍ର ରାଜ୍ୟ ହେଲେବି ଗରିମା ମଣ୍ଡିତ । ଦିନେ ଏହା ଭାରତବର୍ଷର ମହାନ୍ତମ ସାମ୍ରାଜ୍ୟ ଥିଲା । ଏହାର ସେନା ବିଶ୍ୱ ବିଜୟୀ ଆଲେକ୍‌ଜାଣ୍ଡାରକୁ ପରାସ୍ତ କରିଥିଲେ । ନୌଶକ୍ତିରେ କଳିଙ୍ଗ ଇଂଲଣ୍ଡଠାରୁ ଶକ୍ତିଶାଳୀ ଥିଲା । କଳିଙ୍ଗର ନାରୀ ବୀରାଙ୍ଗନା ଓ ମହୀୟସୀ, ବୀର ଓଡିଆ ଜାତି ବିଶ୍ୱ ବିସ୍ମୟ ପୁରୀ ଲିଙ୍ଗରାଜ କୋଣାର୍କର ସ୍ରଷ୍ଟା । ଏହି ଅବସରରେ ବିଜୁ ବାବୁଙ୍କର ଗୋଟିଏ ପଂକ୍ତି ଉଦ୍ଧାର କରାଯାଇପାରେ । ''ଆମେ ମହାନ୍ ପରମ୍ପରାର ଦାୟାଦ, ମନୋଜ୍ଞ ଗିରିପୁଞ୍ଜ, ସୁନ୍ଦର ନଦୀ ଧାରା, ସୁଦୀର୍ଘ ବେଳାଭୂମି, ସମୃଦ୍ଧ ଅରଣ୍ୟ ସମ୍ପଦ, ବୌଦ୍ଧିକ ମାନବ ସମ୍ବଳ ଆମ ରାଜ୍ୟବାସୀଙ୍କ ପାଇଁ ଈଶ୍ୱରଙ୍କ ଉପହାର । ମୋ ରାଜ୍ୟବାସୀ, ମୋ ରାଜ୍ୟର ତରୁଣ ତରୁଣୀମାନେ ଆଗାମୀ ବର୍ଷମାନଙ୍କରେ ଏସବୁ ସମ୍ପଦ ବିନିଯୋଗ କରି ଏକ ସୁନ୍ଦର ଓଡିଶା ଗଠନ କରନ୍ତୁ ।''

ଓଡିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଭାଷାରେ, ସେ ଥିଲେ ଝଡର ଇଗଲ, ଧରଣୀର କୃଷ୍ଣସାର, ମାଟିର ମୂର୍ତ୍ତିକାର । ଓଡିଶାର ରାଜନୀତି, ଶିଳ୍ପ, ଶିକ୍ଷା ଓ ସାହିତ୍ୟ କ୍ଷେତ୍ରରେ ତାଙ୍କର ଉତ୍ତରଣ ଥିଲା ଗୋଟିଏ ଉତ୍‌କ୍ଷେପିତ ପ୍ରଚଣ୍ଡ ଉଲ୍‌କା ପରି, ଯାହା ଦିଗବିଦିଗକୁ ଉଦ୍‌ଭାସିତ କରି ନିଜସ୍ୱ ଦୀପ୍ତିରେ କୋଟି ଜନତାକୁ ଉଦ୍ଭାସିତ ଆଉ ଅନୁପ୍ରାଣିତ କରିଥିଲା । କାରଣ ସେ ଓଡିଶାର ଯାଦୁକର ଥିଲେ । ଓଡିଆଙ୍କ ମନ ମାନସରେ ସେ ଥିଲେ ଏକ ଅନିର୍ବାଣ ଦୀପଶିଖା, କଥାରେ ଅଛି, ଜଣେ ନେତା ପରବର୍ତ୍ତୀ ନିର୍ବାଚନ କଥା ଭାବେ, କିନ୍ତୁ ଜଣେ ରାଷ୍ଟ୍ରନାୟକ ପରବର୍ତ୍ତୀ ପିଢି କଥା ଚିନ୍ତାକରେ । ସେହି ବିଚାରରେ ଓଡିଶା ତଥା ଜାତୀୟ ରାଜନୀତିର ମୁଖ୍ୟସ୍ରୋତରେ ପ୍ରବାଦପୁରୁଷ ବିଜୁବାବୁ ଜଣେ ଜନପ୍ରିୟ ଜନନେତା । ତାଙ୍କ ରାଜନୈତିକ ଜୀବନରେ ବହୁ ଉତ୍‌ଥାନ ଓ ପତନ, ଜୟ ପରାଜୟ, ସୁଦିନ ଦୁର୍ଦ୍ଦିନ ମଧ୍ୟରେ ସେ ସଦା ଅବଦମିତ । ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ବିଜୁବାବୁଙ୍କୁ ଗ୍ରୀକ୍ ଉପକଥାର 'ସ୍ପିଙ୍କ୍ସ୍' ସହିତ ତୁଳନା କରିଥିଲେ ।

ଓଡିଶାରେ ଜନ୍ମ ହୋଇ ସାରା ବିଶ୍ୱରେ ଆଧିପତ୍ୟ ବୃଦ୍ଧି କରିବାରେ ସେ ପ୍ରଥମ ବ୍ୟକ୍ତି ଥିଲେ । ସେ ସ୍ୱପ୍ନର ସାଗର ଓ ବାସ୍ତବତାର କଳାକାର । ବିଜୁବାବୁ କେବଳ ଓଡିଶାର ନୁହନ୍ତି, ସମଗ୍ର ଭାରତର ଏପରିକି ବିଶ୍ୱରେ ଅନନ୍ୟ ଓ ଅତୁଳନୀୟ । ସାଲିସ ବିହୀନ ଚିନ୍ତାନାୟକ ବିଜୁବାବୁ

ଅନେକ ପ୍ରଶାସନିକ ଓ ଅର୍ଥନୈତିକ ସଂସ୍କାର ମାଧ୍ୟମରେ ଲୋକଙ୍କର ଅଧିକ ନିକଟତର ହେବା ସଙ୍ଗେ ସଙ୍ଗେ ଆବାଳବୃଦ୍ଧବନିତାଙ୍କର ପ୍ରିୟ ଥିଲେ । ମା'କୁ ସମ୍ମାନ, ଗାଁକୁ କାମ, ଶାଶୁ ହାତକଡି, ନଣନ୍ଦ ବେଡି ପ୍ରଭୃତି ସଂସ୍କାରମୂଳକ ପଦକ୍ଷେପ ବାସ୍ତବରେ ତାଙ୍କୁ ଖୁବ୍ ଲୋକପ୍ରିୟ କରିଛି । ଓଡିଶାରେ ସେ ବହୁ କଳକାରଖାନା ନିର୍ମାଣ କରି ଶିଳ୍ପାୟନର ନବଦିଗନ୍ତ ସୃଷ୍ଟି କରିଛନ୍ତି । ''ବିଜୟାନନ୍ଦର ଗାଥା ଉତ୍ତୋଳ ଆଜି ମଥା'' ଓଡିଶାର ଢଗଢମାଳି ହୋଇଛି ।

ଯାହାଙ୍କ ହୃଦୟରେ କେବଳ ସ୍ୱପ୍ନ ଓ ସ୍ୱପ୍ନକୁ ସାକାର କରିବା ପାଇଁ ପ୍ରାଣମୂର୍ଚ୍ଛା ପ୍ରଚେଷ୍ଟା, ଏ ମାଟିର ଲୋକଙ୍କ ମୁହଁରେ ହସ ଓ ମାଟିରେ ସୁନା ଫଳାଇବାର ଦୃଢ ଆଶା ତାଙ୍କର ପ୍ରମୁଖ ଲକ୍ଷ୍ୟ ଥିଲା । ସେ ଓଡ଼ିଶାକୁ ଶିଳ୍ପ ସାମ୍ରାଜ୍ୟରେ ପରିଣତ କରିବାକୁ ଉଦ୍ୟମ କରି ବହୁ କ୍ଷେତ୍ରରେ ସଫଳ ହୋଇ ବିଶିଷ୍ଟ ଶିଳ୍ପପତିରୁ ରାଜନେତା ହୋଇଥିଲେ । ତାଙ୍କର ଦୂରଦୃଷ୍ଟି ବଡ ପ୍ରଖର ଥିଲା । ବିଜୁବାବୁ ଏଭଳି ଜଣେ ବିଚକ୍ଷଣ ବ୍ୟକ୍ତି ଥିଲେ ଯାହାଙ୍କ ବିଷୟରେ ତୁଳନା କରି ଡକ୍ଟର ରାଧାନାଥ ରଥ କହିଥିଲେ ନେହେରୁଙ୍କୁ ଛାଡିଦେଲେ ତାଙ୍କ ସମକକ୍ଷ ନେତା ଆଉ କେହି ନାହାନ୍ତି । ବିଶିଷ୍ଟ ସର୍ବୋଦୟ ନେତ୍ରୀ ଅନ୍ନପୂର୍ଣ୍ଣା ମହାରଣାଙ୍କ ଭାଷାରେ ଓଡିଆ ମା'ର ଶ୍ରେଷ୍ଠ ସନ୍ତାନ ବିଜୁବାବୁ ।

ବିଜୁବାବୁଙ୍କ ଭଳି ବିଶାଳ ବ୍ୟକ୍ତିତ୍ୱକୁ ମୁଁ ନିକଟରୁ ଦେଖିବାର ସୁଯୋଗ ପାଇଥିଲି । ଯେତେବେଳେ ମୁଁ ୧୯୯୦ ମସିହାରେ ଜନତା ଦଳରୁ ବିଧାୟକ ପ୍ରାର୍ଥୀ ଭାବରେ ଆବେଦନ କରିଥିଲି । ଗ୍ରାମାଂଚଳରେ ଲୋକମାନଙ୍କୁ ବାସଗୃହ ଯୋଗାଇ ଦେବାକୁ ସେ ଟାଇଲ ଘର ଯୋଜନା ଆରମ୍ଭ କରିଥିଲେ ଓ ଚାଟଶାଳୀ ପିଲାମାନେ ସେତେବେଳେ ଗୀତ ଗାଉଥିଲେ –''ଟାଇଲ ଛପର ଘର ନିଆଁକୁ ନ ଥାଏ ଡର'' ।

ତରୁଣ ବୟସରେ ଉଚ୍ଛଳ ତାରୁଣ୍ୟରେ ଝଲମଲ କରୁଥିବା ବିଜୁ ପଟ୍ଟନାୟକ କଟକରୁ ପେଶୱାର ପର୍ଯ୍ୟନ୍ତ ସାଇକେଲରେ ଯାତ୍ରା କରିବା ଯେମିତି ଅବିଶ୍ୱସନୀୟ, ସେପରି ଆକାଶରେ ନାନା ବିପଦ ସହିତ ଖେଳଖେଳି ଦେଶ ଜାତିର ମଙ୍ଗଳ ପାଇଁ କାମ କରିବା ମଧ୍ୟ ସେପରି ଅପରିକଳ୍ପନୀୟ । ଭାରତଛାଡ ଆନ୍ଦୋଳନ ଓ ଭାରତୀୟ ମୁକ୍ତ ଆନ୍ଦୋଳନରେ ଜଣେ ବିଶିଷ୍ଟ ଓଡିଆ ଭାବରେ ତାଙ୍କର ଏ ଅକ୍ଷୟ କୀର୍ତ୍ତି ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି । ଆଜିର ଯୁବପିଢି ଏପରି ଏକ ସାହସିକତା ଓ ଅସୀମ ତ୍ୟାଗକୁ ହୁଏତ କଳ୍ପନା କରିପାରିବେ ନାହିଁ । ଅତୀତର ନୌବାଣିଜ୍ୟ, ଶିଳ୍ପ ସମୃଦ୍ଧ ଓଡିଶା ତାଙ୍କ ସ୍ୱପ୍ନରେ, କଳ୍ପନାରେ ଭାସି ଉଠୁଥିଲା । ଯେଉଁ ଜାତି କଳିଙ୍ଗ ଯୁଦ୍ଧରେ ଚଣ୍ଡାଶୋକକୁ ଧର୍ମାଶୋକରେ ପରିଣତ କରିଥିଲା ଆତ୍ମବଳିଦାନ ଦେଇ, ସେଇ ବୀର ଓଡିଆ ଭାବରେ ସେ ନିଜ ଜୀବନକୁ ପଣ କରିଦେଇଥିଲେ । ତାଙ୍କର ପ୍ରତି ରକ୍ତ ବିନ୍ଦୁରେ ବୀରତ୍ୱର ରକ୍ତଜବା ପ୍ରସ୍ଫୁଟିତ କରିଥିଲା । ଫଳରେ ରାଜନୀତିଜ୍ଞମାନେ ତାଙ୍କୁ ଓଡିଶାର ଚର୍ଚ୍ଚିଲ୍ ବୋଲି କହୁଥିଲେ । ତାଙ୍କ ବୀରତ୍ୱର, ତ୍ୟାଗର ଗୌରବ କାହାଣୀ ସତରେ ଏତେ ଦୀର୍ଘ ଯେ, ତାକୁ ସୀମିତ ପରିସରରେ ବର୍ଣ୍ଣନା କରିବା ସତେଯେପରି ଆଂଜୁଳାଏ ପାଣିରେ ମହାସାଗରକୁ ଆକଳନ କରିବା ସଦୃଶ । ଓଡିଶାକୁ ସ୍ୱୟଂ ସଂପୂର୍ଣ୍ଣ, ଐଶ୍ୱର୍ଯ୍ୟଶାଳୀ ଓ ଆତ୍ମନିର୍ଭରଶୀଳ ଶିଳ୍ପ ସମୃଦ୍ଧ ରାଜ୍ୟରେ ପରିଣତ କରିବାକୁ ତାଙ୍କ ସ୍ୱପ୍ନ ଓ ଐତିହାସିକ ଉଦ୍ୟମର ଅନ୍ତ ନ ଥିଲା । ତାଙ୍କ ଦିବ୍ୟ ଦୃଷ୍ଟିର ଦୂର ଦିଗ୍‌ବଳୟ ଏତେ ସମ୍ପ୍ରସାରିତ ଥିଲା ଯେ, ସାଧାରଣ ଲୋକେ ସହଜରେ ସେସବୁ ବୁଝି ପାରୁ ନ ଥିଲେ । ତାଙ୍କ ହିମାଳୟ ପରି ଉତ୍ତୁଙ୍ଗ ବ୍ୟକ୍ତିତ୍ୱର ପ୍ରଭାମଣ୍ଡଳ ଓ ଲୋକପ୍ରିୟତାର ଶୁଭ ସକାଳର ପଟାନ୍ତର ନାହିଁ । ବିଶିଷ୍ଟ ସାହିତ୍ୟିକ ପ୍ରାଣବନ୍ଧୁ କରଙ୍କ ଭାଷାରେ ସେ କାହାର ଅନୁଗାମୀ ନ ହୋଇ ନେତା ହୋଇଥିଲେ । ୧୯୫୧ ମସିହାରେ ଅନ୍ତର୍ଜାତୀୟ କଳିଙ୍ଗ ପୁରସ୍କାର ପ୍ରଦାନ କରି ଏ ମାଟିର ସୁଗନ୍ଧିତ ବାସ୍ନାକୁ କାଳ କାଳକୁ ବୃଦ୍ଧିମନ୍ତ କରିଯାଇଥିଲେ । ଯେତେଦିନ ପର୍ଯ୍ୟନ୍ତ ସେ ଓଡିଶାର ନେତୃତ୍ୱ ନେଇଥିଲେ ସେ ସମୟ ଓଡିଶା ଇତିହାସର ଏକ ସୁବର୍ଣ୍ଣ ଯୁଗ କହିଲେ ଅତ୍ୟୁକ୍ତି ହେବ ନାହିଁ ।

କଳିଙ୍ଗ କେଶରୀ ବିଜୁବାବୁଙ୍କର ଓଡିଶା ରାଜନୀତିରେ ଆବିର୍ଭାବ ଇତିହାସର କେଉଁ ଶୁଭଲଗ୍ନରେ । ରାଜ୍ୟବାସୀଙ୍କର ବିପୁଳ ଜନ ସମର୍ଥନ ଓ ବଳିଷ୍ଠ ନେତୃତ୍ୱ ତାଙ୍କୁ ରାଜନୈତିକ ଇତିହାସରେ କାଳଜୟୀ କରିଛି । ତାଙ୍କ ଦୃଢତା, ଆକର୍ଷଣୀୟ ବ୍ୟକ୍ତିତ୍ୱ ତାଙ୍କୁ ବିଗତ ଚାରିଦଶନ୍ଧି ଧରି ଓଡିଶାର ଏକ ସଶକ୍ତ ରାଜନୈତିକ କେନ୍ଦ୍ରବିନ୍ଦୁରେ ପରିଣତ କରିଛି । ସେ ବ୍ୟକ୍ତି ଅନୁଷ୍ଠାନଟିଏ ନ ହୋଇ ବହୁ ଅନୁଷ୍ଠାନର ସମଷ୍ଟି ପାଲଟିଛନ୍ତି । ତୁଚ୍ଛ ରାଜନୈତିକ ଆଦର୍ଶର ଅନ୍ଧାନୁସରଣ ନ କରିବାର ଦୃଢ ସିଦ୍ଧାନ୍ତ ଯୋଗୁଁ ତାଙ୍କୁ ନେଇ ସୃଷ୍ଟି ହୋଇଛି ଶତାଧିକ ରାଜନୈତିକ ବ୍ୟୂହ, ଫଳରେ ସେ ଜନଗଣଙ୍କ ରାଜନୈତିକ ପ୍ରତୀକ ହୋଇପାରିଛନ୍ତି । ଜାତୀୟତାବୋଧ, ପ୍ରଚଣ୍ଡ ସ୍ୱାଭିମାନ ତାଙ୍କୁ କରିଛି ଅମ୍ଳାନ, ଅତୁଳନୀୟ ଅନନ୍ୟ । ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧି ପାଇଁ କୌଣସି ରାଜନୈତିକ ଶକ୍ତି ନିକଟରେ ମଥା ଅବନତ ନ କରିବା ତାଙ୍କ ରାଜନୈତିକ ଜୀବନର ଅନ୍ୟତମ ବୈଶିଷ୍ଟ୍ୟ ।

କିନ୍ତୁ ଉତ୍କଳ ଜନନୀର ଦୁର୍ଭାଗ୍ୟ ଯେ, ବିଜୁବାବୁଙ୍କ ପରି ଜଣେ ଦୁଃସାହସୀ ଅସାଧାରଣ ସନ୍ତାନ ଜନ୍ମଦେଇ ଶୌର୍ଯ୍ୟମୟୀ, କୀର୍ତ୍ତିମୟୀ ରତ୍ନଗର୍ଭା ଓଡିଶା ଆଜି ବି ଅତୀତ ସୌଭାଗ୍ୟରୁ ବଂଚିତ । ଓଡିଶା ତଥା କେନ୍ଦ୍ର ରାଜନୀତିରେ ସେ ଜଣେ ଅନ୍ୟତମ ବିଶ୍ୱକର୍ମା । ଦୁର୍ଦ୍ଦଶାଗ୍ରସ୍ତ ଓଡିଆ ଜାତିର ସେବାରେ ନିଜର ବହୁ ମୂଲ୍ୟ ଜୀବନକୁ ସମ୍ପୂର୍ଣ୍ଣ ଉତ୍ସର୍ଗ କରି ଅନ୍ତିମ ସମୟରେ ପ୍ରିୟ ମାତୃଭୂମି ଓଡିଶାକୁ କର୍ମଭୂମି ରୂପେ ବାଛି ନେଇଥିଲେ ।

ଉତ୍କଳଗୌରବ କୁଳବୃଦ୍ଧ ମଧୁବାବୁଙ୍କ ପରେ ସେ ଜନନୀ ଜନ୍ମଭୂମିର ସର୍ବାଙ୍ଗୀନ ଉନ୍ନତିକଳ୍ପେ ସ୍ୱପ୍ନ ବିଭୋର ହୋଇଥିଲେ । ଅନେକ ସମସ୍ୟା ବିଜଡିତ ଅନଗ୍ରସର ଓଡିଶା ମାଟିକୁ ଶସ୍ୟଶ୍ୟାମଳା କରିବା ପାଇଁ ସେ ସଂକଳ୍ପ କରିଥିଲେ । ଅଶୀ ବର୍ଷର ରାଜନୈତିକ ପରିପକ୍ୱତା, ସତେଇଶ ବର୍ଷର ରାଜନୈତିକ ନିର୍ବାସନଲବ୍ଧ ବୁଦ୍ଧିମତ୍ତା ହିଁ ତାଙ୍କ ସଫଳ ଜୟଯାତ୍ରାର ଅମୋଘ ଆୟୁଧ । ଓଡିଶାର ଉନ୍ନତି ତାଙ୍କର ସ୍ୱପ୍ନ । ଓଡିଶାର ପ୍ରଗତି ତାଙ୍କର କାମନା । ସ୍ୱର୍ଣ୍ଣମୟୀ ସମୃଦ୍ଧ ଓଡିଶା ଗଠନ ତାଙ୍କର ସ୍ୱାଭିମାନ, ବିଜୁବାବୁ ଆଜନ୍ମରୁ ଓଡିଶା ପାଇଁ ଏକ ବିସ୍ମୟ । ବହୁ ନିନ୍ଦା ଓ ପ୍ରଶଂସାର ସେ ମୁଖ୍ୟ ନାୟକ । ବହୁ ଉପମା ଉପହାସର ସେ ପ୍ରମୁଖ ଚରିତ୍ର । ବହୁ କୀର୍ତ୍ତି କୋଣାର୍କର ସେ ଅବିସମ୍ବାଦିତ ସ୍ମୃତିସ୍ତମ୍ଭ ।

ଓଡିଶାର ରାଜନୀତି ଇତିହାସରେ ସେ ଅମର ଓ ଦୀପ୍ତିମାନ ରାଷ୍ଟ୍ରନୀତିଜ୍ଞ । ଓଡ଼ିଶାର ଗର୍ବ ଓ ଗୌରବର ମହାନାୟକ ବିଜୁବାବୁଙ୍କ ଭାଷାରେ – ''ଜଗା ! ଆମେ କେହି ରହୁ କି ନ ରହୁ, ତୁ ହଜାର ବର୍ଷ ତଳେ ଥିଲୁ, ହଜାର ବର୍ଷ ପରେ ମଧ୍ୟ ରହିବୁ ମୁଁ ଥାଏ କି ନଥାଏ– ଓଡିଶା ଦାୟିତ୍ୱ ତୋର, ଓଡିଶା ଯେପରି ଦେଶର ସର୍ବଶ୍ରେଷ୍ଠ ସମୃଦ୍ଧ ରାଜ୍ୟରେ ପରିଣତ ହେବ । ସୁନାମ ଅର୍ଜନ କରିବ । ସେଥିପାଇଁ ତୋର ଆଶୀର୍ବାଦ ଲୋଡା ।''

ବିଜୁବାବୁ ହିଁ ବିଜୁବାବୁ । ତାଙ୍କର ତୁଳନା ନାହିଁ । ନେତା ଭାବରେ ସେ ନିଜେ ଏକ ଶ୍ରେଣୀ । ଆଜି ସେ ପ୍ରଶଂସନୀୟ ଏବଂ ସ୍ମରଣୀୟ । ତାଙ୍କ ଯୋଗୁଁ ଆଦିବାସୀ, ହରିଜନ, ପଛୁଆ ବର୍ଗ ମହିଳାମାନେ କ୍ଷମତା ବିକେନ୍ଦ୍ରିକରଣରେ ସକ୍ରିୟ ଅଂଶଗ୍ରହଣ କରିବାର ସୁଯୋଗ ପାଇଛନ୍ତି । ଓଡିଶାକୁ ସୁନାର ଓଡିଶା କରି ଗଢିତୋଳିବା ପାଇଁ ସବୁସ୍ତରରେ ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି । ଓଡିଶା ଓ ଓଡିଆଙ୍କ ପାଇଁ ସେ ଚିରକାଳ ଅବିସ୍ମରଣୀୟ । ଭାରତରତ୍ନ ପାଇବା ପାଇଁ ସେ ଯୋଗ୍ୟ । ଏହି ଚିନ୍ତାନାୟକ, ଯିଏ ଦିନେ କହିଥିଲେ – ''ଅନ୍ୟ ଖେଳାଳିମାନେ କ୍ଳାନ୍ତ, ମୁଁ ଖେଳିବି ।'' ସେଇ ଶ୍ରେଷ୍ଠ ଖେଳାଳୀ ଜୀବନର ସବୁ ସ୍ତରରେ ଖେଳି ଖେଳି ନିଜ ମାଟି ମା' କୋଳରେ ଚିର ନିଦ୍ରାରେ ଶୋଇଯାଇଥିଲେ । ଆଉ ସେଇ ଦୁଃଖର ଦିନ ଥିଲା ୧୯୯୭ ମସିହା ଅପ୍ରେଲ ମାସ ୧୭ ତାରିଖ । ଆଜି ତାଙ୍କ ସୁପୁତ୍ର ଭାରତର ଏକ ନମ୍ବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ, ବିଜୁ ଲିଗାସିର ସକ୍ସେସର୍ ।

---

ସମ୍ପାଦକ, ଗୋପବନ୍ଧୁ ସାହିତ୍ୟ ସଂସଦ
ଚାନ୍ଦବାଲି, ଜିଲ୍ଲା– ଭଦ୍ରକ

# ଭାରତ ମୁକ୍ତି ସଂଗ୍ରାମର ପ୍ରଥମ ଶହୀଦ ଜୟୀ ରାଜଗୁରୁ

ଇଂ. ମାୟାଧର ସ୍ୱାଇଁ

ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମୀ ହେଉଛନ୍ତି ଜୟକୃଷ୍ଣ ରାଜଗୁରୁ ମହାପାତ୍ର । ଓଡ଼ିଶାରେ ସେ ଜୟୀ ରାଜଗୁରୁ ନାମରେ ଅଧିକ ଭାବରେ ଜଣା । ସେ ପୁରୀ ନିକଟବର୍ତ୍ତୀ ବୀର ହରେକୃଷ୍ଣପୁର ଗ୍ରାମରେ ୧୭୩୯ ମସିହା ଅକ୍ଟୋବର ୨୯ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପୂର୍ବପୁରୁଷ ଖୋର୍ଦ୍ଧା ରାଜାଙ୍କ ଦରବାରରେ 'ରାଜଗୁରୁ' ପଦରେ ରହି ଆସିଥିଲେ । ସେମାନେ ରାଜାଙ୍କୁ ରାଜନୀତି, ସାମରିକ ଓ ଧର୍ମ ସମ୍ବନ୍ଧୀୟ ପରାମର୍ଶ ଦେଉଥିଲେ । ଜୟୀ ରାଜଗୁରୁ ୧୭୮୦ ମସିହାରେ ୪୧ ବର୍ଷ ବୟସରେ ଖୋର୍ଦ୍ଧା ରାଜା ଦ୍ୱିତୀୟ ଦିବ୍ୟସିଂହଦେବଙ୍କ ରାଜଗୁରୁଭାବେ ଅଭିଷିକ୍ତ ହୋଇଥିଲେ । ଦ୍ୱିତୀୟ ଦିବ୍ୟସିଂହଦେବ ଅଳ୍ପ ବୟସରେ ମୃତ୍ୟୁବରଣ କରିବା ପରେ ସିଂହାସନ ପାଇଁ କନ୍ଦଳ ସୃଷ୍ଟି ହେଲା, ମାତ୍ର ରାଜଗୁରୁଙ୍କ ଚେଷ୍ଟାରେ ଦିବ୍ୟସିଂହଦେବଙ୍କ ପୁତ୍ର ଦ୍ୱିତୀୟ ମୁକୁନ୍ଦଦେବ ସିଂହାସନାରୂଢ଼ ହୋଇଥିଲେ । କିନ୍ତୁ ସେ ନାବାଳକ ଥିବାରୁ ତାଙ୍କ ତତ୍ତ୍ୱାବଧାରକ ଭାବେ ଜୟୀ ରାଜଗୁରୁ ଶାସନ କାର୍ଯ୍ୟ ପରିଚାଳନା କରିଥିଲେ ।

ମୁକୁନ୍ଦଦେବଙ୍କ ରାଜତ୍ୱ କାଳ ଓଡ଼ିଶା ଇତିହାସରେ ଅତି ଗୁରୁତ୍ୱପୂର୍ଣ୍ଣ ଥିଲା । ସେ ଥିଲେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା । ତାଙ୍କ ସମୟରେ ୧୮୦୩ ମସିହାରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଓଡ଼ିଶା ଅଧିକାର କରି ଉତ୍ତରରେ ବାଲେଶ୍ୱର ଓ କଟକ ଏବଂ ଦକ୍ଷିଣରେ ଗଞ୍ଜାମ ନିଜ ଶାସନ ଅନ୍ତର୍ଭୁକ୍ତ କରିଥିଲେ । ଖୋର୍ଦ୍ଧା ଏକ ସ୍ୱାଧୀନ ରାଜ୍ୟ ଥିଲା ।

ଇଷ୍ଟ ଇଣ୍ଡିଆ କମ୍ପାନୀ ୧୭୫୭ ମସିହାରେ ପଲାସି ଯୁଦ୍ଧରେ ସିରାଜ ଉଦ୍ଦୌଲାଙ୍କୁ ପରାସ୍ତ କରିବା ପରେ ଓଡ଼ିଶାର ମିଦିନାପୁର ଅଞ୍ଚଳ ଏହା ଅଧୀନକୁ



ଆସିଲା । ଏହାପରେ ଏହା ଅଗ୍ରସର ହୋଇ ବାଲେଶ୍ୱରରେ ଗୋଟିଏ କାରଖାନା ସ୍ଥାପନ କଲା । ଏହା ୧୭୬୫ ମସିହାରେ ହାଇଦ୍ରାବାଦ ନିଜାମଙ୍କଠାରୁ ଗୋଦାବରୀ ନଦୀଠାରୁ ଚିଲିକା ପର୍ଯ୍ୟନ୍ତ ଅଞ୍ଚଳକୁ ପାଇଥିଲା । ଏହା ଗଞ୍ଜାମରେ ଗୋଟିଏ ଦୁର୍ଗ ନିର୍ମାଣ

କରିଥିଲା । ଏଣୁ ଖୋର୍ଦ୍ଧା ମଧ୍ୟ ଦେଇ ଗଞ୍ଜାମରୁ ବାଲେଶ୍ୱର ପର୍ଯ୍ୟନ୍ତ ଗୋଟିଏ ବାଣିଜ୍ୟ ପଥ ହାସଲ କରିବା ପାଇଁ ଇଂରେଜମାନେ ଚାହିଁଲେ । ପୁନଶ୍ଚ ସୈନ୍ୟମାନେ କଲିକତାଠାରୁ ମାନ୍ଦ୍ରାଜ ଯିବା ପାଇଁ ଖୋର୍ଦ୍ଧା ଦେଇ ଯିବାକୁ ପଡ଼ିଲା । ଏଣୁ ଇଂରେଜମାନେ ଏଥିପାଇଁ ରାଜା ଦ୍ୱିତୀୟ ଦିବ୍ୟସିଂହଦେବଙ୍କୁ ୧୭୯୮ ମସିହାରେ ଅନୁମତି ମାଗିଲେ । ମାତ୍ର ଜୟୀ ରାଜଗୁରୁଙ୍କ ବିରୋଧ ଯୋଗୁଁ ଏହି ଅନୁମତି ମିଳିଲା ନାହିଁ ।

ଗଞ୍ଜାମ ମାଜିଷ୍ଟ୍ରେଟ୍ କର୍ଣ୍ଣେଲ୍ ହାରକୋର୍ଟ ୧୮୦୩ ମସିହାରେ ମରାଠାମାନଙ୍କ ସହ 'ଦେଓଗାଁଓ ସନ୍ଧି' କରି ରାହାଙ୍ଗ, ଚବିଶକୁଦ, ସେରାଇ ଓ ଲେମ୍ବାଇ ପ୍ରଗଣାର ଅଧିକାର ପାଇଲେ । ଏହି ଚାରି ପ୍ରଗଣା ପୂର୍ବରୁ ଖୋର୍ଦ୍ଧାରେ ଥିଲା । ମାତ୍ର ମରାଠାମାନେ ଏକ ଯୁଦ୍ଧରେ ଖୋର୍ଦ୍ଧାକୁ ସାହାଯ୍ୟ କରିବା ପ୍ରତିବଦଳରେ ଏହାକୁ ନିଜ ଅଧୀନକୁ ନେଇଥିଲେ । କର୍ଣ୍ଣେଲ୍ ହାରକୋର୍ଟ ଖୋର୍ଦ୍ଧା ରାଜାଙ୍କ ପାଖକୁ ଏକ ପ୍ରସ୍ତାବ ପଠାଇଲେ ଯେ ଖୋର୍ଦ୍ଧା ଦେଇ ଇଂରେଜମାନଙ୍କ ସୈନ୍ୟ ଯିବା ପାଇଁ ଓ ବାଣିଜ୍ୟ ପଥ ପାଇଁ ଅନୁମତି ଦେଲେ ସେମାନେ ଏହି ଚାରି ପ୍ରଗଣା ଖୋର୍ଦ୍ଧାକୁ ଫେରାଇ ଦେବା ସହିତ ଏକ ଲକ୍ଷ ଟଙ୍କା ଓ ପୁରୀ ଜଗନ୍ନାଥ ମନ୍ଦିରର ପରିଚାଳନା ଦାୟିତ୍ୱ ଦେବେ । ଖୋର୍ଦ୍ଧାର ହିତ ପାଇଁ ଜୟୀ ରାଜଗୁରୁ ଏହି ପ୍ରସ୍ତାବରେ ରାଜି ହେଲେ । ଇଂରେଜମାନେ ପ୍ରଥମ ପଦକ୍ଷେପ ସ୍ୱରୂପ ୧୦,୦୦୦ ଟଙ୍କା ଦେଲେ, ମାତ୍ର ଚାରି ପ୍ରଗଣା ଫେରାଇବାକୁ ମନା କଲେ ଏବଂ ଗୋଟିଏ ନୂଆ ରାଜିନାମାରେ ଦସ୍ତଖତ କରିବାକୁ କହିଲେ, ଯେଉଁଥିରେ ରାଜ୍ୟର ଶାସନ ଉପରେ ଇଂରେଜମାନଙ୍କ କର୍ତ୍ତୃତ୍ୱ ରହିବାର ବ୍ୟବସ୍ଥା ଥିଲା । ଜୟୀ ରାଜଗୁରୁଙ୍କ ପ୍ରବଳ ବିରୋଧ ଯୋଗୁଁ ଏହା ସଫଳ ହେଲାନାହିଁ । ଏଣୁ ସେ ଇଂରେଜମାନଙ୍କ କୋପ ଦୃଷ୍ଟିରେ ପଡ଼ିଲେ ଏବଂ ତାଙ୍କୁ ଖୋର୍ଦ୍ଧା ଦରବାରରୁ ବାହାର କରିବା ପାଇଁ ଇଂରେଜମାନେ ଚକ୍ରାନ୍ତ କଲେ । ସେମାନେ ରାଜାଙ୍କୁ ୫୦,୦୦୦ ଟଙ୍କା ଲାଞ୍ଚ ଯାଚି ରାଜଗୁରୁଙ୍କୁ ବାହାର କରିବା ପାଇଁ ଚେଷ୍ଟା କଲେ, ମାତ୍ର ଏଥିରେ ସଫଳ ହେଲେ ନାହିଁ ।

ଇତି ମଧ୍ୟରେ ଜୟୀ ରାଜଗୁରୁ ଦୁଇ ହଜାର ସୈନିକ ନେଇ ଇଂରେଜମାନଙ୍କଠାରୁ ଅବଶିଷ୍ଟ ଅର୍ଥ ଆଣିବା ପାଇଁ କଟକ ଗଲେ । ସେ ସେମାନଙ୍କଠାରୁ ୪୦,୦୦୦ ଟଙ୍କା ପାଇଲେ ଏବଂ ଏହାକୁ ସୈନିକମାନଙ୍କର ବକେୟା ଦରମା ବାବଦକୁ ଦେଲେ । କିନ୍ତୁ ଚାରି ପ୍ରଗଣା ଆଣିବା ପାଇଁ ସେ ବ୍ୟର୍ଥ ହେଲେ । ଏଥିରେ କ୍ଷୁବ୍ଧ ହୋଇ ସେ ବ୍ରିଟିଶ ବିରୁଦ୍ଧରେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ଅଧିକ ସୈନିକ ନିଯୁକ୍ତି ଦେଇ ସେମାନଙ୍କୁ ପ୍ରଶିକ୍ଷଣ ଦେଲେ । ସେ ନାଗପୁର ଭୋନ୍ସଲେ ରାଜାଙ୍କୁ ସାହାଯ୍ୟ ମାଗିଲେ ଏବଂ ତାଙ୍କଠାରୁ ସାହାଯ୍ୟର ପ୍ରତିଶ୍ରୁତି ପାଇଲେ ।

ଜୟୀ ରାଜଗୁରୁ ନିଜ ରାଜ୍ୟର ପ୍ରଗଣାଗୁଡ଼ିକୁ ଫେରି ପାଇବା ପାଇଁ ଇଂରେଜମାନଙ୍କ ସହ ଯୁଦ୍ଧ କଲେ । କନିକା ଓ କୁଜଙ୍ଗ ରାଜା ଖୋର୍ଦ୍ଧା ରାଜାଙ୍କୁ ସମର୍ଥନ ଦେଲେ । ବିଶେନପୁର, ହରିଶପୁର ଓ ମରିଚପୁର ଜମିଦାର ମଧ୍ୟ ଯୁଦ୍ଧରେ ଖୋର୍ଦ୍ଧା ସପକ୍ଷରେ ଲଢ଼ିଲେ । ଜୟୀ ରାଜଗୁରୁ ପାଇକମାନଙ୍କୁ ନେଇ ବ୍ରିଟିଶ ଅଞ୍ଚଳ ପିପିଲି ଉପରେ ଆକ୍ରମଣ କରି ଏହାକୁ ଅଧିକାର କରିନେଲେ । ଏହାପରେ କର୍ଣ୍ଣେଲ୍ ହାରକୋର୍ଟ ଅଧିକ ସୈନିକ ନେଇ ପାଇକମାନଙ୍କୁ ପରାସ୍ତ କଲେ । ଏହିପରି ୧୮୦୪ ମସିହା ନଭେମ୍ବର ମାସରେ ଖୋର୍ଦ୍ଧା ରାଜ୍ୟ ଇଂରେଜମାନଙ୍କଠାରୁ ପରାସ୍ତ ହେଲା ଏବଂ ଖୋର୍ଦ୍ଧାକୁ ବ୍ରିଟିଶ ଅଞ୍ଚଳରେ ମିଶାଇ ଦିଆଗଲା । କେତେଜଣଙ୍କ ବିଶ୍ୱାସଘାତକତା ଯୋଗୁଁ ଇଂରେଜମାନେ ଜୟୀ ରାଜଗୁରୁଙ୍କୁ ରଣପୁର ଜଙ୍ଗଲରୁ ଧରିଲେ ଏବଂ ତାଙ୍କୁ ନେଇ କଟକରେ ବନ୍ଦୀ କରି ରଖିଲେ ।

ବନ୍ଦୀ ହେବା ପୂର୍ବରୁ ଜୟୀ ରାଜଗୁରୁ କୌଶଳରେ ରାଜା ମୁକୁନ୍ଦଦେବଙ୍କୁ ଖୋର୍ଦ୍ଧାରୁ ନେଇଯାଇ ପୁରୀର ଗଙ୍ଗାମାତା ମଠରେ ନିରାପଦରେ ଲୁଚାଇ ରଖିଥିଲେ । ଦୁର୍ଭାଗ୍ୟବଶତଃ ରାଜା ଭୟଭୀତ ହୋଇ ବାଣପୁରର ଫୌଜଦାର ଫତେ ମହମ୍ମଦଙ୍କୁ ନିଜର ନିରାପତ୍ତା ପାଇଁ ଯୋଗାଯୋଗ କଲେ । କିନ୍ତୁ ଫତେ ମହମ୍ମଦ ବିଶ୍ୱାସ ଘାତକତା କରି ଇଂରେଜମାନଙ୍କୁ ତାଙ୍କ ସୂଚନା ଦେଇଦେଲେ । ଫଳରେ ଇଂରେଜମାନେ ୧୮୦୫ ମସିହା

ଜାନୁଆରୀ ୩ ତାରିଖରେ ରାଜାଙ୍କୁ ବନ୍ଦୀକରି କଟକର ବାରବାଟୀ ଦୁର୍ଗରେ ରଖିଲେ । ଖୋର୍ଦ୍ଧା ପତନ ସହ ଇଂରେଜମାନେ ସମଗ୍ର ଓଡ଼ିଶା ଅଧିକାର କଲେ ।

ଏହାପରେ ରାଜା ମୁକୁନ୍ଦଦେବ ଓ ଜୟୀ ରାଜଗୁରୁଙ୍କୁ ମିଦିନାପୁର ଜେଲ୍‌କୁ ସ୍ଥାନାନ୍ତର କରାଗଲା । ସେଠାରୁ ରାଜା ବ୍ରିଟିଶ ଗଭର୍ଣ୍ଣର ଜେନେରାଲ୍‌ଙ୍କୁ ଗୋଟିଏ ଦରଖାସ୍ତ ଲେଖି ଜଣାଇଲେ ଯେ, ''ରାଜଗୁରୁଙ୍କ ତତ୍ତ୍ୱାବଧାନରେ ରାଜ୍ୟ ଶାସନ ଚାଲୁଥିଲା ଏବଂ ତାଙ୍କର କିଛି କ୍ଷମତା ନ ଥିଲା । ତାଙ୍କୁ ଖୋର୍ଦ୍ଧାରେ ଏକ ପ୍ରକାର ଆବଦ୍ଧ କରି ରଖାଯାଇଥିଲା ଏବଂ ବ୍ରିଟିଶ ବିରୁଦ୍ଧରେ ରାଜଗୁରୁ ପାଇକମାନଙ୍କୁ ଉସୁକାଉଥିଲେ ।'' ଏହାପରେ ବ୍ରିଟିଶ ସରକାର ମୁକୁନ୍ଦଦେବଙ୍କୁ ଜେଲ୍‌ରୁ ମୁକ୍ତ କରିଦେଲେ । କିନ୍ତୁ ତାଙ୍କୁ ଖୋର୍ଦ୍ଧା ଯିବାକୁ ଦିଆଗଲା ନାହିଁ । ତାଙ୍କୁ ପୁରୀରେ ରଖାଗଲା । ସେଠାରେ ତାଙ୍କ ପାଇଁ ଗୋଟିଏ ରାଜପ୍ରାସାଦ ନିର୍ମିତ ହେଲା । ତାଙ୍କୁ ବାର୍ଷିକ ଏକ ଲକ୍ଷ ଟଙ୍କା ପେନ୍‌ସନ୍ ଦିଆଗଲା ଏବଂ ଜଗନ୍ନାଥ ମନ୍ଦିରର ଅଧକ୍ଷ ପଦରେ ନିଯୁକ୍ତ କରାଗଲା । ଏହାପରେ ତାଙ୍କୁ ଖୋର୍ଦ୍ଧା ରାଜା ବଦଳରେ ପୁରୀ ରାଜା କୁହାଗଲା ।

ଜୟୀ ରାଜଗୁରୁ ବନ୍ଦୀ ହେବାପରେ ପାଇକ ବିଦ୍ରୋହ ବନ୍ଦ ହୋଇଗଲା । ପାଇକମାନେ ଆତ୍ମସମର୍ପଣ କଲେ । ଖୋର୍ଦ୍ଧାରୁ ସାହାଯ୍ୟ କରିଥିବା କନିକା ରାଜା ବଳଭଦ୍ର ଭଞ୍ଜଙ୍କୁ ବନ୍ଦୀ କରି ମିଦିନାପୁର ଜେଲ୍‌ରେ ରଖାଗଲା ଏବଂ କୁଜଙ୍ଗ ରାଜା ଚନ୍ଦ୍ରଧ୍ୱଜ ଷେଣ୍ଢଙ୍କୁ ଗାଦିଚ୍ୟୁତ କରି ତାଙ୍କ ବଡ଼ ଭାଇ ମଧୁସୂଦନ ଷେଣ୍ଢଙ୍କୁ ନୂଆ ରାଜା କରାଗଲା ।

ମିଦିନାପୁରରେ ଜୟୀ ରାଜଗୁରୁଙ୍କ ବିଚାର ଚାଲିଲା । ସେ କଚେରୀରେ ସ୍ୱୀକାର କଲେ ଯେ ରାଜା ଜଣେ ବାଳକ ଥିବାରୁ ସେ ରାଜ୍ୟ ଶାସନ ପରିଚାଳନା କରୁଥିଲେ ଏବଂ ଯାହାସବୁ ଘଟି ଯାଇଛି, ତାହା ତାଙ୍କ ନିର୍ଦ୍ଦେଶରେ ହୋଇଛି । ପୁନଶ୍ଚ ସେ ସାହସ ଓ ଦୃଢ଼ତାର ସହ କହିଲେ ଯେ ଖୋର୍ଦ୍ଧା ମୋଗଲ, ମରାଠା କିମ୍ବା ଇଂରେଜମାନଙ୍କ ନୁହେଁ, ଏହା ହେଉଛି ସେମାନଙ୍କର ଏବଂ ଏହାର ସ୍ୱାଧୀନତା ଓ ଅଖଣ୍ଡତା ରକ୍ଷା କରିବା ପାଇଁ ବିଦ୍ରୋହ କରିବା ହେଉଛି ତାଙ୍କର ନୈତିକ କର୍ତ୍ତବ୍ୟ । ସେ ନିର୍ଭୟରେ କହିଲେ ଯେ ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ କରି ସେ ଅନୁତପ୍ତ ନୁହନ୍ତି କିମ୍ବା ନିଜକୁ ଦୋଷୀ ମନେକରୁ ନାହାନ୍ତି ବରଂ ଦେଶମାତୃକା ପାଇଁ ସଂଗ୍ରାମ କରିଥିବାରୁ ନିଜକୁ ଗର୍ବ ଅନୁଭବ କରୁଛନ୍ତି । ଏଥିରେ ବିଚାର ହୋଇ ତାଙ୍କୁ ୧୮୦୬ ମସିହା ଡିସେମ୍ବର ମାସ ୬ ତାରିଖରେ ମିଦିନାପୁରର ବାଘିତୋଟାରେ ଫାଶୀ ଦିଆଗଲା । ମାତୃଭୂମି ପାଇଁ ନିଜ ଜୀବନ ବଳି ଦେଇ ସେ ଅମର ଶହୀଦ ହୋଇଗଲେ ।

ଓଡ଼ିଆ ପାଇକମାନେ ପାରମ୍ପରିକ ଖଣ୍ଡା, ତରବାରିରେ ଯୁଦ୍ଧ କରୁଥିବା ବେଳେ ଇଂରେଜ ସୈନ୍ୟମାନେ ଗୋଳାବାରୁଦ ବ୍ୟବହାର କରୁଥିଲେ । ହେଲେ ଜୟୀ ରାଜଗୁରୁ ସାହସର ସହିତ ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେ । ଇତିହାସ ପୃଷ୍ଠାରେ ଜୟୀ ରାଜଗୁରୁ ଓ ପାଇକ ବିଦ୍ରୋହ ଉପଯୁକ୍ତ ସ୍ଥାନ ପାଇବା ଉଚିତ ।

୭୦, ଲକ୍ଷ୍ମୀ ବିହାର, ଫେଜ୍–୧
ଭୁବନେଶ୍ୱର–୭୫୧୦୧୮



# ଅନନ୍ୟା କୁନ୍ତଳା କୁମାରୀ

ଡକ୍ଟର ସର୍ବେଶ୍ୱର ସେଣ

ପ୍ରାକ୍ ସ୍ୱାଧୀନତା କାଳ । ନୀତି-ନିୟମ-ନିଗଡ଼ ବନ୍ଧା ସମାଜ । ନାରୀମାନଙ୍କ ସ୍ୱାଧୀନତା ପ୍ରାୟ ନଥିଲା । ନାନା ପ୍ରକାର ସାମାଜିକ ବାଧା ବନ୍ଧନ ଆଉ କଟକଣା ।



ଏହା ସତ୍ତ୍ୱେ ବହୁ ନାରୀ ଏରୁଣ୍ଡି ବନ୍ଧ ଡେଇଁଲେ । ଅମ୍ଳାନ କୀର୍ତ୍ତି ରଚିଲେ । ସେମାନଙ୍କ ମଧ୍ୟରେ ଉତ୍କଳ ଭାରତୀ କୁନ୍ତଳା କୁମାରୀ ସାବତ ଥିଲେ ଅନ୍ୟତମ । ପ୍ରତ୍ୟକ୍ଷ ନ ହେଲେ ବି ପରୋକ୍ଷରେ ମୁକ୍ତିସଂଗ୍ରାମକୁ ପ୍ରୋତ୍ସାହନ ଯୋଗାଇଲେ । ସେ ମଧ୍ୟ ସୃଷ୍ଟି କରିଛନ୍ତି ରାଶି ରାଶି କାଳଜୟୀ ଜାତୀୟତାବାଦୀ କବିତା । ସେ ଜଣେ ବରେଣ୍ୟା, ପ୍ରାତଃ ସ୍ମରଣୀୟା, ବିଦୁଷୀ, ମହିୟସୀ ମହିଳା । ତାଙ୍କ ଦେଶ ଭକ୍ତି, ଜାତି-ପ୍ରୀତି, ସଂଗ୍ରାମୀ, ତ୍ୟାଗପୂତ ଜୀବନ ଅତୀବ ଆକର୍ଷଣୀୟ । ତା'ଠାରୁ ବହୁଗୁଣରେ ମହନୀୟ ତାଙ୍କର ସାହିତ୍ୟ ସୃଷ୍ଟି । ଜାତି-ପ୍ରେମ-ବହ୍ନି ପ୍ରଜ୍ୱଳିତ କରିବାରେ ତାଙ୍କ ଲେଖନୀ ଥିଲା ଚଳଚଞ୍ଚଳ । ଅତୀନ୍ଦ୍ରିୟ, ରହସ୍ୟବାଦୀ ଚେତନାକୁ ସାହିତ୍ୟରେ ପରିସ୍ଫୁଟ କରିଛନ୍ତି କୁନ୍ତଳା, ହୋଇପାରିଛନ୍ତି ଏକ ଶୁଦ୍ଧ-ପୂତ-ଜୀବନ-ମୁକ୍ତି ପ୍ରୟାସୀ । ସ୍ୱାଧୀନତାର ପୂର୍ବ କାଳ । ଅନ୍ଧ ସମାଜରେ ଅନ୍ଧରାଜତ୍ୱ, ଏହା ବିରୋଧରେ ସେ ସ୍ୱରୋତ୍ତଳନ କଲେ । ସମାଜ ସଂସ୍କାର ପାଇଁ ବଜ୍ର ଗମ୍ଭୀର ଆହ୍ୱାନ ଦେଲେ । କୁସଂସ୍କାର ଗ୍ରସ୍ତ ଜନଜୀବନ, ନାରୀମାନଙ୍କ ଦୟନୀୟ ସ୍ଥିତି, ସେମାନଙ୍କୁ ବନ୍ଧନ ମୁକ୍ତ କରିବାକୁ କୁନ୍ତଳା ଅଣ୍ଟା ଭିଡ଼ିଲେ । ସମାଜ ସଂସ୍କାର ପାଇଁ ବ୍ରତୀ ହେଲେ । କୁନ୍ତଳା ବହୁମୁଖୀ ପ୍ରତିଭାର ଅଧିକାରିଣୀ । ଯେ ପର୍ଯ୍ୟନ୍ତ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ ନକ୍ଷତ୍ର ଥିବେ, ସେ ପର୍ଯ୍ୟନ୍ତ ଏହି ଯଶସ୍ୱିନୀ ମହିଳାଙ୍କ ନାମ ଅମ୍ଳାନ ରହିବ । ସେ କେନ୍ଦ୍ରାପଡ଼ାର ବୋହୂ । ସେଥିପାଇଁ ବିଦୁଷୀଙ୍କ ଯୋଗୁଁ କେନ୍ଦ୍ରାପଡ଼ା ବିଶେଷ ଭାବେ ଧନ୍ୟ ।

କୁନ୍ତଳାଙ୍କ ଜୀବନ ଘଟଣାବହୁଳ । ବାଲ୍ୟ, କୈଶୋର, ଯୌବନ, କେବେ ରୋମାଞ୍ଚକର ତ କେବେ ଦୁର୍ବିସହ । ଏମିତି ଉତ୍‌ଥାନ ପତନ ଦେଇ ସେ ସଫଳତାର ଶୀର୍ଷରେ ପହଞ୍ଚିଛନ୍ତି । ତାଙ୍କ ଜୀବନକାଳ ସ୍ୱଳ୍ପ, ଖୁବ୍ ସୀମିତ । ତଥାପି ଆପଣାର କର୍ମମୟ ଜୀବନକୁ ସେ ଚିର ବିକଶିତ, ମହକିତ କରିଛନ୍ତି । ଲେଖିକା ଭାବେ ସେ ଅନନ୍ୟା, ଅସାଧାରଣ ନିଶ୍ଚୟ!

### ବାଲ୍ୟ ଜୀବନ

ପ୍ରାକ୍ ସ୍ୱାଧୀନତା କାଳ, କଠୋର ସାମାଜିକ ବିଧି ବିଧାନ, ବ୍ୟବସ୍ଥା ମଧ୍ୟରେ ପେଷିହେଲେ କୁନ୍ତଳାଙ୍କ ପୂର୍ବପୁରୁଷ । ପୁରୀ ଜିଲ୍ଲା ପିପିଲି ଥାନା ଅନ୍ତର୍ଗତ ଦାଣ୍ଡମୁକୁନ୍ଦପୁର, ସେଇ ଗାଁ ତାଙ୍କ ସାତପୁରୁଷର ଭିଟାମାଟି । ପରିବାରଟିରେ ସୁଖଶାନ୍ତି ସଦା ସଞ୍ଚରି ଥିଲା କାହିଁ କେତେକାଳରୁ । ଆସିଲା ୧୮୬୬ ମସିହାର ନ'ଙ୍କ ଦୁର୍ଭିକ୍ଷ । ପରିବାରଟି ଜୀବନ ବଞ୍ଚାଇବା ପାଇଁ ଅନ୍ନଛତ୍ର ଖାଇଲେ । ହେଇଗଲେ ତଥାକଥିତ ଛତରଖିଆ । ଶ୍ୟାମରତନଙ୍କ ପରିବାରକୁ ହିନ୍ଦୁ ସମାଜ ଆଉ ଶ୍ରଦ୍ଧାରେ ଆପଣେଇଲାନି । ଉଦାରବାଦୀ ଖ୍ରୀଷ୍ଟିୟାନମାନେ ଏଇମାନଙ୍କୁ ସ୍ୱଧର୍ମକୁ ନେଇଗଲେ । ନୈଷ୍ଠିକ ବ୍ରାହ୍ମଣ ପରିବାରଟି ଶେଷରେ ଖ୍ରୀଷ୍ଟିୟାନ ହେଇଗଲେ, କୁନ୍ତଳାଙ୍କ ବାପା ଦାନିଏଲ୍ ସାବତ୍, ମାତା ମନିକା ଡ଼ାନିଏଲ୍, ଆଈମା ସାଧବୀ ।

୧୯୦୦ ମସିହା ଫେବୃଆରୀ ୮ତାରିଖ । ଦାନିଏଲ୍ ପରିବାରରେ ଆନନ୍ଦ ଖେଳିଗଲା । ଦାନିଏଲ ଦମ୍ପତିଙ୍କ କୋଳକୁ ଆସିଲା ଶିଶୁକନ୍ୟାଟିଏ । ମୁଣ୍ଡରେ ଘନକୃଷ୍ଣ ଚୂର୍ଣ୍ଣକୁନ୍ତଳ । ଶିଶୁଟିର ନାମ ରଖାଗଲା କୁନ୍ତଳା । ତାଙ୍କ ଅନ୍ତୁଡ଼ିଶାଳ ଓଡ଼ିଶାର ବିଛିନ୍ନାଞ୍ଚଳ ଗଡ଼ଜାତ 'ବସ୍ତର'ରେ । ପିତା ଡାନିଏଲ୍ ଏଲ୍.ଏମ୍.ପି ଡାକ୍ତର । କୁନ୍ତଳାଙ୍କ ଜନ୍ମର ଏକ ବର୍ଷ ପୂରିନି, ଡାନିଏଲ୍ ପାଇଗଲେ ଚାକିରି ସୁଦୂର ବ୍ରହ୍ମଦେଶ, ବର୍ମାରେ । କୁନ୍ତଳାଙ୍କ ବାଲ୍ୟକାଳ ବର୍ମାରେ କଟିଥିଲା । ବର୍ମାରେ ତିଆରି ହେଲା ତାଙ୍କ ଜନ୍ମ କୁଣ୍ଡଳୀ, ''କ୍ଷେତ୍ରସିଂହାସନଯୋଗ'' । ଏଇ କୁଣ୍ଡଳୀର ଅଧିକାରୀ ଅନେକ ଯଶସ୍ୱୀ ଯଶସ୍ୱିନୀ । କୁନ୍ତଳା ଏଥିରୁ ବାଦ୍ ପଡ଼ି ନ ଥିଲେ । ସୌରମାନ ମକର ମାସରେ ତାଙ୍କର ଜନ୍ମ । ଏହି ମାସରେ ଜନ୍ମ ଗ୍ରହଣ କରିଥିଲେ ବ୍ୟାସକବି ଫକୀର ମୋହନ ସେନାପତି, ସ୍ୱାମୀ ବିବେକାନନ୍ଦ, କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ । ସେମାନେ ନିଜସ୍ୱ କୀର୍ତ୍ତି ଓ କୃତିତ୍ୱ ପାଇଁ ବହୁଜନବିଦିତ । ସେହିପରି କୁନ୍ତଳାଙ୍କର ଯଶ–କୀର୍ତ୍ତି–ଖ୍ୟାତି ମଧ୍ୟ କିଛି କମ୍ ନଥିଲା ।

### ଜୀବନ ଜୀବିକା

କୁନ୍ତଳାଙ୍କ ବାଲ୍ୟକାଳ କଟିଥିଲା ସୁଦୂର ବର୍ମାରେ । ଶୈଶବରୁ ସେ ଓଡ଼ିଆ ଭାଷା ସହିତ ଓତପ୍ରୋତ ଭାବେ ସଂଶ୍ଳିଷ୍ଟ ହୋଇ ପାରିନଥିଲେ । କିନ୍ତୁ ଉତ୍ତର ଜୀବନରେ ଓଡ଼ିଆ ଭାଷା ସାହିତ୍ୟକୁ ବଳିଷ୍ଠ ରୂପ ଦେବାରେ ସକ୍ଷମ ହୋଇଛନ୍ତି । ବାଲ୍ୟକାଳରେ ସେ ମା'ଙ୍କଠାରୁ ହିନ୍ଦୀ, ପିତାଙ୍କଠାରୁ ଇଂରାଜୀ ଶିକ୍ଷା କଲେ । ୧୪ ବର୍ଷ ବର୍ମାରେ ତାଙ୍କର ସମୟ କଟିଲା । ସେଠାକାର ସ୍ୱାଧୀନ ଚଳଣି, ଜାତୀୟତାବାଦୀ ଚିନ୍ତାଧାରା ତାଙ୍କୁ ବହୁ ଭାବରେ ପ୍ରଭାବିତ କରିଥିଲା । ସେ ବାଲ୍ୟକାଳରୁ ଥିଲେ ସ୍ୱାଧୀନଚେତା, ସ୍ପଷ୍ଟବାଦିନୀ, ନିର୍ଭୀକା । ଇତିମଧ୍ୟରେ ପିତା ଦ୍ୱିତୀୟ ପତ୍ନୀ ଗ୍ରହଣ କଲେ । କୁନ୍ତଳାଙ୍କୁ ଓଡ଼ିଶା ପଠାଇଦେଲେ । କୁନ୍ତଳା କଟକରେ ରହି ଅଧ୍ୟୟନ କଲେ । ଦୃଢ଼ପ୍ରତିଜ୍ଞ ମନ, ବହି ଯାଉଥିବା ନଈକୁ କେହି ଅଟକାଇ ପାରେନି । ପିତାମାତାଙ୍କ ସ୍ନେହରୁ ବଞ୍ଚିତା କୁନ୍ତଳା ନୀତି ଆଦର୍ଶରୁ କେବେ ବିଚ୍ୟୁତ ହୋଇ ନଥିଲେ ।

କୁନ୍ତଳାଙ୍କ ବିଦ୍ୟା ଆହରଣ ପ୍ରତି ଥିଲା ଅହେତୁକ ମୋହ । ୧୯୧୪ ମସିହା । ରେଭେନ୍ସା ବାଳିକା ବିଦ୍ୟାଳୟ ଅଷ୍ଟମ ଶ୍ରେଣୀରେ ତାଙ୍କ ନାମ ଲେଖାହେଲା । ତାଙ୍କ ଅଧ୍ୟୟନ ନିଷ୍ଠା କଲେଜ ପ୍ରିନ୍ସିପାଲ୍‌ଙ୍କ ଦୃଷ୍ଟି ଆକର୍ଷଣ କଲା । କୁନ୍ତଳାଙ୍କୁ ବିଲାତ ପଠାଇବା ପାଇଁ ସେ ପ୍ରସ୍ତାବ ଦେଲେ । ଅବଶ୍ୟ ଏହାକୁ କୁନ୍ତଳା ଗ୍ରହଣ କରି ନ ଥିଲେ ।

୧୯୧୮ମସିହା । କୁନ୍ତଳା କଟକ ମେଡ଼ିକାଲ ସ୍କୁଲରେ ନାମ ଲେଖାଇଲେ । ସେତେବେଳେ ବିହାର– ଓଡ଼ିଶା ସରକାରଙ୍କ ଦ୍ୱାରା ପରିଚାଳିତ ହେଉଥିଲା ଏଲ୍.ଏମ୍.ପି ବୋର୍ଡ ପରୀକ୍ଷା । ଏହି ପରୀକ୍ଷା (୧୯୨୧)ରେ ସେ କୃତିତ୍ୱର ସହ ପ୍ରଥମ ସ୍ଥାନ ଅଧିକାର କଲେ । ଶିକ୍ଷା କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ପାଇଁ ତାଙ୍କୁ ସ୍ୱର୍ଣ୍ଣ, ରୌପ୍ୟ – ଏମିତି ୧୬ ଗୋଟି ପଦକ ମିଳିଥିଲା । ଏଲ୍.ଏମ୍.ପି ଡ଼ାକ୍ତର ଭାବେ ଓଡ଼ିଶା ରେଡ଼କ୍ରସ ତତ୍ତ୍ୱାବଧାରିକା ପଦବୀରେ ନିଯୁକ୍ତି ପାଇଲେ । ୧୯୨୭ ମସିହାରେ ସ୍ୱ ଇଚ୍ଛାରେ ଏହି ସରକାରୀ ପଦବୀରୁ ଇସ୍ତଫା ଦେଲେ । ତା'ପରେ ଦିଲ୍ଲୀ

ଚାଲିଯାଇଥିଲେ । ସେଠାରେ ସ୍ୱାଧୀନଭାବେ ଡାକ୍ତରୀ ସେବାକାର୍ଯ୍ୟ ଆରମ୍ଭ କଲେ । ଦିଲ୍ଲୀ ରହଣି କାଳରେ ଘଟଣାଟିଏ ଘଟିଲା, ତାହା ତାଙ୍କ ଜୀବନର ଗତିପଥକୁ କଣ୍ଟକିତ କଲା । ଗୋଟେ ମୁହୂର୍ତ୍ତର ନିଷ୍ପତ୍ତି ତାଙ୍କ ବଞ୍ଚିବାକୁ ଦୁର୍ବିସହ କରିଦେଲା ।

ଜୀବନରେ ଏମିତି ମୁହୂର୍ତ୍ତଟିଏ ଆସେ, ଯାହା ତାଙ୍କ ତମାମ ଜୀବନର ଖାତା ଖତିଆନକୁ ବଦଳାଇ ଦିଏ ଏବଂ ଅଲିଭା ଓ ଅଭୁଲା ହୋଇ ରହିଯାଏ । କୁନ୍ତଳାଙ୍କ ଗୁରୁ ଡକ୍ଟର କୈଳାସ ଚନ୍ଦ୍ର ରାୟ । ଉଭୟଙ୍କ ମଧ୍ୟରେ ସୃଷ୍ଟି ହେଲା ନିବିଡତା । କ୍ରମେ ସେ ନିବିଡତାରେ ଭଙ୍ଗା ପଡିଲା । ଭାଙ୍ଗିପଡ଼ିଲେ କୁନ୍ତଳା । ଶାଶ୍ୱତ ପ୍ରେମ ତାଙ୍କୁ କରିଦେଲା କବିଟିଏ । ପ୍ରେମିକଟି ପାଇଁ ଲେଖିଲେ ଅନେକ ପ୍ରେମ ଗୀତିକା । ତାହା ଥିଲା ରକ୍ତମାଂସଧାରୀ ପ୍ରେମିକଙ୍କ ପାଇଁ ପ୍ରୀତି ଉପହାର । ଏଥିରେ ବିଭୁପ୍ରେମକୁ ସୂଚାଇଲେ । ଦେହ ମଧ୍ୟରେ ଦେହାତୀତ ଭାବନା ତାଙ୍କ କବିତା ସୃଷ୍ଟିକୁ ରହସ୍ୟମୟ କରିଦେଲା । ତା'ପରେ ଆରମ୍ଭ ହେଲା ଜୀବନର ହଳାହଳ ଦିଗଟି ।

ଦିଲ୍ଲୀ ରହଣି ସମୟରେ କୈଳାସଙ୍କ ନାହିଁ ନଥିବା ନୀରବତା କୁନ୍ତଳାଙ୍କୁ ବିବ୍ରତ କଲା । ଦିନେ ସାକ୍ଷାତ୍ ହେଲା କୃଷ୍ଣ ପ୍ରସାଦ ଓରଫ ବ୍ରହ୍ମଚାରୀଙ୍କ ସହ । ବ୍ରହ୍ମଚାରୀଙ୍କ ଅମାୟିକ ବୈଷ୍ଣବ ସୁଲଭ ହାବଭାବ ତାଙ୍କୁ ପ୍ରଭାବିତ କଲା । ଜୀବନରେ ଆସିଲା ଗୋଟେ ନିର୍ଣ୍ଣାୟକ ମୋଡ । ଭାବପ୍ରବଣତାବଶତଃ ବ୍ରହ୍ମଚାରୀଙ୍କୁ ସେ ବିବାହ କରିବାର ନିଷ୍ପତ୍ତି ଗ୍ରହଣ କଲେ । ବ୍ରାହ୍ମ ସମାଜ ଅନୁମତି ଦେଲା । ଖ୍ରୀଷ୍ଟିୟାନ କୁନ୍ତଳା ବୈଦିକମତେ ବିବାହ କଲେ । ପଛରେ ପଡି ରହିଲା ତାଙ୍କ ପହିଲି ପ୍ରେମର ମଧୁର ସ୍ମାରକୀ । ବିବାହ ବେଦୀରେ ପତି ପରମଗୁରୁ ମନ୍ତ୍ର ଦୀକ୍ଷା ଗ୍ରହଣ କଲେ କୁନ୍ତଳା । ଅତୀତ ପ୍ରେମର ପୂର୍ଣ୍ଣାହୁତି ହେଲା । ଆରମ୍ଭ ହେଲା ଦାମ୍ପତ୍ୟ ଜୀବନରେ ସଂଘର୍ଷ । ଏକପକ୍ଷରେ ଅନିର୍ବାଣ ପ୍ରେମ ଆରପଟେ ବିବାହିତ ଜୀବନର ଜଞ୍ଜାଳ । କେବେ ହସ, କେବେ କାନ୍ଦ– ଏମିତି ଥିଲା କୁନ୍ତଳାଙ୍କ ଜୀବନଚର୍ଯ୍ୟା ।

**କେନ୍ଦ୍ରାପଡ଼ାରେ କୁନ୍ତଳା**

କେନ୍ଦ୍ରାପଡ଼ା ନସଡ଼ିପୁର ନିବାସୀ ବିନୋଦ ଦାସ । ତାଙ୍କ ତୃତୀୟ ପୁତ୍ର ଥିଲେ କୃଷ୍ଣ ପ୍ରସାଦ ଓରଫ୍ ବ୍ରହ୍ମଚାରୀ କୁନ୍ତଳାଙ୍କ ସ୍ୱାମୀ । କୁନ୍ତଳାଙ୍କ ଗର୍ଭରୁ ଜନ୍ମନେଲେ ଉତ୍କଳ କୁମାରୀ, ସବିତା କୁମାରୀ ନାମକ ଦୁଇଟି କନ୍ୟା, ଏକମାତ୍ର ପୁତ୍ର ଜଗମୋହନ । କିନ୍ତୁ ଶିଶୁ ପୁତ୍ର ଜଗମୋହନର ରୂପକାନ୍ତି ଦେଖିପାରିଲେନି, ପ୍ରସୂତି କକ୍ଷରେ ତାଙ୍କର ଇହଲୀଳା ସମ୍ବରଣ ହେଲା । ଚେତା ହରାଇଥିଲେ କୁନ୍ତଳା । ଚେତା ତ ଫେରିଲାନି, ସବୁଦିନ ପାଇଁ ଚାଲିଗଲା । ସେହି ଦୁର୍ଦ୍ଦିନଟି ଥିଲା ୧୯୩୮ ମସିହା ଅଗଷ୍ଟ ମାସ ୨୩ ତାରିଖ । ଶେଷରେ କୁନ୍ତଳାଙ୍କ ୩୮ବର୍ଷ କର୍ମମୟ ଜୀବନର ଅବସାନ ହେଲା । ଆରମ୍ଭ ହେଲା ମହାଯାତ୍ରା ପର୍ବ । ପୁତ୍ର ଜଗମୋହନ ପୋଷ୍ଟମାଷ୍ଟର ଚାକିରି କରି ଏବେ ସଂସାରରୁ ବିଦାୟ ନେଇଛନ୍ତି । ଜଗମୋହନଙ୍କ ପୁତ୍ର ରୁଦ୍ରମୋହନ, ଯତୀନ୍ଦ୍ର ମୋହନ, ହିମାଦ୍ରୀ ମୋହନ, ଚିଦାନନ୍ଦ, ଆଦିତ୍ୟ କନ୍ୟା ପ୍ରୀତିମୟୀ, ଦେବସ୍ମିତା । କୁନ୍ତଳାଙ୍କ ନାତୁଣୀ ଦେବସ୍ମିତା । ତାଙ୍କ ସ୍ୱାମୀ କୁଞ୍ଜ ବିହାରୀ ପରିଡ଼ା, ସଂପ୍ରତି କେନ୍ଦ୍ରାପଡ଼ା ବିଚାରାଳୟରେ ସରକାରୀ ଓକିଲ ଭାବେ କାର୍ଯ୍ୟରତ । ଏଇ ବଂଶଲତାର ଅଧିକାରିଣୀ କୁନ୍ତଳା ।

କୁନ୍ତଳାଙ୍କ ପ୍ରେମ ଜୀବନ, ଦାମ୍ପତ୍ୟ ଜୀବନ ଦୁଇଟି ସମାନ୍ତରାଳ ସରଳରେଖା । ପରସ୍ପର ମିଳିବା ସମ୍ଭବ ନୁହେଁ । ଗୋଟିଏ ପଟେ ପ୍ରେମ, ଏହାର ମହାର୍ଘ ଆକର୍ଷଣ, ଅନ୍ୟପଟେ ସ୍ୱାମୀଙ୍କ ବ୍ୟବସାୟ । ସାହିତ୍ୟ ପ୍ରତି ସେ ବୀତସ୍ପୃହ । କୁନ୍ତଳା ଅସୁଖୀ ହେଲେ । ଛଳ ଛଳ ଜୀବନ ଛନ୍ଦରେ ବିମୋହିତା କୁନ୍ତଳା । ଶେଷରେ ଜୀବନ ଯାତନାର କୁକ୍ଷି ମଧ୍ୟକୁ ଠେଲି ହୋଇଗଲେ । ଶେଷରେ ତାଙ୍କୁ ସୁସାହିତ୍ୟିକାଟିଏ କରିଦେଲା । ଜୀବନର ବେଦନା, ଗ୍ଲାନି, ଅସନ୍ତୋଷ, ସଂଶୟ ସବୁକୁ ଆଦରି ନେଲେ । ସାହିତ୍ୟ ହେଲା ଶେଷ ଜୀବନର ଆଶ୍ରୟ, ଅବଲମ୍ବନ, ବଞ୍ଚିବାର ସାହା ରାହା । ବଖାଣିଲେ କାରୁଣ୍ୟକୁ ''ଗତ ୯ବର୍ଷର ମୋ ଜୀବନର ଗତି ଓ ପ୍ରକୃତି ଯେପରି ଜଟିଳ, ରହସ୍ୟମୟ, ଘୋର ଦୁଃଖମୟ, ଭୀଷଣ ବିଦ୍ରୋହମୟ ଏବଂ ଭୟଙ୍କର

ଅପଘାତମୁଖର । ଶତ ଶତ ବିଭୀଷଣ ଓ ଉତ୍ପୀଡିତପୂର୍ଣ୍ଣ । ସେ ସବୁକଥା ଗୋଟିଏ ହେଲେ କଦାପି ମୁଁ ତୁମକୁ ଲେଖିବି ନାହିଁ । ପୁଣି ଲେଖିଲେ କ'ଣ କରିବି, ସବୁ ସ୍ୱପ୍ନ ମୋର ବିଫଳ ହେଲା । ଦିଲ୍ଲୀରେ ମୋର ସ୍ୱାସ୍ଥ୍ୟ ଭଲ ରହୁ ନାହିଁ । ବ୍ରହ୍ମଚାରୀ ସାହିତ୍ୟିକ ହୋଇଥିଲେ କଥା ନଥିଲା– ପ୍ରଶଂସା ଅବା କରନ୍ତେ । କିନ୍ତୁ ଧାର ଧାରନ୍ତି ନାହିଁ ।'' ଏଇଟି ଥିଲା ପୁତ୍ରପ୍ରତିମ ଚକ୍ରଧର ମହାପାତ୍ରଙ୍କୁ କୁନ୍ତଳାଙ୍କ ପତ୍ର । ଜୀବନସାଥୀ ପରି ସାଥୀଟିଏ ସେ ପାଇନଥିଲେ । ଦୁର୍ବିସହ ବୈବାହିକ ଜୀବନର ଯାତନା ଯନ୍ତ୍ରଣା ଭିତରେ ସେ ଅଣନିଃଶ୍ୱାସ ମାତ୍ର ସାରସ୍ୱତ ସାଧନାରୁ ନିବୃତ୍ତ ହୋଇନାହାନ୍ତି ।

**କବୟିତ୍ରୀ କୁନ୍ତଳା କୁମାରୀ**

କୁନ୍ତଳା ମୁଖ୍ୟତଃ ଜଣେ ରହସ୍ୟବାଦିନୀ କବି । ଭଗବାନଙ୍କ ସହ ମାନବିକ ନିବିଡ଼ ପ୍ରୀତି ତାଙ୍କ କବିତାଗୁଡ଼ିକୁ କଲା ରସୋତ୍ତୀର୍ଣ୍ଣ । ପ୍ରେମ ହିଁ ତାଙ୍କ କବିତାର ପ୍ରାଣ ପ୍ରାଚୁର୍ଯ୍ୟ । ତାଙ୍କ ଆଖିରେ ଜୀବନ, ଜଗତ, ଆତ୍ମା, ପରମାତ୍ମା ସବୁ ପ୍ରେମମୟ । ଏଇ ଚେତନାକୁ ଆପଣେଇ ନେଇଛି 'ଅଞ୍ଜଳି', 'ଆହ୍ୱାନ', 'ଉଚ୍ଛ୍ୱାସ', 'ସ୍ଫୁଲିଙ୍ଗ', 'ଗଡଜାତ କୃଷକ', 'ମଣିକାଞ୍ଚନ', 'ଓଡିଆଙ୍କ କାନ୍ଦଣା' ଆଦି କବିତାଗୁଚ୍ଛ । କବି ସେଇ ରହସ୍ୟମୟଙ୍କ ଉଦ୍ଦେଶ୍ୟରେ ଗାଇଛନ୍ତି ''କିପାଇଁ କିପାଇଁ / ହୃଦୟ ମନ୍ଦିରେ / ସଜାଡିଛି ଫୁଲ ଡାଲା/କା ପାଇଁ କିପାଇଁ ଲୋତକ ସୂତ୍ରରେ/ ରଚିଅଛି ପ୍ରେମଲୀଳା'' (କବିତା କା ପାଇଁ) । ଏଥିରେ ପ୍ରେମିକ ତଥା ସ୍ରଷ୍ଟାଙ୍କ ପ୍ରତି ରହିଛି ଗଭୀର ଅନୁରକ୍ତି, ସମ୍ପୂର୍ଣ୍ଣ ସମର୍ପଣ ଭାବ ।

ଆଶା ନିରାଶାର ଛାଇ ଅନ୍ଧକାର । ଏହାରି ମଧ୍ୟରେ କବି ସତ୍ୟ, ସନାତନ, ଶିବ, ସୁନ୍ଦର, ଅରୁଣିମାର ଦ୍ୟୁତି ଖୋଜି ଚାଲିଛନ୍ତି । ଜୀବନର ସମସ୍ତ ବିଷାଦ, ଅଶାନ୍ତି ସତ୍ତ୍ୱେ ଆଶାର ଆଲୋକ ଦେଖେଇଛନ୍ତି । ଜୀବନ ମରୁରେ ମରୁଦ୍ୟାନର ସନ୍ଧାନ ପାଇଛନ୍ତି – ''ଚିର ମାଘ ନଥିବଟି/ ଏ ପୋଡ଼ା ଜୀବନେ/ଆସିବ ଫଗୁଣ ନିଶା ଦକ୍ଷିଣା ପବନେ ।''– ଏଠାରେ କବି ଆଶାବାଦିନୀ ।

'ଉଚ୍ଛ୍ୱାସ' ଏକ କବିତା ସଂକଳନ । ଏଥିରେ ସ୍ଥାନିତ ଶେଫାଳି ପ୍ରତି, ଚନ୍ଦ୍ର ପ୍ରତି, କାମିନୀ ପ୍ରତି, ସହକାର ପ୍ରତି କବିତାଗୁଡିକ ଆତ୍ମା ପରମାତ୍ମାଙ୍କ ନିଗୂଢ ସମ୍ପର୍କକୁ କବି ଦେଖାଇ ଦେଇଛନ୍ତି । ତନ୍ମଧ୍ୟରୁ 'ଶେଫାଳି ପ୍ରତି' ବିଭୁ–ଭାବନା–ଭାବିତ ମନଛୁଆଁ କବିତାଟିଏ । ରଜନୀରାଣୀ ଗଭା ସଜାଇ ଦିଏ ଶେଫାଳି । ଚୌଦିଗକୁ ମହକିତ କରେ ଝଡି ପଡ଼େ ସକାଳେ । କ୍ଷଣଜନ୍ମା ଶେଫାଳି । ତା'ରି ମାଧ୍ୟମରେ କବି କ୍ଷୁଦ୍ର ମଧ୍ୟରେ ବିରାଟର ସନ୍ଧାନ ପାଇଛନ୍ତି । ଶେଫାଳି ଫୁଲ ଉଦ୍ଦେଶ୍ୟରେ ଗାଇଛନ୍ତି – ''ତୋହପରି କ୍ଷୁଦ୍ର ମୁହିଁ/ ତୋହପରି କ୍ଷଣିକ/ ହସେ ବାସେ ରସେ/ ମାତ୍ର ଫୁଟି ଅଛି ଘଡ଼ିକ /ମାଟିରେ ମିଶିବୁ ତୁହି / ମାଟିରେ ମିଶିବି ମୁହିଁ/ ତଥାପି ମୋ ଆତ୍ମାଫୁଲ/ ନୟିବରେ ମଉଳି/ ତେଣୁ ଆଶା ବହି ଦିନକାଟେ ଗଙ୍ଗଶିଉଳି ।'' ସ୍ରଷ୍ଟା, ସୃଷ୍ଟିର ରହସ୍ୟ ଉନ୍ମୋଚନ କରି କବିଙ୍କ ଲେଖନୀ ନୀରବ ରହିନି । ଦେଶପ୍ରୀତି, ଦେଶାତ୍ମବୋଧ ଚିନ୍ତାଧାରା ସମ୍ବଳିତ ବହୁ କବିତା କୁନ୍ତଳା ରଚନା କରିଛନ୍ତି । 'ଆହ୍ୱାନ' କବିତା ସଂକଳନରେ ସେଗୁଡ଼ିକ ପ୍ରତିଫଳିତ ।

ଆଇନ ଅମାନ୍ୟ ଆନ୍ଦୋଳନ (୧୯୩୦) ଶେଷ ହେଲା । ସାରା ଭାରତବର୍ଷରେ ମୁକ୍ତି ଯୁଦ୍ଧ ତ୍ୱରାନ୍ୱିତ । ଗାନ୍ଧୀ ମହାତ୍ମାଙ୍କ ମୋହନ ମନ୍ତ୍ର, ମୁଗ୍ଧଚକିତ ଭାରତବାସୀ । ଗାନ୍ଧିଜୀ ସତ୍ୟ, ସତ୍ୟାଗ୍ରହ, ଅହିଂସା, ସେବାର ବାର୍ତ୍ତା ବାଣ୍ଟିଲେ । ତ୍ୟାଗପୂତ ଜୀବନ ଉପରେ ଗୁରୁତ୍ୱାରୋପ କଲେ । ଅସ୍ପୃଶ୍ୟତା ନିବାରଣ, ଖଦି, ସୂତାକାଟିବା ଆଦି ନାନା ରଚନାତ୍ମକ କାର୍ଯ୍ୟକ୍ରମ ଚଳାଇଲେ । କେବଳ ପୁରୁଷ ନୁହଁନ୍ତି, ନାରୀମାନେ ମଧ୍ୟ ଆକର୍ଷିତା ହେଲେ । ରମାଦେବୀ, ମାଳତୀ ଦେବୀ, ସରୋଜିନୀ ଦେବୀ, ଜାହ୍ନବୀ ଦେବୀ, ତାଙ୍କପରି ଆହୁରି ଅନେକ ନାରୀ ଏରୁଣ୍ଡି ବନ୍ଧ ଡ଼େଇଁଲେ । ମୁକ୍ତି ସଂଗ୍ରାମରେ ଝାସ ଦେଲେ । ଅନୁରୂପ ଭାବରେ କୁନ୍ତଳାଙ୍କ ଗାନ୍ଧିଭାବ ଭବିତ ପ୍ରାଣ ସତତ ଉଦ୍‌ବୁଦ୍ଧ ହେଲା । ବିଦେଶୀ ଶାସକଙ୍କ ଲୁଣ୍ଠନ, ଶୋଷଣ, ପେଷଣ, ରାଜା ରାଜୁଡାଙ୍କ ଅତ୍ୟାଚାର, ଜମିଦାରଙ୍କ ଅପକର୍ମ – ଏହାରି ବିରୁଦ୍ଧରେ ସେ କଲମ ଚଳାଇଲେ । ଜାତୀୟତାବାଦୀ ସ୍ଫୁଲିଙ୍ଗ

ସୃଷ୍ଟି କଲେ । ତାଙ୍କର 'ଆହ୍ୱାନ' କବିତାଟି ମୁକ୍ତି ଯୁଦ୍ଧର ବଜ୍ର ଗମ୍ଭୀର ନିନାଦ । କାରାଗାରକୁ ତୀର୍ଥକ୍ଷେତ୍ର, ପୋଲିସର ଜୁଲମକୁ ଫୁଲହାରଭାବେ ଗ୍ରହଣ କରିବାକୁ କବି ପ୍ରେରଣା ଦେଲେ, ''ସତ୍ୟାଗ୍ରହ ଆମ କର୍ତ୍ତବ୍ୟ ପରମ / ବନ୍ଦୀଶାଳା ଆମ ଇନ୍ଦ୍ର ନିକେତନ ।'' ମହାଭାରତୀୟ ଅନୁଚିନ୍ତନରେ ଆର୍ଦ୍ର କୁନ୍ତଳା ଶୁଣାଇଛନ୍ତି –

''ଶୁଣରେ ମଣିଷ ଭାଇ/ ଝରି ମରିବାକୁ/ ବୁଡି ମରିବାକୁ ମଣିଷ ଜନମି ନାହିଁ/ ଶୁଣରେ ମଣିଷ ଭାଇ/ ଅମୃତ ଦୀପ୍ତ ତମେ/ମରଣ ତୁମର ନାହିଁ।'' ଗଭୀର ଦେଶପ୍ରେମ, ଈଶ୍ୱରାନୁଚିନ୍ତନ କୁନ୍ତଳାଙ୍କ କବିତାର ଅନ୍ତଃସ୍ୱର । ଏଥିସହିତ ତାଙ୍କର ଲେଖନୀ ଓଡ଼ିଆ ଗଦ୍ୟ ସାହିତ୍ୟକୁ ବିଚିତ୍ରବର୍ଣ୍ଣା କରିଛି । କାଳଜୟୀ ଉପନ୍ୟାସ, ପ୍ରବନ୍ଧ ସାହିତ୍ୟ, ପତ୍ରପତ୍ରିକା ସଂପାଦନା କ୍ଷେତ୍ରରେ ସେ ଅପୂର୍ବ ଦକ୍ଷତାର ଅଧିକାରିଣୀ ।

### ଔପନ୍ୟାସିକା କୁନ୍ତଳା

କୁନ୍ତଳା କୁମାରୀ ମୁଖ୍ୟତଃ କବି, ଗୀତି କବିତା ସମ୍ରାଜ୍ଞୀ । ତାଙ୍କ ଉପନ୍ୟାସଗୁଡ଼ିକ ମଧ୍ୟ ରସୋତ୍ତୀର୍ଣ୍ଣ । ତାଙ୍କର ଉପନ୍ୟାସ ରଚନାକାଳ ୧୦ ବର୍ଷରେ ସୀମିତ । ତାଙ୍କ ଉପନ୍ୟାସ 'ଭ୍ରାନ୍ତି' (୧୯୨୩), 'ଅନ୍ନତୁଣ୍ଡୀ' (୧୯୨୫)। 'କାଳୀବୋହୂ'ର ତୃତୀୟ ଏବଂ 'ପରଶମଣି'ର ଚତୁର୍ଥ ସଂସ୍କରଣ କୁନ୍ତଳାଙ୍କ ବିୟୋଗ ପରେ ପ୍ରକାଶିତ (୧୯୪୦)। ୧୯୨୮ରେ ତାଙ୍କର ଶ୍ରେଷ୍ଠ ଉପନ୍ୟାସ 'ରଘୁ ଅରକ୍ଷିତ' ପ୍ରକାଶିତ । ଏମିତି ମୋଟ୍ ୫ଖଣ୍ଡ ଉପନ୍ୟାସର ସେ ସ୍ରଷ୍ଟା । 'ଚିତ୍ରପଟ୍ଟ' ତାଙ୍କର ଅସଂପୂର୍ଣ୍ଣ ଉପନ୍ୟାସ ।

ଅତ୍ୟାଚାର ନିପୀଡିତା ଓଡ଼ିଆ ନାରୀମାନଙ୍କ ପ୍ରତି କୁନ୍ତଳା ଥିଲେ ସହାନୁଭୂତିଶୀଳା । ଏଇ କଥାଟି ତାଙ୍କ ଉପନ୍ୟାସଗୁଡ଼ିକରେ ଦେଖିବାକୁ ମିଳେ । ସଂସ୍କାର ପ୍ରୟାସ ହିଁ ଏଗୁଡ଼ିକର ମୂଳାଧାର । କୁନ୍ତଳା ମୂକଦର୍ଶିକା ନୁହଁନ୍ତି । ସଂଗ୍ରାମ ତାଙ୍କ ଜୀବନର ବ୍ରତ । ସଂଗ୍ରାମ କଥାଟିକୁ ଅତି ସାର୍ଥକ ଭାବେ ସେ ଉପନ୍ୟାସଗୁଡ଼ିକରେ ଦେଖାଇ ଦେଇଛନ୍ତି । ନାରୀଶିକ୍ଷା, ସ୍ୱାସ୍ଥ୍ୟ, ସେମାନଙ୍କ କର୍ତ୍ତବ୍ୟ, ଦାମ୍ପତ୍ୟ ଜୀବନର ଆଦର୍ଶ ଆଦି ବିଷୟକୁ ଚିତ୍ରଣ କରିଛନ୍ତି । ବାଲ୍ୟ ବିବାହର ବିଷମ ପରିଣତିକୁ ଦେଖାଇ ଦେଇଛନ୍ତି । ବାଲ୍ୟବିଧବା ହୋଇ ନାନା ଦୁଷ୍କର୍ମ କରିବା ସ୍ପୃହଣୀୟ ନୁହେଁ । ଏକ ସୁସ୍ଥ ନୈତିକ ଜୀବନଯାପନ କରିବା ପାଇଁ ସେ ଉପଦେଶ ଦେଇଛନ୍ତି ।

'ରଘୁ ଅରକ୍ଷିତ' କୁନ୍ତଳାଙ୍କ ଶ୍ରେଷ୍ଠ କୃତି । ଭାରତ ମଧ୍ୟରେ ସେ ଉତ୍କଳର ଶ୍ରେଷ୍ଠତାକୁ ଦେଖାଇ ଦେଇଛନ୍ତି, 'ମୁଁ ଓଡ଼ିଶାର ଦଶା ସ୍ୱଚକ୍ଷୁରେ ଦେଖିଛି । ଯେଉଁ ଦେଶରେ ଦିନେ କଳିଙ୍ଗ ସମ୍ରାଟ୍ ଖାରବେଳ ଭାରତ ଛତ୍ରପତି ହୋଇଥିଲେ, ଯେଉଁ ଦେଶରେ ଆଜିସୁଦ୍ଧା ଜଗନ୍ନାଥଦେବଙ୍କର ପବିତ୍ର ବିଗ୍ରହ ସମ୍ମୁଖରେ ପ୍ରତ୍ୟେକ ହିନ୍ଦୁସ୍ଥାନୀ ନତଜାନୁ, ସେ ଦେଶ ହୋଇଛି କୁଲିଙ୍କ ଦେଶ । ସେ ଦେଶର ଲୋକଙ୍କୁ ଅନ୍ୟାନ୍ୟ ଦେଶର ଲୋକେ ନିତାନ୍ତ ତାସଲ୍ୟ କରନ୍ତି।'' ସ୍ୱାଧୀନତା ବିନା ଭାରତର ଅଗଣିତ ନରନାରୀଙ୍କ ସମସ୍ୟା ସମାଧାନ ଅସମ୍ଭବ । ତାଙ୍କ ଉପନ୍ୟାସର ମାନସପୁତ୍ର 'ରଘୁ' ଅଣ୍ଟା ଭିଡ଼ିଛି । ଅରକ୍ଷିତମାନଙ୍କୁ ସାହା ରାହା ଦେବାକୁ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଛି । ଏଥିରୁ କୁନ୍ତଳାଙ୍କ ସ୍ୱଦେଶପ୍ରୀତିର ଗଭୀର ନମୁନା ମିଳେ । ଯଥାର୍ଥରେ କୁନ୍ତଳା ଓଡ଼ିଆ ଉପନ୍ୟାସ ସାହିତ୍ୟର ଅପ୍ରତିଦ୍ୱନ୍ଦ୍ୱୀ 'ବେଗମ୍ ସାହେବା' । ପ୍ରବନ୍ଧ ସାହିତ୍ୟ, ପତ୍ରିକା ସଂପାଦନା କ୍ଷେତ୍ରରେ ତାଙ୍କର ଉଲ୍ଲେଖନୀୟ ଅବଦାନ ରହିଛି ।

### ପ୍ରବନ୍ଧ, ରଚନା, ପତ୍ରିକା ସଂପାଦନା

କୁନ୍ତଳାଙ୍କ ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ଅବଦାନ ଖୁବ୍ କମ୍ । ଏହା ସତ୍ତ୍ୱେ କେଶବଚନ୍ଦ୍ର, ସାମ୍ୟବାଦ ଭାରତୀୟ ଋଷୀୟ, ହିନ୍ଦୀ ସାହିତ୍ୟର କ୍ରମବିକାଶ, ଆଧୁନିକ ଧର୍ମ ସମସ୍ୟା ଆଦି ପ୍ରବନ୍ଧଗୁଡ଼ିକ ଉଚ୍ଚକୋଟୀର । ଏଥିରେ ପ୍ରକାଶିତ ସ୍ୱାଧୀନ ମତ, ଗଭୀର ଅନୁଶୀଳନର କଥା ଶ୍ରଦ୍ଧାଶୀଳ ପାଠକ ପ୍ରାଣକୁ ସ୍ପର୍ଶ କରିଛି । ତାଙ୍କ ଦ୍ୱାରା ଲିଖିତ ଦିଲ୍ଲୀ ଚିଠି ନଂ ୧ରୁ ୮ ପର୍ଯ୍ୟନ୍ତ ସହକାର ପତ୍ରିକାରେ ପ୍ରକାଶ ପାଇଥିଲା । ଉଦ୍‌ବୋଧନ, କଂଗ୍ରେସ ପ୍ରତିଭା ପୂଜା ଅଭାବ, ଦେଶ ମିଶ୍ରଣ ଓ ଜାତି ଗର୍ବ, ଅତୀତର ଇତିହାସ ସ୍ମରଣ ତଥା ଦରିଦ୍ର ଓଡ଼ିଆଙ୍କ ଦୁର୍ଦ୍ଦଶା ଆଦି

ଚିଠିଗୁଡ଼ିକ ଗୋଟିଏ ଗୋଟିଏ ମହାନ୍ ସାମାଜିକ ସନନ୍ଦ, ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଦଲିଲ । ଜନଜୀବନର ଅମୂଲ୍ୟ ସମ୍ପଦ ।

କୁନ୍ତଳାଙ୍କର ହିନ୍ଦୀ ସାହିତ୍ୟରେ ଥିଲା ଅଗାଧ ପାଣ୍ଡିତ୍ୟ । ହିନ୍ଦୀ କବିତାବଳୀ 'ବରମାଳା' ଏକ ଅମ୍ଳାନ କୀର୍ତ୍ତି । ମୌନ ମୌନୀ, ଜୀବନ, ନାରୀ ଭାରତୀ ଆଦି ହିନ୍ଦୀ ପତ୍ରିକାଗୁଡ଼ିକର ସମ୍ପାଦନା ସୁଚାରୁରୂପେ ତୁଲାଇଛନ୍ତି କୁନ୍ତଳା କୁମାରୀ । ଏହ୍ଲାବାଦର ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବ । ଅତିଥି ଭାବରେ ଯୋଗଦେଲେ କୁନ୍ତଳା । ଭାରତୀୟ ଶିକ୍ଷା ସଂସ୍କୃତି ଉପରେ ଓଜସ୍ୱିନୀ ଭାଷଣ ପ୍ରଦାନ କଲେ । ଉଚ୍ଚ ପ୍ରଶଂସିତ ବି ହେଲେ । ଜଣେ ବାଗ୍ମୀ, ବିଦୁଷୀ ମହିଳା - ଏହା ପ୍ରକୃଷ୍ଟ ପରିଚୟ ମିଳିଲା । ଖୁବ୍ କମ୍ ଓଡ଼ିଆଣୀଙ୍କ ଭାଗ୍ୟରେ ଏ ସୁଯୋଗ ଜୁଟିଛି । ସମଗ୍ର ଭାରତବର୍ଷରେ ସେ ନିଜର ଅସୀମ ଜ୍ଞାନ, ସ୍ୱଦେଶ ପ୍ରୀତିର ପରିଚୟ ପ୍ରଦାନ କରିଛନ୍ତି । କେନ୍ଦ୍ରାପଡ଼ାର ଏହି କବି ଅଭୂତପୂର୍ବ ଯଶକୀର୍ତ୍ତିର ଅଧିକାରିଣୀ ।

**ଉତ୍କଳ ଭାରତୀ କୁନ୍ତଳା**

ପ୍ରତିଭା ଚୌଦିଗକୁ ମହକିତ କରେ, ଠିକ୍ ସୁବାସିତ କୁସୁମଟିଏ ପରି । ଅନୁରୂପ ଭାବେ କୁନ୍ତଳାଙ୍କ କଳା-କୁଶଳତା ଅନେକଙ୍କୁ ମୁଗ୍ଧ ଚକିତ କରିଦେଲା । ପୁରୀର ମହିଳାବନ୍ଧୁ ସମିତି ଏକ ଅଗ୍ରଣୀ ସାହିତ୍ୟାନୁଷ୍ଠାନ କୁନ୍ତଳାଙ୍କ ସାମଗ୍ରିକ କୃତି ପାଇଁ ତାଙ୍କୁ 'ଉତ୍କଳ ଭାରତୀ' ଉପାଧିରେ ବିଭୂଷିତ କଲେ (୧୯୨୫, ମାର୍ଚ୍ଚ ୧୦ ତାରିଖ) । ଏହି ସାହିତ୍ୟ ଅନୁଷ୍ଠାନର ପୃଷ୍ଠପୋଷକ ଥିଲେ କେତେକ ଖ୍ୟାତନାମା ମହିଳା । ସେମାନଙ୍କ ମଧ୍ୟରୁ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ କନ୍ୟା ଲାବଣ୍ୟବତୀ ଦେବୀ ଅନ୍ୟତମା । ସେଇଦିନଠାରୁ କୋଟି ଓଡ଼ିଆଙ୍କର ସେ ପରମ ଆଦରଣୀୟା 'ଉତ୍କଳ ଭାରତୀ'।

**ମହିୟସୀ ମହିଳାଙ୍କ ସ୍ମୃତିଚାରଣ**

ଓଡ଼ିଆ ସାହିତ୍ୟର ଅମ୍ଳାନ ପ୍ରତିଭା, ଜାତିଜୀବନର ଜାଗ୍ରତ ପ୍ରହରୀ ତଥା ଦେଶ-ଜାତି-ପ୍ରେମ ବଢ଼େଇତା କୁନ୍ତଳା କୁମାରୀ । ତାଙ୍କ କୃତି ଓ କୃତିତ୍ୱ ଉପରେ ଯଥେଷ୍ଟ ଆଲୋକପାତ ଲୋଡ଼ା । କେନ୍ଦ୍ରାପଡ଼ା ଜିଲ୍ଲା, ବିଶେଷକରି କେନ୍ଦ୍ରପଡ଼ା ମାଟିର ସେ ବୋହୂ । ଲେଖିକା ଶିରୋମଣି, ଅଗ୍ରଗଣ୍ୟା ମଧ୍ୟ । ତାଙ୍କ ସ୍ମୃତିରେ ପ୍ରତିମୂର୍ତ୍ତିଟିଏ କେନ୍ଦ୍ରାପଡ଼ାରେ ସ୍ଥାପିତ ହୋଇଛି । ଏଇଟି ଆମ 'ପ୍ରତିଭା ପୂଜା'ର ପରମ୍ପରାର ଶୁଭସୂଚକ । କୁନ୍ତଳାଙ୍କ ନାତୁଣୀ ଜ୍ୱାଇଁ ଆଡ଼ଭୋକେଟ କୁଞ୍ଜବିହାରୀ ପରିଡ଼ା । ତାଙ୍କ ସାଧୁ ଉଦ୍ୟମରେ ସ୍ମରଣିକାଟିଏ ଗତ କିଛି ବର୍ଷ ହେଲା ପ୍ରକାଶିତ ହୋଇଆସୁଛି । 'କୁନ୍ତଳା କୁମାରୀ' ସମ୍ମାନ ଫି'ସନ ସୁସାହିତ୍ୟିକାମାନଙ୍କୁ ପ୍ରଦାନ କରାଯାଉଛି । ଅନ୍ତତଃ ପକ୍ଷେ ବର୍ଷକୁ ଥରୁଟିଏ କବିଙ୍କ ସ୍ମୃତି ଚାରଣ । ଏଥିରେ କେନ୍ଦ୍ରାପଡ଼ା ଊଣା କରିନି ।

ଅନେକ ଯୋଗଜନ୍ମାଙ୍କ ଜୀବନକାଳ ସ୍ୱଳ୍ପ । ସେମାନଙ୍କ ମଧ୍ୟରେ କୁନ୍ତଳା ଅନ୍ୟତମା । ଅଳ୍ପ ବୟସରେ ଭବତରୁ ଡାଳରୁ ଝଡ଼ିପଡିଲା କୁନ୍ତଳାଙ୍କ ଆତ୍ମାଫୁଲ । ଏହାସତ୍ତ୍ୱେ ଓଡ଼ିଆ ସାହିତ୍ୟକୁ ତାଙ୍କର ଅବଦାନ ଚିରସ୍ମରଣୀୟ । କୁନ୍ତଳା ମୃତ୍ୟୁଞ୍ଜୟୀ । ସତରେ, ''ମୁକ୍ତିର ପତାକା ତଳେ ହେବା ପାଇଁ ଦେଶବାସୀ, ଠୁଳ/ ନିଜ ହାତେ ଗଢିଗଲା, ବାଣୀର ସେ ଅକ୍ଷୟ ଦେଉଳ ।'' ବାଣୀମନ୍ଦିରରେ କୁନ୍ତଳାଙ୍କ କୃତି ଚିର ଉଦ୍‌ଭାସିତ । ଉତ୍କଳୀୟମାନଙ୍କର ସେହି ମହାନ୍ ସାଧିକାଙ୍କୁ ଶତକୋଟି ପ୍ରଣାମ । ମହିୟସୀ କୁନ୍ତଳା । କେବଳ କେନ୍ଦ୍ରାପଡ଼ା ନୁହେଁ, ତାଙ୍କ କୀର୍ତ୍ତି ଚୌଦିଗ ପ୍ରସାରୀ । ଉତ୍କଳ ଭାରତୀ କୁନ୍ତଳା, ସେ ଅନନ୍ୟା, ଚିର ବନ୍ଦନୀୟା ।

ସା/ପୋ- ପୁରୁଷୋତ୍ତମପୁର
ଜି- କେନ୍ଦ୍ରାପଡ଼ା - ୭୫୪୨୨୩



# ମହାଶିବରାତ୍ରି ପାଳନର ତାତ୍ପର୍ଯ୍ୟ

**ଡକ୍ଟର ଗଙ୍ଗୋତ୍ରୀ ଦେବୀ**

ଆମ ଦେଶ ଭାରତରେ ପାଳନ ହେଉଥିବା ପର୍ବଗୁଡ଼ିକ ମଧ୍ୟରେ କୌଣସି ନା କୌଣସି ଆଧ୍ୟାତ୍ମିକ ରହସ୍ୟ ଲୁଚିରହିଥାଏ, ଯାହା ମନୁଷ୍ୟକୁ ସେହି ପରମାତ୍ମାଙ୍କ



ସହିତ ସଂଯୋଗ କରିବାର ଏକ ମାଧ୍ୟମ ରୂପେ ପରିଗଣିତ ହୋଇଥାଏ । ମହାଶିବରାତ୍ରୀ ପର୍ବ ଏହିଭଳି ଏକ ପର୍ବ, ଯାହା ଅନ୍ୟାନ୍ୟ ପର୍ବ ମଧ୍ୟରୁ ଅନ୍ୟତମ ଓ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ଶିବ ଶାଶ୍ୱତ, ସେ ସନାତନ । ମଙ୍ଗଳମୟ, ଜଗତକଲ୍ୟାଣକାରୀ । ଦେବଶ୍ରେଷ୍ଠ ମହାଦେବଙ୍କ ପ୍ରିୟ ଦିନ ମହାଶିବରାତ୍ରୀ । ମହାଶିବରାତ୍ରୀକୁ ନେଇ ବିଭିନ୍ନ ପୌରାଣିକ କାହାଣୀମାନ ରହିଅଛି । ଆମ ହିନ୍ଦୁ ଧର୍ମଗ୍ରନ୍ଥ ଶିବପୁରାଣରେ ବିଘ୍ନେଶ୍ୱର ସଂହିତା ଅନୁଯାୟୀ ଏହିଦିନ ଲୋକନାଥଙ୍କ ନିରାକାର ସ୍ୱରୂପର ପ୍ରତୀକ ଲିଙ୍ଗ ପୂଜନ ସର୍ବପ୍ରଥମେ ଫାଲଗୁନ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ତିଥିରେ ଭଗବାନ ବ୍ରହ୍ମା ଓ ବିଷ୍ଣୁ କରିଥିଲେ । ଏଣୁ ସେହିଦିନଠାରୁ ଏହି ଦିନକୁ ମହାଶିବରାତ୍ରୀ ଭାବରେ ନାମିତ ଓ ପାଳନ କରାଗଲା । କହିବାକୁ ଗଲେ ଏହା ଯୁଗ ପରିବର୍ତ୍ତନ ସନ୍ଧି ସମୟରେ ଆତ୍ମା ପରମାତ୍ମାଙ୍କ ମିଳନର ପର୍ବ । ଭଗବାନ ଶଙ୍କର ପ୍ରଳୟ କାଳରେ ସଂହାରକ ରୂପେ ଦୃଷ୍ଟ ହୋଇଥିଲେ ହେଁ ମହାଶିବରାତ୍ରୀ ଦିନ ସେ ତାଙ୍କର ପ୍ରିୟ ଭକ୍ତଙ୍କର ମନୋବାଞ୍ଛା ପୂରଣକାରୀ, କଲ୍ୟାଣକାରୀ ଭାବରେ ସମସ୍ତ ଦୁଃଖ ବିମୋଚନ କରିଥାଆନ୍ତି ।

ଆମ ଦେଶରେ ଅନ୍ୟାନ୍ୟ ଦେବତାମାନଙ୍କର ମନ୍ଦିର ଯେତେ ପରିମାଣରେ ଦେଖାଯାଏ, ତନ୍ମଧ୍ୟରୁ ସର୍ବାଧିକ ମନ୍ଦିର ଶିବଙ୍କର ହିଁ ଅଛି । ବିଶେଷତଃ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗଙ୍କ ବିଷୟ ଆମେ ଜାଣିଛେ ଯେ, ଭାରତର ବିଭିନ୍ନ ରାଜ୍ୟରେ ଭିନ୍ନ ଭିନ୍ନ ପ୍ରକାରେ ପରମାତ୍ମାଙ୍କର ଉପସ୍ଥିତି, ଯାହା ଶିବଲିଙ୍ଗର ନାମକରଣ ତାତ୍ପର୍ଯ୍ୟକୁ ବୁଝାଇବା ସଙ୍ଗେ ସଙ୍ଗେ ଆତ୍ମମାନଙ୍କୁ ଭଗବତପ୍ରେମୀ ଓ ପ୍ରକୃତିପ୍ରେମୀ କରାଇଥାଏ । ଶିବ ଶଙ୍କର ଅର୍ଥ 'କଲ୍ୟାଣକାରୀ' ଓ ଲିଙ୍ଗ ଶବ୍ଦର ଅର୍ଥ 'ଚିହ୍ନ' । ଯେତେବେଳେ ମନୁଷ୍ୟ ଆତ୍ମିକ ଶକ୍ତିସମ୍ପନ୍ନ ହୋଇଯାଏ, ସେତେବେଳେ ନିଜର ତୃତୀୟ ନେତ୍ର ଦ୍ୱାରା ଅର୍ଥାତ୍ ଆତ୍ମଦୃଷ୍ଟି ବଳରେ ପରମାତ୍ମାଙ୍କର ବାସ୍ତବିକ ସ୍ୱରୂପକୁ ଜାଣିପାରେ । ଶିବ ହେଉଛନ୍ତି ସମସ୍ତ ଦେବାତ୍ମା, ମହାତ୍ମା,

ସର୍ବାତ୍ମାଙ୍କ ପୂଜ୍ୟ, ପରମାତ୍ମା । ସେ କେବଳ ସାରା କଳ୍ପରେ ଏହିଦିନ ଭକ୍ତମାନଙ୍କର ସମସ୍ତ ମନୋରଥପୂର୍ଣ୍ଣ କରିଥାଆନ୍ତି । ଯାହା ମହାଶିବରାତ୍ରୀ ଭାବରେ ଜନମାନସରେ ଆଦୃତ ।

ଏ ସମ୍ପର୍କରେ ଆହୁରି ମଧ୍ୟ କୁହାଯାଇପାରେ, ଏକ ମତ ଅନୁଯାୟୀ ଏହିଦିନ ପରମ ପିତା ଶିବ ମହାସଂହାର କରିଥିଲେ । ପୁଣି ଅନ୍ୟ ଏକ ମତରେ ସେ ସୃଷ୍ଟି ସଂରଚନା କରିଥିଲେ । ସେ ଯେ ଗଙ୍ଗାଧର । ଅର୍ଥାତ୍ ଶିବଙ୍କ ଜ୍ଞାନଗଙ୍ଗାରେ ଅବଗାହନ ପୂର୍ବକ ଶିବପ୍ରଦ ଜ୍ଞାନ ଦ୍ୱାରା ଦେଶର ଜନମତକୁ ପାବନ କରିଥାଆନ୍ତି । ଶିବଙ୍କର ଅନ୍ୟ ଏକ ନାମ 'ନାରୀଶ୍ୱର' ବା ପାପ-କଟେଶ୍ୱର । ସେ ସମସ୍ତ ମନୁଷ୍ୟ ଆତ୍ମାଙ୍କୁ ଶରୀରରୁ ମୁକ୍ତ କରି ଶିବଲୋକ ନେଇଯାଆନ୍ତି । ସେ ମୁକ୍ତେଶ୍ୱର । ସର୍ବଶ୍ରେଷ୍ଠ ମଙ୍ଗଳମୟ ଦେବାଧିପତି ମହାଦେବଙ୍କ ନାମ ସ୍ମରଣରେ, ନିତ୍ୟ ଧ୍ୟାନ ଓ ପୂଜନରେ ହୃଦୟରେ ସତ୍ୟ, ଶାନ୍ତି, ଧର୍ମ, ପ୍ରେମଭାବ ଉତ୍ପନ୍ନ ହୁଏ । ସେହି ଦେବଦେବ ମହାଦେବ ଓ ପାର୍ବତୀଙ୍କ ସମ୍ପର୍କରେ ନିମ୍ନୋକ୍ତ ମତେ କୁହାଯାଇଛି, ''ଭବାନୀ ଶଙ୍କରୌ ବନ୍ଦେ ଶ୍ରଦ୍ଧା ବିଶ୍ୱାସ ରୂପିଣୌ'' । ଅର୍ଥାତ୍ ଶ୍ରଦ୍ଧାର ପ୍ରତୀକ ମାତା ପାର୍ବତୀ ଓ ବିଶ୍ୱାସର ପ୍ରତୀକ ଦେବଦେବ ମହାଦେବ ।

ଅନ୍ୟ ଏକ ପୌରାଣିକ ମତାନୁଯାୟୀ ଏହିଦିନ ମହାଦେବଙ୍କ ଦେବୀ ଶକ୍ତିଙ୍କ ସହିତ ବିବାହ କାର୍ଯ୍ୟ ସମ୍ପନ୍ନ ହୋଇଥିଲା । ଫଳରେ ଶିବଲୋକ ଓ ଦେବଲୋକର ରାତ୍ର ଉଜାଗର ପୂର୍ବକ ସମସ୍ତେ ଶ୍ରଦ୍ଧା ଓ ଆନନ୍ଦର ସହ ଏହି ମାଙ୍ଗଳିକ ଶୋଭାଯାତ୍ରାରେ ଅଂଶଗ୍ରହଣ କରିଥିଲେ । ପରମଦୟାଳୁ ଦେବଦେବ ମହାଦେବ ପ୍ରସନ୍ନତାର ସହ ନିଜ ଭକ୍ତଜନଙ୍କ ପ୍ରତି କରୁଣାବଦ୍ଧ ଥିଲେ । ଏଣୁ ବିଧିପୂର୍ବକ ଏହି ଦିନକୁ ଯେ କେହି ଶିବାଭିଷେକ ପୂର୍ବକ ନିଷ୍ଠାର ସହ ପାଳନ କରେ, ସେ ଅଭୀଷ୍ଟ ଫଳଲାଭ କରିଥାଏ ।

ବର୍ତ୍ତମାନ ଜାଣିବା, ଆମ ରାଜ୍ୟ ଓଡ଼ିଶାର କେତେକ ପ୍ରସିଦ୍ଧ ଶୈବ କ୍ଷେତ୍ରରେ ପାଳନ କରାଯାଉଥିବା ଜାଗର ଯାତ୍ରା ସମ୍ପର୍କରେ ।

**୧. ଶ୍ରୀକ୍ଷେତ୍ରରେ ଲୋକନାଥ :** ପୁରୁଷୋତ୍ତମ କ୍ଷେତ୍ର ଶ୍ରୀକ୍ଷେତ୍ରର ପ୍ରାଚୀନ ଶୈବପୀଠ ଶ୍ରୀ ଶ୍ରୀ ଲୋକନାଥ । କୁହାଯାଏ, ପ୍ରଭୁ ପାତାଳଭେଦୀ ଲୋକନାଥ ମନ୍ଦିର ପରିବେଷ୍ଟନୀ ମଧ୍ୟରେ ଥିବା ପାର୍ବତୀ ସାଗରର ସମାନୁପାତରେ ମନ୍ଦିର ମଧ୍ୟସ୍ଥ ପ୍ରଭୁ ଲୋକନାଥ ସର୍ବଦା ଜଳମଧ୍ୟରେ ଥାଆନ୍ତି । ପଙ୍କୋଦ୍ଧାର ଏକାଦଶୀଦିନ ପ୍ରଭୁଙ୍କ ଗମ୍ଭୀରା ମଧ୍ୟରୁ ପଙ୍କ ପାଳିଆ ସେବକମାନଙ୍କ ଦ୍ୱାରା ଉଦ୍ଧାର କରାଯାଇ ବାବା ଲୋକନାଥଙ୍କ ଲିଙ୍ଗଶକ୍ତି ଦର୍ଶନ କରାଇଥାନ୍ତି । ପ୍ରଭୁ ଅତ୍ୟନ୍ତ ପ୍ରତ୍ୟକ୍ଷ । ଏହିଦିନ ରାତିରେ ହୁଏ 'ହରିହର ଭେଟ' । ଶ୍ରୀମନ୍ଦିର ସହିତ ଶ୍ରୀ ଲୋକନାଥଙ୍କ ସେବାପୂଜାର ସମ୍ପର୍କ ରହିଅଛି । ଏହିଦିନ ଶ୍ରୀମନ୍ଦିରରୁ ବଳଭଦ୍ରଙ୍କ ଆଜ୍ଞାମାଳ ପାଇ ପ୍ରଭୁ ଲୋକନାଥଙ୍କ ଚଳନ୍ତି ପ୍ରତିମା 'ହରି' ରୂପରେ ବିମାନରେ ବିଜେ ହୋଇ ଶ୍ରୀଲୋକନାଥଙ୍କ ନିକଟରେ ଉଭା ହୁଅନ୍ତି । ଶ୍ରୀମନ୍ଦିରରେ ଜଗନ୍ନାଥଙ୍କ ବଲ୍ଲଭ ଭୋଗ ପରେ ଚଳନ୍ତି ପ୍ରତିମା ଶ୍ରୀମନ୍ଦିରରୁ ବାହାରି ସିଂହଦ୍ୱାରଠାରେ କିଛି ସମୟ ବିଜେ ହୋଇଥାଆନ୍ତି ଓ ନଗର ପରିକ୍ରମା କରନ୍ତି । ହରିରୂପୀ ଚଳନ୍ତି ପ୍ରତିମା ଶ୍ରୀଲୋକନାଥ ରାତିରେ ବାନାମ୍ବରଙ୍କ ପ୍ରତିମୂର୍ତ୍ତି ବୃଷଭଙ୍କଠାରେ ବିରାଜମାନ ହୋଇଥାନ୍ତି । ହରିହର ମୁହାଁମୁହିଁ ହୋଇ ବିରାଜିଥିବା ଅବସ୍ଥାରେ ୩ଗୋଟି ଅନ୍ନଧୂପ ୫ଟି ଶୀତଳ ଭୋଗ ତଥା ରହଣିଭୋଗ କରାଯାଇଥାଏ । ଏହି ହରି-ହର ଭେଟ ପରେ ଚତୁର୍ଦ୍ଦଶୀ ବେଢା ହୋଇଥାଏ । ଚଳନ୍ତି ପ୍ରତିମା ମନ୍ଦିର ପରିକ୍ରମା କରିସାରିବା ପରେ ମନ୍ଦିର ଚୂଡ଼ାରେ ମହାଦୀପ ଉଠିଥାଏ ।

**ଶ୍ରୀଲିଙ୍ଗରାଜ :** ମନ୍ଦିରମାଳିନୀ ଏକାମ୍ରକ୍ଷେତ୍ର ଶ୍ରୀଲିଙ୍ଗରାଜଙ୍କ ପାଇଁ ପ୍ରସିଦ୍ଧ । ଓଡ଼ିଶାର ଏହି ଅନନ୍ୟ ଶୈବପୀଠରେ ଜାଗର ନୀତି ନିର୍ଦ୍ଦିଷ୍ଟ ନିୟମାନୁଯାୟୀ ପାଳନ କରାଯାଇଥାଏ । ପ୍ରଥମେ ମଙ୍ଗଳଆଳତୀ ଓ ଅବକାଶ, ସାହାଣ ମେଲା ଦର୍ଶନ, ରୋଷହୋମ, ଛାମୁ ପରିଷ୍କାର, ମହାସ୍ନାନ, ବେଶ, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା, ଶ୍ରୀଜୀଉଙ୍କ ସକାଳ ଧୂପ, ଶ୍ରୀଭୁବନେଶ୍ୱରୀଙ୍କ ସକାଳଧୂପ, ସାହାଣ ମେଲା ଦର୍ଶନ ଭକ୍ତମାନଙ୍କ ଦ୍ୱାରା କରାଯାଇ ଛାମୁ ପରିଷ୍କାର

ହୋଇଥାଏ । ଏହାପରେ ଶ୍ରୀଜୀଉଙ୍କୁ ବେଶ କରାଯାଇ ବୀରକିଶୋର ବଲ୍ଲଭ, ଦ୍ୱିପ୍ରହର ଧୂପ ଓ ଶ୍ରୀଜୀଉଙ୍କ ପହୁଡ଼ ସନ୍ଧ୍ୟା ସମୟରେ ହୋଇଥାଏ ତଥା ପରେ ପରେ ସନ୍ଧ୍ୟା ଆଳତୀ ଓ ଟେରାଫିଟା କରାଯାଇ ମାଜଣା ଓ ବେଶ ହୋଇଥାନ୍ତି । ତତ୍‌ପରେ ଶୀଜୀଉଙ୍କ ଯାତ୍ରା ପୂଜା ଓ ବେଢା ହୋଇ ସନ୍ଧ୍ୟାଧୂପ ଓ ତୀର୍ଥ ଜଳ ଆନୟନ କାର୍ଯ୍ୟକ୍ରମ କରାଯାଇଥାଏ । ଏହାପରେ ରାତ୍ର ୧୦ ଘଟିକା ସମୟାନ୍ତେ ମହାଦୀପ ଦର୍ଶନରେ ଭକ୍ତଗଣ ଦେବଦେବ ମହାଦେବଙ୍କ ଅପାର କରୁଣା ଲାଭ ପୂର୍ବକ ସାହାଣ ମେଲା ଦର୍ଶନର ସୁଯୋଗ ପାଇଥାଆନ୍ତି । ଚାରିପ୍ରହର ପୂଜା ରାତ୍ରି ୧୧.୩୦ରୁ ୩.୩୦ ପର୍ଯ୍ୟନ୍ତ ଚାଲି ହରିହର ଭେଟ ହୋଇଥାଆନ୍ତି । ଏହାପରେ ପରମାତ୍ମା ଶିବଶମ୍ଭୁଙ୍କର ବଡ଼ସିଂହାର ଓ ପହୁଡ କାର୍ଯ୍ୟ ଶେଷ ହେବା ସଙ୍ଗେ ସଙ୍ଗେ ଜାଗର ଯାତ୍ରା ପାଳନ ବିଧି ସମାହିତ ହୋଇଥାଏ ।

ଶ୍ରୀ ଧବଳେଶ୍ୱର ବାବାଙ୍କ ପୀଠ (ଆଠଗଡ଼) ବାବା ଧବଳେଶ୍ୱର ବଡ଼ ପ୍ରତ୍ୟକ୍ଷ ଠାକୁର । ଦେବୋତ୍ତର ବିଭାଗଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏଠାରେ ମହାପ୍ରଭୁଙ୍କର ସ୍ୱତନ୍ତ୍ର ପୂଜାବିଧି ଅନୁଷ୍ଠିତ ହୋଇଥାଏ । ମଧ୍ୟରାତ୍ରୀ ପରେ ମହାଦୀପ ଉଠି ଅନ୍ୟାନ୍ୟ ବିଧି ନିଷ୍ଠା ପୂର୍ବକ ପାଳନ କରାଯାଏ । ଶ୍ରଦ୍ଧାଳୁମାନଙ୍କ ପୂଜାର୍ଚ୍ଚନା ମଧ୍ୟରେ ହରିହର ଭେଟ ଅନୁଷ୍ଠିତ ହୋଇଥାଏ । କପିଳାସ ପୀଠ ଢେଙ୍କାନାଳ ଜିଲ୍ଲାର ଏକ ପ୍ରସିଦ୍ଧ ଶୈବପୀଠ ଭାବରେ ପରିଚିତ । ଏଠାରେ ମହାପ୍ରଭୁ 'ଶ୍ରୀ ଚନ୍ଦ୍ରଶେଖର' 'ଶିଖରେଶ୍ୱର' ଭାବେ ଖ୍ୟାତ । ଏହି ପୀଠରେ ଜାଗରଯାତ୍ରା ବଡ଼ ଧୁମ୍‌ଧାମ୍‌ରେ ପାଳନ କରାଯାଏ । ଓଡ଼ିଶାର ପୁରପଲ୍ଲୀରୁ ହଜାର ହଜାର ଶ୍ରଦ୍ଧାଳୁ ଏଠାରେ ସମାବେଶ ହୋଇଥାନ୍ତି । ମହାଶିବରାତ୍ରୀ ଦିନ ଶ୍ରୀ ଚନ୍ଦ୍ରଶେଖର 'ନାଗାଭରଣ' ବେଶ ହୋଇଥାନ୍ତି । ନିର୍ଦ୍ଦିଷ୍ଟ ନୀତିନିୟମ ପୂର୍ବକ ଫାଲ୍‌ଗୁନ କୃଷ୍ଣ ଚତୁର୍ଦ୍ଦଶୀ ମଧ୍ୟରାତ୍ରରେ ବେଢାପୂଜା, ବେଢା ପରିକ୍ରମା ଓ ମହାଦୀପ ଉଠିଥାଏ । ମହାପ୍ରଭୁଙ୍କର ପାଳିଆ ସେବକ ଓ ପୂଜାପଣ୍ଡା ଏହି ପାଳି ଖଟିଥାଆନ୍ତି ।

ନୟାଗଡ଼ ଜିଲ୍ଲା ଶରଣକୂଳ ଲଡୁବାବାଙ୍କ ପୀଠରେ ଶିବରାତ୍ରୀ ପୂଜାବିଧି ଶୈବ କଳ୍ପଦ୍ରୁମ ତାଳପତ୍ର ପୋଥି ଅନୁଯାୟୀ ପାଳନ କରାଯାଏ । ବାବା ଏଠାରେ ଲଡୁକେଶ ନାମରେ ବିଖ୍ୟାତ । ଏଠାକାର ନୀତିକାନ୍ତି ଅନୁଯାୟୀ ସକାଳେ ଗୋଟିଏ ଦୀପ ଲଗାଯାଇ ଅବକାଶ ନୀତି ହୋଇଥାଏ । ଏହାପରେ ଷୋହଳ ଗୋଟି ଦୀପ ଲଗାଯାଇ ସକାଳଧୂପ ହୋଇଥାଏ । ମହାପ୍ରଭୁଙ୍କ ଦ୍ୱିପ୍ରହର ଧୂପ ସରିବା ପରେ ଦର୍ଶନ କରିବାକୁ ଭକ୍ତମାନେ ଯାଇଥାନ୍ତି । ଏହାପରେ ଟେରାପଡ଼ି ନୀତି ହୋଇ ଲଡୁବାବାଙ୍କୁ କେତକୀ ଲାଗି କରାଯାଇଥାଏ । ସନ୍ଧ୍ୟା ଧୂପ କରାଗଲା ପରେ ମନ୍ଦିର ଶୀର୍ଷରେ ନେତ ବନ୍ଧା ହୁଏ । ବେଢା କରାଯାଇ ମହନରେ ଧୂପ ଓ ବନ୍ଦାପନା କରାଯାଇ ଠାକୁର ଭିତରକୁ ଯାଆନ୍ତି । ଚାରିପ୍ରହରରେ ଚାରୋଟି ଶତରୁଦ୍ର ଅଭିଷେକ କରାଯିବା ପରେ ପାଟଲୁଗା ଲାଗି ହୁଅନ୍ତି । ପ୍ରତି ଥରରେ ବସ୍ତ୍ର ଲାଗି ଉପରାନ୍ତେ ବଡ଼ପଣ୍ଡାଙ୍କ ଦ୍ୱାରା ଧୂପ ହୋଇଥାଏ ଓ ପରେ ମଧ୍ୟରାତ୍ରରେ ମହାଦୀପ ଉଠେ । ପ୍ରତି ଭକ୍ତଙ୍କ ଅଭୀଷ୍ଟ ପୂରଣର ଲକ୍ଷ୍ୟ ଏହି ମହାଦୀପ । ଏହାପରେ ବଡ଼ସିଂହାର ଧୂପ ହୋଇ ପହଡ଼ ପଡ଼ିଥାଏ ।

ଭଦ୍ରକ ଜିଲ୍ଲାର ବାବା ଆଖଣ୍ଡଳମଣିଙ୍କ ପୀଠ ଏକ ପ୍ରମୁଖ ଶୈବପୀଠ । ଓଡ଼ିଶାର ପୁରପଲ୍ଲୀରୁ ହଜାରହଜାର ଶ୍ରଦ୍ଧାଳୁ ଫାଲ୍‌ଗୁନ କୃଷ୍ଣ ଚତୁର୍ଦ୍ଦଶୀ ଜାଗର ଯାତ୍ରାରେ ଏକତ୍ରିତ ହୋଇଥାଆନ୍ତି । ବାବାଙ୍କ ସ୍ୱତନ୍ତ୍ର ନୀତିର ଅନୁସରଣରେ ନିଜ ନିଜର ଅଭୀଷ୍ଟ ପୂରଣ ପାଇଁ ଘର୍ଷଣ ଭୋଗ କରିଥାନ୍ତି । ଏଠାକାର ନୀତିକାନ୍ତି ଅନୁଯାୟୀ ଭୋର ୪ଟାରେ ପହଡ଼ ଖୋଲାଯାଇ ମଙ୍ଗଳ ଆଳତୀ, ପ୍ରଥମ ଘର୍ଷଣ କନିକା ରାଜାଙ୍କ ତରଫରୁ କରାଯାଇଥାଏ । ଏହାପରେ ପହିଲି ଭୋଗ (ଖେଚୁଡ଼ି), ଶ୍ରଦ୍ଧାଳୁମାନଙ୍କ ଦ୍ୱାରା ଠାକୁର ଦର୍ଶନ ଓ ଘର୍ଷଣ ଭୋଗ ହୋଇଥାଏ । ସନ୍ଧ୍ୟା ୬ଟାରେ ପ୍ରଥମ ପ୍ରହର ଷୋଡ଼ଶ ଉପଚାର ପୂଜାବିଧି, ଏହାପରେ ରୁଦ୍ରାଭିଷେକ, ୨ୟ ପ୍ରହର ଘର୍ଷଣ ଉପଚାର ପୂଜା, ସେହିଭଳି ୩ୟ ପ୍ରହରରେ ଦର୍ପଣ ଉପଚାର ପୂଜା କରାଯାଇ ୪ର୍ଥ ପ୍ରହର ଘର୍ଷଣ ପୂଜା ପରେ ଯଜ୍ଞାନୁଷ୍ଠାନ ହୋଇଥାଏ । ମହାପ୍ରଭୁଙ୍କର ସୁନାବେଶ ହେବା ପରେ ଭକ୍ତଗଣ ଦର୍ଶନ କରିଥାନ୍ତି । ରାତ୍ରିର ଶେଷ ପ୍ରହରରେ ମହାଦୀପ ମନ୍ଦିର

ଚୂଡ଼ାରେ ସ୍ଥାପନ କରାଯିବା ପରେ ଜାଗର ଯାତ୍ରାର ଶେଷ ପର୍ଯ୍ୟାୟ ହୋଇଥାଏ । ଭକ୍ତଗଣ ନିଜ ନିଜର ଅଭୀଷ୍ଟ ପୂରଣ ପାଇଁ ପ୍ରାର୍ଥନା କରି କରିଥାନ୍ତି ।

ସେହିଭଳି ବାଲେଶ୍ୱର ଜିଲ୍ଲାର ପଞ୍ଚଲିଙ୍ଗେଶ୍ୱର ପୀଠ ଓଡ଼ିଶାର ଐତିହ୍ୟସମ୍ପନ୍ନ ଶୈବପୀଠ ମଧ୍ୟରୁ ଅନ୍ୟତମ । କଥିତ ଅଛି, ଜରାସନ୍ଧ ଶନି ଦଶାରୁ ମୁକ୍ତ ହେବା ପାଇଁ ଚାରିଧାମରେ ପୂଜା କରିଥିଲେ ହେଁ ଶନିଙ୍କ କୋପରୁ ଉଦ୍ଧାର ହୋଇପାରିନଥିଲେ । ନାରଦ ମହର୍ଷିଙ୍କ ପରାମର୍ଶକ୍ରମେ କୁଲଡ଼ିହା ଅରଣ୍ୟ ମଧ୍ୟସ୍ଥ ଦେବଗିରି ପାହାଡ଼ରେ ପଞ୍ଚଲିଙ୍ଗ ସ୍ଥାପନ ପୂର୍ବକ ଜଳାଭିଷେକ କରି ଶନି କୋପରୁ ରକ୍ଷା ପାଇଥିଲେ । ସେହିଦିନଠାରୁ ଝରଣାର ଜଳ ମଧ୍ୟରେ ପଞ୍ଚଲିଙ୍ଗ ପୂଜା ପାଇ ଆସୁଛନ୍ତି । ଶିବରାତ୍ରୀ ଦିବସରେ ଏଠାରେ ସ୍ୱତନ୍ତ୍ର ରୀତିନୀତି ଅନୁଯାୟୀ ପୂଜାର୍ଚ୍ଚନା କରାଯାଇଥାଏ । ଚାରିପ୍ରହରରେ ସ୍ୱତନ୍ତ୍ର ପୂଜାବିଧିର ଆୟୋଜନ ହୋଇଥାଏ ଓ ଚତୁର୍ଥ ପ୍ରହରରେ ଅଖଣ୍ଡ ଦୀପ ଉଠିଥାଏ । ରାତ୍ର ଉଜାଗର ପୂର୍ବକ ଦେବଦେବ ମହାଦେବଙ୍କଠାରେ ଚିତ୍ତବୃତ୍ତି ସ୍ଥାପନ କରି ଦୀପଦାନ କରିବା ଦ୍ୱାରା ବିଭିନ୍ନ ଦୁରାରୋଗ୍ୟ ବ୍ୟାଧିରୁ ମୁକ୍ତି ମିଳିଥାଏ ବୋଲି ବିଶ୍ୱାସ ଅଛି ।

ଓଡ଼ିଶାର ଏହି ନିର୍ଦ୍ଦିଷ୍ଟ ଶୈବପୀଠମାନଙ୍କ ସମ୍ପର୍କରେ ସମ୍ୟକ ସୂଚନା ଦିଆଯାଇଥିଲେ ହେଁ ଆହୁରି ଅନେକ ଶୈବପୀଠ ଲୋକବିଶ୍ୱାସ ଧର୍ମଧାରଣା ସହ ଜଡ଼ିତ ହୋଇ ଏକ ସୁସ୍ଥ ଧର୍ମୀୟ ଭାବନା ସୃଷ୍ଟି କରିଅଛନ୍ତି ।

ବିଶ୍ୱାସ ହିଁ ଧର୍ମ । ଶୁଦ୍ଧ ଆଚରଣ, ପ୍ରକୃତିକୁ ଭଲ ପାଇବା, ଧ୍ୟାନଦେବା, ଗଭୀର ଆସ୍ଥା ରଖିବା, ତା'ର ପବିତ୍ରତା, ସୁନ୍ଦରତା ତଥା ସତ୍ୟକୁ ଉପଲବ୍ଧି କରିବା ହେଉଛି ଶିବଙ୍କ ପ୍ରତି ଆସ୍ଥା ପ୍ରଦର୍ଶନ । ତ୍ରିଗୁଣ ଅର୍ଥାତ୍ ସତ୍ତ୍ୱ , ରଜ, କାମ ଉପରେ ବିଜୟ ପ୍ରାପ୍ତି କରି ଆତ୍ମଜ୍ଞାନ ଲାଭ କରିବା, ନିଜ ଭିତରର ଅହଂ ଭାବକୁ ଦମନ କରି, କର୍ମ ଉପରେ ଆସ୍ଥା ରଖି ଓ ନିଜ ବାସନାକୁ ଦମନ କରି ଶିବ ଶରଣାପନ୍ନ ହବା, ନିଜର ଜ୍ଞାନଚକ୍ଷୁ ଉନ୍ମୀଳିତ କରି ସଚରାଚର ଧରାରେ ଈଶ୍ୱରଙ୍କ ଉପସ୍ଥିତିକୁ ହୃଦୟଙ୍ଗମ କରି ସତ୍‌ମାର୍ଗରେ ଚଳିବା ଦ୍ୱାରା ଆୟୁଷ ବୃଦ୍ଧି, ବିବେକ ଓ ମାନସିକ ଶାନ୍ତି, ଶୀତଳତା ତଥା ସମସ୍ତଙ୍କ ଭିତରେ ଆତ୍ମଜ୍ଞାନ ହିଁ ଦୃଷ୍ଟିଗୋଚର ହୋଇପାରିବ । ଶିବରାତ୍ରୀ ପାଳନର ଯଥାର୍ଥତା ହେଉଛି, ଉପବାସ ପାଳନ ପୂର୍ବକ ଉଜାଗର ରହି ସତ୍ୟର ଲପଲବ୍ଧି କରିବା । ଏହାର ଅର୍ଥ ହେଉଛି ମନୁଷ୍ୟ ମନରେ ଥିବା ବିକାର ଦୂର କରିବାରେ ପରଂବ୍ରହ୍ମ ଦେବ ଦେବ ମହାଦେବ ଆଶୀର୍ବାଦ କରିଥାଆନ୍ତି । ବିକାର ତ୍ୟାଗ ନକଲେ ଶିବ କରୁଣା ଅସମ୍ଭବ । ପ୍ରକୃତି ପ୍ରେମ ହିଁ ଶିବ ଉପାସନା । ଯାହା ଭଗବାନ ଶିବଙ୍କ ପ୍ରିୟ ପୁଷ୍ପ ଅରଖ, ଦୁଦୁରା, ବେଲପତ୍ର, କେତକୀ, ଯେଉଁଗୁଡ଼ିକ ଔଷଧୀୟ ଗୁଣରେ ପରିପୂର୍ଣ୍ଣ, ପରମପାବନୀ ଗଙ୍ଗା ଯାହାଙ୍କ ମଥାରୁ ଝରି ଆସିଛନ୍ତି, ସମସ୍ତ ଐଶ୍ୱର୍ଯ୍ୟର ଗନ୍ତାଘର ଚନ୍ଦ୍ର ଯାହାଙ୍କ କିରୀଟ, ଭସ୍ମ ବିଲେପନ ଯାହାଙ୍କ ଭୂଷଣ, ନାଗରାଜ ଗଳାର ହାର, ପ୍ରକୃତିର ସମସ୍ତ ସୌନ୍ଦର୍ଯ୍ୟ ଯେଉଁଠି ଠୁଳ, ସେହି ମହାଯୋଗୀଶ୍ୱର ଶିବଙ୍କ ଆରାଧନା ହିଁ ମହାଶିବରାତ୍ରୀ ପାଳନର ପ୍ରକୃତ ତାତ୍ପର୍ଯ୍ୟ ।

---

ଘର ନଂ–୨ ଆରବି–୧୭/୪, ୟୁନିଟ୍–୮
ଭୁବନେଶ୍ୱର



# ଭୂଦାନ ଯଜ୍ଞର ସନ୍ଥ : ଭାରତରତ୍ନ - ବିନୋବା ଭାବେ

ଜୟଶଙ୍କର ନାୟକ

ଦେବଭୂମି ଭାରତବର୍ଷରେ ମହାତ୍ମା ଗାନ୍ଧିଙ୍କ ଆଧ୍ୟାତ୍ମିକ ମାନସର ସୁଯୋଗ୍ୟ ଉତ୍ତରାଧିକାରୀ ରୂପେ ବିନୋବା ଭାବେଙ୍କ ସବୁଠାରୁ ଗୌରବର ଗରିମାମୟ



ପରିଚୟ ଥିଲା । ତାଙ୍କୁ ରାଜନୀତି ସହ ଆଧ୍ୟାତ୍ମିକତାର ସହାବସ୍ଥାନ କରିବାର ଶ୍ରେୟ ମହାତ୍ମା ଗାନ୍ଧି । ପୁନରାୟ ଆଧ୍ୟାତ୍ମିକତା ଓ ନୈତିକତା ମଧ୍ୟରେ ଦୂରତ୍ୱକୁ ଶେଷ କରିଥିଲେ ମହାତ୍ମା ଗାନ୍ଧୀ । ସେହି ଅନନ୍ୟ ଧାରାର ଅଗ୍ରଣୀ ସେନାନୀ ଥିଲେ ବିନୋବା । 'ଗୀତା'କୁ ମାତୃବତ୍ ସମ୍ମାନ ଦେଉଥିଲେ ବିନୋବା । ବିନୋବାଙ୍କ ଭାଷାରେ 'ଗୀତା' ମୋ ଜୀବନର ଜୀବନ ରେଖା । ସଂସ୍କୃତ ଉପରେ ଅଗାଧ ପାଣ୍ଡିତ୍ୟ ଥିବା ବିନୋବା ପ୍ରଥମରୁ ସଂସ୍କୃତରେ ଉପନିଷଦର ଭାଷ୍ୟ ଚର୍ଚ୍ଚା ସହ ଟୀକା ଟିପ୍ପଣୀ କରୁଥିଲେ । ସେଥିପାଇଁ ସେ ଥିଲେ ଆଚାର୍ଯ୍ୟ ବିନୋବା । କିନ୍ତୁ ପରବର୍ତ୍ତୀ ସମୟରେ ସାଧାରଣ ଲୋକଙ୍କ ବୁଝିବା ଭାଷାରେ ସେ 'ଗୀତା' ଓ 'ଉପନିଷଦ'ର ତାତ୍ତ୍ୱିକ ଜ୍ଞାନକୁ ବୁଝାଉଥିଲେ । ତେଣୁ ସେ ହୋଇଥିଲେ ଆଚାର୍ଯ୍ୟ ବିନୋବାରୁ ସନ୍ଥ ବିନୋବା ।

ସେ ମହାରାଷ୍ଟ୍ରର ପୁରାତନ ଗାଁ ଗାଗୋଜିରେ ୧୮୯୫ ମସିହା ସେପ୍ଟେମ୍ବର ମାସ ୧୧ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ବାଲ୍ୟ ନାମ ଥିଲା ବିନାୟକ ନରହରି ଭାବେ । ପିଲାଦିନରୁ ବିନୋବାଙ୍କ ଭିତରେ ଆଧ୍ୟାତ୍ମିକ ବିକାଶ ହୋଇଥିଲା । ଏହି ମହାନ୍ ଗାନ୍ଧୀବାଦୀଙ୍କୁ ମହାତ୍ମାଙ୍କ ଆଧ୍ୟାତ୍ମିକ ଉତ୍ତରାଧିକାରୀ କୁହାଯାଇଥାଏ । ଶୈଶବରୁ ହିଁ ବ୍ରହ୍ମଚାରୀ ହେବାର ସକଳ ସଂଯମ ଓ ସଂକଳ୍ପ ତାଙ୍କଠାରେ ଦେଖିବାକୁ ମିଳିଥିଲା । ବିଦ୍ୟାଳୟ ସ୍ତରର ଶିକ୍ଷାପରେ ସେ ସନ୍ନ୍ୟାସୀ ହେବାକୁ ନିଷ୍ପତ୍ତି ନେଇଥିଲେ । ଏହି ସମୟରେ ଗାନ୍ଧୀଙ୍କ ଭାଷଣ ଶୁଣି 'ଈଶ୍ୱର - ସେବା ମାନବ ସେବା'ର ଏକ ସମନ୍ୱୟ ସାଧନ କରିବା ନିମନ୍ତେ ସେ ସଂକଳ୍ପ କରିଥିଲେ । ଆଜୀବନ ସେହି ସଂକଳ୍ପକୁ ବାସ୍ତବରେ ସ୍ପର୍ଶ ଦେବା ପାଇଁ ଉଦ୍ୟମ କରିଥିଲେ । ବମ୍ବେକୁ ଇଣ୍ଟରମିଡିଏଟ୍ ପରୀକ୍ଷା ଦେବାକୁ ଯିବାବେଳେ ବିନାୟକ,

ମହାତ୍ମା ଗାନ୍ଧୀଙ୍କ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଅଭିଭାଷଣରେ ଉଦ୍‌ବୁଦ୍ଧ ହୋଇଥିଲେ । ମନରେ ଏକ ଦୁର୍ବାର ନିଶା ଯେ ମହାତ୍ମା ଗାନ୍ଧୀଙ୍କ ନୀତିରେ ଏବଂ ପ୍ରଦର୍ଶିତ ରାସ୍ତାରେ ଚାଲିବେ । ଅଦମ୍ୟ ସାହସ ଓ ଉତ୍ସାହ ସହ ଗାନ୍ଧିଜୀଙ୍କୁ ପତ୍ର ଲେଖି ନିଜର ଅଭିପ୍ରାୟ ଜଣାନ୍ତି ଯୁବକ ବିନାୟକ । ବରୋଦାରୁ ବାଲ୍ୟଶିକ୍ଷା ସାରି ସେ ଅହମଦାବାଦ ଯାଇ ମାଟ୍ରିକ୍ ପାସ୍ ପରେ ସଂସ୍କୃତ ଅଧ୍ୟୟନ ଲକ୍ଷ୍ୟରେ କାଶୀ ଚାଲିଗଲେ । ସେଠାରେ ମୁକ୍ତି ସଂଗ୍ରାମର ମହାରଥୀ ତାନ୍ତିଆ ଟୋପେଙ୍କ ଭଗିନୀଙ୍କ ଗୃହରେ ରହି ବାରବର୍ଷର ସଂସ୍କୃତ ଶିକ୍ଷାକୁ ମାତ୍ର ତିନିମାସରେ ସାରିଥିଲେ । ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରୁ ଭାରତ ପ୍ରତ୍ୟାବର୍ତ୍ତନ କଲାପରେ ଗୁଜରାଟର ଅହମଦାବାଦରେ ଥିବା ତାଙ୍କ ବାରିଷ୍ଟର ବନ୍ଧୁ ଜୀବନଲାଲ୍ ଦେଶାଇଙ୍କ କୋଚରାବ ବଙ୍ଗଳାରେ ଏକ ଆଶ୍ରମ ସ୍ଥାପିତ କରିଥିଲେ । ତା'ପରେ ବିନାୟକଙ୍କ ସ୍ୱପ୍ନ ସାକାର ହୁଏ, ଗାନ୍ଧିଜୀଙ୍କୁ କୋଚରାବ ଆଶ୍ରମରେ ବ୍ୟକ୍ତିଗତ ସାକ୍ଷାତ୍ କରିବାର ମହାର୍ଘ ସୁଯୋଗ । କିନ୍ତୁ ପରେ ଗାନ୍ଧିଜୀ କୃଷି ଏବଂ ପଶୁପାଳନ ସହ ରଚନାତ୍ମକ କାର୍ଯ୍ୟକ୍ରମକୁ ହାତକୁ ନେବାର ଇଚ୍ଛାପୋଷଣ କରିଥିଲେ । ସେଥିପାଇଁ ସାବରମତୀ ନଦୀକୂଳରେ ଏକ ପ୍ରଶସ୍ତ ଜାଗାରେ ଆଶ୍ରମକୁ ସ୍ଥାନାନ୍ତରିତ କରିଥିଲେ । କୋଚରାବ ବଙ୍ଗଳାରେ ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚିଯାନ୍ତି ୨୦ ବର୍ଷ ବୟସ୍କ ବିନାୟକ । ଭାରତୀୟ ରାଜନୈତିକ ଚିନ୍ତନ ସହ ଆଧ୍ୟାତ୍ମିକତାର ଅପୂର୍ବ ସମନ୍ୱୟ ରକ୍ଷା କରିବାର ଅଭିନବ ପରମ୍ପରାର ମୂଳଦୁଆ ପଡ଼େ । ବିନାୟକଙ୍କ ଗଣିତ ଓ ସଂସ୍କୃତ ଭାଷାରେ ଦକ୍ଷତା, ବୈଜ୍ଞାନିକ ମନୋଭାବ ସହ ନିଷ୍ଠା ଗାନ୍ଧିଜୀଙ୍କୁ ଖୁବ୍ ପ୍ରଭାବିତ କରିଥିଲା । ଫଳସ୍ୱରୂପ ବିନାୟକଙ୍କୁ ଗାନ୍ଧିଜୀଙ୍କ ଆଶ୍ରମର ପୂର୍ଣ୍ଣକାଳିକ ସଦସ୍ୟତା ମିଳିଥିଲା । ତାହା ବିନାୟକଙ୍କ ପାଇଁ କୌଣସି ଦେବାଶୀର୍ବାଦଠାରୁ କମ୍ ନଥିଲା । ବିନୋବା ଗାନ୍ଧିଜୀଙ୍କ ସହ ମହାର୍ଘ ସାକ୍ଷାତ୍ ପରେ କହିଥିଲେ, ''ଗାନ୍ଧିଜୀଙ୍କ ଆଶ୍ରମର ଅନ୍ତେବାସୀ ହେବାର ସୌଭାଗ୍ୟ ପାଇଛି, ତାହା ଅତୁଳନୀୟ । ଜୀବନର ଆଦ୍ୟ କାଳରେ ହିଂସା ଦ୍ୱାରା ଭାରତବର୍ଷ ପାଇଁ କିଛି କରିବାର ଅଭିପ୍ରାୟ ଥିଲା କିନ୍ତୁ ବାପୁ ତା'ର ପ୍ରଶମନ କରିଥିଲେ । ମୋ ମନ ଭିତରେ ଥିବା କ୍ରୋଧର ଆଗ୍ନେୟଗିରିକୁ ବାପୁ ଶାନ୍ତ କରିଦେଇଥିଲେ । ଦିନ ପ୍ରତିଦିନ ମୋ ଜୀବନରେ ଏକ କ୍ରମିକ ଉତ୍ତରଣର ମୁଁ ଉପଲବ୍ଧି କରିପାରିଥିଲି ।''

୧୯୧୬ ମସିହାରେ କାଶୀ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଗାନ୍ଧିଜୀଙ୍କ ପ୍ରଦତ୍ତ ଭାଷଣ ତାଙ୍କୁ ମୁକ୍ତି ସଂଗ୍ରାମ ପାଇଁ ଆକୃଷ୍ଟ କଲା । ସେ ସାବରମତୀ ଆଶ୍ରମକୁ ଯାଇ ବାପୁଜୀଙ୍କୁ ସାକ୍ଷାତ୍ କଲେ । ସେଠାରେ ପରସ୍ପର ପରସ୍ପରକୁ ଗୁରୁଜ୍ଞାନ କଲେ । 'ଗୀତା' ଜ୍ଞାନ ଆହରଣ ପାଇଁ ବାପୁଜୀ ବିନୋବାଜୀଙ୍କୁ ଗୁରୁ ମଣୁଥିବା ସ୍ଥଳେ ମୁକ୍ତି ସଂଗ୍ରାମୀ ପରିଚାଳନାରେ ବିନୋବାଜୀ ବାପୁଜୀଙ୍କୁ ଗୁରୁ ଆସନ ଦେଇଥିଲେ । ନିଜେ ବାପୁଜୀ ବିନାୟକଙ୍କୁ 'ବିନୋବା ଭାବେ' ନାମ ପ୍ରଦାନ କରିଥିଲେ । ଏହାପରେ ଉଭୟ ଅତୁଟ ବନ୍ଧନରେ ବାନ୍ଧି ହୋଇଥିଲେ । ସେ ଗାନ୍ଧିଜୀଙ୍କ ଆଶ୍ରମରେ ରହି ପଠନ, ଚରଖା ଚଳାଇବା, ସିଲେଇ ଭଳି ଅନେକ ଜନସେବା କଲେ । ୧୯୧୩ ମସିହାରେ ସେ ଏକ ମରାଠୀ ପତ୍ର 'ମହାରାଷ୍ଟ୍ର ଧର୍ମ' ପ୍ରକାଶ କରିଥିଲେ । ଏଥିରେ ସେ ବିଭିନ୍ନ ଉପନିଷଦ ଉପରେ ନିବନ୍ଧ ଲେଖିଲେ । ଶାକାହାରୀ ବିନୋବାଙ୍କ ଖାଦ୍ୟ ଥିଲା ବେଶ୍ ବିଚିତ୍ର । ପଚିଶ ବର୍ଷରୁ ଅଧିକ କାଳ ସେ ମହୁ, ଦୁଗ୍ଧ ଓ ଇସବଗୋଲ ବ୍ୟତୀତ ଅନ୍ୟ କିଛି ଖାଉ ନଥିଲେ । ଗାନ୍ଧିଜୀଙ୍କ ଜୀବନ ଦର୍ଶନରେ ଚିନ୍ତା ଏବଂ ଚେତନାର ଶୁଦ୍ଧତା ଏକ ପ୍ରମୁଖ ଅଂଶ ଥିଲା । ସେଥିପାଇଁ ଆଶ୍ରମ ସ୍ଥାପନା କରି ବ୍ୟବହାରିକ ଜୀବନ ଶୈଳୀରେ ନୈତିକତାର ବ୍ୟାପକ ପ୍ରୟୋଗ କରିବା ଦିଗରେ ଗୁରୁତ୍ୱାରୋପ କରିଥିଲେ । ପ୍ରଥମେ କୋଚରାବ ବଙ୍ଗଳାରେ ଆଶ୍ରମ ସ୍ଥାପନା କରିବା ପରେ କୃଷି ଓ ପଶୁପାଳନର ଇଚ୍ଛାକୁ ଫଳବତୀ କରିବା ପାଇଁ ଆଶ୍ରମକୁ ଅହମଦାବାଦର ସାବରମତୀ ନଦୀକୂଳକୁ ସ୍ଥାନାନ୍ତରିତ କରିଥିଲେ । ସେଠାରେ ଗାନ୍ଧିଜୀଙ୍କ ବାସଗୃହ 'ହୃଦୟ' ପାଖରେ ଥିଲା ଛୋଟ ଦି' ବଖରିଆ, ଖପର ଘର । 'ବିନୋବା କୁଟୀର' ନାମରେ ପରିଚିତ ଏହି କୁଟୀରରେ ରହୁଥିଲେ ସତ୍ୟାଗ୍ରହୀ ବିନୋବା । ତାଙ୍କ ଦିନଚର୍ଯ୍ୟା ଆରମ୍ଭ ହେଉଥିଲା ଗୀତା ପାଠରୁ । ବିନୋବା ଭାବେ ନିଜ

ପ୍ରବଚନରେ ଗୀତାର ସାରକୁ ଅତ୍ୟନ୍ତ ସରଳ ଶବ୍ଦରେ ଲୋକଙ୍କ ନିକଟରେ ପହଞ୍ଚାଇଥିଲେ । ତା' ପରେ ମଜ୍ଜି ଯାଇଥିଲେ ଆଶ୍ରମର ବିଭିନ୍ନ କାମରେ । ଅନେକ ସମୟରେ ଗାନ୍ଧିଜୀଙ୍କ ସହ ମିଶି ଗହମ ବାଛିବା, ଗହମ ପେଷିବା, ପାଇଖାନା ପରିଷ୍କାର କରିବା ଇତ୍ୟାଦି ବିନୋବା କରୁଥିଲେ । ପୁଣି ସମୟ ଦେଖି ନିୟମିତ ଭାବେ ଗାନ୍ଧିଜୀଙ୍କ ସହ 'ଗୀତା' ଏବଂ 'ଉପନିଷଦ'ର ଦାର୍ଶନିକ ଚିନ୍ତନ ଉପରେ ତାତ୍ତ୍ୱିକ ଆଲୋଚନା କରୁଥିଲେ । ଏକ ଆତ୍ମନିର୍ଭରଶୀଳ ସମାଜ ଓ ରାଷ୍ଟ୍ର ଗଠନ ଦିଗରେ ଗାନ୍ଧିଜୀଙ୍କ ନିର୍ଦ୍ଦେଶିତ 'ନୟି ତାଲିମ' (ନୂତନ ଶିକ୍ଷାକୁ) ପ୍ରଣୟନର ଗୁରୁଦାୟିତ୍ୱ ବିନୋବା ସୁଚାରୁରୂପେ ନିର୍ବାହ କରିଥିଲେ । ଗାନ୍ଧିଜୀଙ୍କ ଯୋଗ୍ୟ ଶିଷ୍ୟ ଭାବେ ବିନୋବା ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ସେଥିପାଇଁ ଗାନ୍ଧିଜୀ ୧୯୨୫ ମସିହାରେ କେରଳର ଭୈକମ ମନ୍ଦିରରେ ସମାଜର ନିମ୍ନ ସ୍ତରର ଲୋକଙ୍କୁ ପ୍ରବେଶ କରିବାର ଦାୟିତ୍ୱ ତୁଲାଇ ଥିଲେ । ବିନୋବାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏହି ପ୍ରଗତିଶୀଳ କାର୍ଯ୍ୟକ୍ରମ ସମଗ୍ର ଦେଶରେ ଆଲୋଡ଼ନ ସୃଷ୍ଟି କରିଥିଲା ।

୧୯୪୦ ମସିହାରେ ବ୍ରିଟିଶ ସାମ୍ରାଜ୍ୟ ବିରୋଧରେ ଗାନ୍ଧିଜୀ ଆରମ୍ଭ କରିଥିବା ସତ୍ୟାଗ୍ରହର ସତ୍ୟାଗ୍ରହୀ ଭାବେ ଚୟନ ହୋଇଥିଲେ ବିନୋବା । ବିନୋବାଙ୍କ ରାଜନୈତିକ ଦର୍ଶନ ଗାନ୍ଧୀବଳ ଉପରେ ପ୍ରତିଷ୍ଠିତ ହେଲେ ମଧ୍ୟ ସ୍ୱକୀୟ ଅବଧାରଣାରେ ସମୃଦ୍ଧ ଥିଲା । ୧୯୪୦ରେ ସତ୍ୟାଗ୍ରହ ପରେ ୧୯୪୨ ଭାରତଛାଡ଼ ଆନ୍ଦୋଳନ ସଂପୃକ୍ତି ହେତୁ ତିନିଥର ବିନୋବା କାରାବରଣ କରିଥିଲେ । କାରାବରଣ ସମୟରେ ବିନୋବା 'ସ୍ୱରାଜ ଶାସ୍ତ୍ର' ରଚନା କରିଥିଲେ, ଯାହା ତାଙ୍କ ରାଜନୈତିକ ଚିନ୍ତନର ମୌଳିକତାକୁ ଦର୍ଶାଏ । ଜେଲ୍ ଜୀବନ କଟାଇବା ସମୟରେ ସେ ଅନେକ ଦୁର୍ଲଭ ଲେଖାମାନ ରଚନା କରିବା ସହ ସମସ୍ତ ଭାରତୀୟ ଭାଷା ବନ୍ଦୀମାନଙ୍କଠାରୁ ଶିକ୍ଷା କରି ପାରିଥିଲେ । ସତ୍ୟାଗ୍ରହମାନ ସାରସ୍ୱତ ସାଧନା, ସର୍ବୋଦୟ, ଗୋସୁରକ୍ଷା, ନିଶା ନିବାରଣ, ମୌଳିକ ଶିକ୍ଷା, ଗୀତା ଜ୍ଞାନ, ଶିକ୍ଷା ଭଳି ମହାନ୍ କାର୍ଯ୍ୟରେ ନିମଗ୍ନ ରହିଥିଲେ । ୧୯୪୮ ମସିହାରେ ବାପୁଜୀଙ୍କ ବିୟୋଗ ତାଙ୍କୁ ଭାରି ବାଧିଥିଲା । ମାତ୍ର ବିଚଳିତ ନ ହୋଇ ସମଗ୍ର ଭାରତବର୍ଷ ପଦଯାତ୍ରା କଲେ । ଲକ୍ଷ୍ୟ ଥିଲା ସମାଜର ଅବହେଳିତ, ଦଳିତଙ୍କ ସହ ମିଶିବା ଓ ସେମାନଙ୍କୁ ବାପୁ ଆଣିଥିବା ସ୍ୱାଧୀନତାର ଉଦ୍ଦେଶ୍ୟ ବୁଝାଇବା । ନିସ୍ୱ କୃଷିଜୀବୀଙ୍କୁ କିଛି ଚାଷ ଜମି ଯୋଗାଇ ଦେବା ଲକ୍ଷ୍ୟରେ ସେ 'ଭୂଦାନ ଯଜ୍ଞ' ଆରମ୍ଭ କରିଥିଲେ । ଭୂମିହୀନଙ୍କୁ ଭୂମି ପ୍ରଦାନ ତାଙ୍କ ଜୀବନର ସର୍ବଶ୍ରେଷ୍ଠ ସାଫଲ୍ୟ । ୧୯୫୧ ମସିହା ଅପ୍ରେଲ ୧୮ ତାରିଖରେ ପୋଚାମପଲ୍ଲୀରେ ସେ (ବର୍ତ୍ତମାନର ତେଲେଙ୍ଗନା) ଭୂଦାନ ଆନ୍ଦୋଳନ ଆରମ୍ଭ କରିଥିଲେ । ସେହିଦିନ ସେ ଏକଶହ ଏକର ଜମି ଦାନ ରୂପେ ଗ୍ରହଣ କରିଥିଲେ । ୧୯୫୫ ମସିହା ଓ୍ୱାର୍ଦ୍ଧା ପାଖରେ ବ୍ରହ୍ମବିଦ୍ୟା ଆଶ୍ରମ ସ୍ଥାପନା କରି ନାରୀ ସଶକ୍ତିକରଣ ଦିଗରେ ପଦକ୍ଷେପ ଗ୍ରହଣ କରିଥିଲେ । ସନ୍ଥ ବିନୋବା ସମଗ୍ର ଦେଶ ବୁଲି ବୁଲି ମାତ୍ର ପାଞ୍ଚ ବର୍ଷ ମଧ୍ୟରେ ୧୫ ଲକ୍ଷ ଏକର ଜମି ପାଇ ଦରିଦ୍ରଙ୍କୁ ବାଣ୍ଟି ଦେଲେ । ୧୯୫୫ ମସିହାରେ ବିନୋବାଜୀଙ୍କ ପାଦ ଓଡ଼ିଶା ମାଟିରେ ପଡ଼ିଲା । ଏଠାରେ ମଧ୍ୟ ତାଙ୍କୁ ୩ ଲକ୍ଷ ଏକର ଜମି ମିଳିବା ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ । ଶ୍ରୀକ୍ଷେତ୍ରରୁ ବ୍ରହ୍ମପୁର ଦେଇ ଚିର ଅବହେଳିତ ବନବାସୀ ବହୁଳ କୋରାପୁଟ ଜିଲ୍ଲାରେ ପହଞ୍ଚିଲେ । ବିନୋବାଜୀଙ୍କ ପଦଯାତ୍ରା କେବଳ ଜମି ନୁହେଁ, ୨୭୦ ଖଣ୍ଡ ଗ୍ରାମବାସୀ ତାଙ୍କୁ ଗ୍ରାମ ଦାନ କରି ଇତିହାସ ରଚିଲେ । ସେ ସବୁ ଗ୍ରାମର ପ୍ରତ୍ୟେକ ଗ୍ରାମବାସୀ ପରସ୍ପର ଦୁଃଖ ସୁଖରେ ସମଭାଗି ହୋଇ ଚଳିବାକୁ ସନ୍ଥଙ୍କ ସମ୍ମୁଖରେ ସଂକଳ୍ପ କଲେ । ସଦାଶିବ ତ୍ରିପାଠୀ ନିଜ ପୈତୃକ ସମ୍ପତ୍ତିରୁ ୫୦ ଏକର ଭୂଦାନ ଯଜ୍ଞରେ ଦାନ ଦେଇ ରାଜ୍ୟ ପାଇଁ ଆଦର୍ଶ ହୋଇଗଲେ । ଦୀର୍ଘ ୪ ମାସ ଧରି କୋରାପୁଟ ଜିଲ୍ଲାର ଗାଁକୁ ଗାଁ ପରିକ୍ରମା କରିଥିଲେ ସନ୍ଥ ବିନୋବାଜୀ । ଏହି ଐତିହାସିକ ଯାତ୍ରାରେ ସନ୍ଥଙ୍କ ସହ ସାମିଲ ଥିଲେ, ମା' ରମାଦେବୀ, ମା' ଅନ୍ନପୂର୍ଣ୍ଣା ଦେବୀ, ମା' ଗୋଦାବରୀ ଦେବୀ, ମା' ଇନ୍ଦୁମତୀ ଦେବୀ, ମାଳତୀ ଦେବୀ, ସଦାଶିବ ତ୍ରିପାଠୀ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ବାଞ୍ଛାନିଧି ମିଶ୍ର, ମହମ୍ମଦ ବାଜୀ, ବିଚିତ୍ରାନନ୍ଦ ମହାନ୍ତି, ବିଶ୍ୱନାଥ ପଟ୍ଟନାୟକ ଓ ଆହୁରି ଅନେକ ।

ଜଣେ ନୈତିକ ଗାନ୍ଧୀବାଦୀ ଭାବରେ ସ୍ୱାଧୀନ ଭାରତକୁ ସମାନତା ଆଧାରିତ ରାଷ୍ଟ୍ର ଭାବରେ ନିର୍ମାଣ କରିବାରେ ବିନୋବା ଆରମ୍ଭ କରିଥିଲେ ଭୂଦାନ ଭଳି ଏକ ସୁଚିନ୍ତିତ କାର୍ଯ୍ୟକ୍ରମ । ୧୭ ବର୍ଷ ଧରି ଭାରତବର୍ଷର ଗାଁକୁ ଗାଁ ଚାଲି ଚାଲି ବିନୋବା ୪୦.୪ ଲକ୍ଷ ଏକର ଜମି ଭୂଦାନ ସୂତ୍ରରେ ଦାନ କରି ଦେଇଥିଲେ । ବିନୋବା ପଦଯାତ୍ରା କରିଥିଲେ ପାଖାପାଖି ୭୬,୫୦୦ ମାଇଲ । ଶରୀରରେ ନଥିଲା କ୍ଲାନ୍ତି, ଦେହରେ ନଥିଲା ଅବଶ । ମନରେ ଥିଲା ଗାନ୍ଧୀଙ୍କ ପରିକଳ୍ପିତ ଭାରତ ନିର୍ମାଣର ଦୁର୍ବାର ଲାଳସାର ସ୍ୱପ୍ନ ଏବଂ ଅଦମ୍ୟ ମନୋବଳ । ତା' ପରେ ବିନୋବାଙ୍କ ଆଧ୍ୟାତ୍ମିକ ଚେତନାର ପୀଠସ୍ଥଳୀ ଓଡ଼ିଶା ଏବଂ ବିହାରରୁ ୧.୬୧ ଲକ୍ଷ ଗ୍ରାମ ମିଳିଥିଲା । ବାଲେଶ୍ୱରର ଦେଉଳ ଗାଁ ହେଉ ତତ୍କାଳୀନ ସମ୍ବଲପୁରର ବରପାଲି ଏବଂ ପଦମପୁରରେ ପହଞ୍ଚିଲା ପରେ ସ୍ୱଇଚ୍ଛାରେ ଓଡ଼ିଆ ଶିକ୍ଷାରେ ପ୍ରମୁଖ ସହାୟକ ଥିଲେ ସମାଜବାଦୀ ଓ ସର୍ବୋଦୟ କର୍ମୀ ଅଲେଖ ପାତ୍ର । ବିନୋବା ପୁଣ୍ୟମାଟି ବରପାଲିରେ ପହଞ୍ଚିଲା ପରେ ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ସ୍ମୃତିପୀଠରେ ଶ୍ରଦ୍ଧା ସୁମନ ଅର୍ପଣ କରିଥିଲେ । ପଦମପୁରରେ ରାଜବୋଡ଼ା ସମ୍ବର ହାଇସ୍କୁଲର ଶ୍ରେଣୀ କୋଠରୀରେ ରହିବା ଭିତରେ 'ଗୀତା' ଉପରେ ହିନ୍ଦୀ ଭାଷାରେ ନିତ୍ୟ ପଠନୀୟ ଲେଖି ଉପସ୍ଥିତ ଲୋକଙ୍କୁ ଉପହାର ଦେଇ ଓଡ଼ିଶା ମାଟିକୁ ସମ୍ମାନ ଜଣାଇଥିଲେ । ବିନୋବାଙ୍କ ରାଜନୈତିକ ଚିନ୍ତନ, ଗାନ୍ଧୀବାଦୀ ଚେତନା ଓ ଆଧ୍ୟାତ୍ମିକ ଅନୁରକ୍ତି ଏବଂ ସାମାଜିକ ପ୍ରଗତି ପାଇଁ ରଚନାତ୍ମକ କାର୍ଯ୍ୟକ୍ରମ ଥିଲା ସ୍ୱାଧୀନ ଭାରତର ଗାନ୍ଧିଜୀଙ୍କ ସ୍ୱର ଏବଂ ସ୍ୱାକ୍ଷର ।

ମହାନ୍ ଦାର୍ଶନିକ ରସେଲ୍ ବିନୋବାଙ୍କୁ ପଦାତିକ ସନ୍ଥ ଏବଂ ମସୀହା ନାମରେ ଅଭିହିତ କରି ୧୯୬୨ରେ ଲଣ୍ଡନରେ ଅନୁଷ୍ଠିତ ପରମାଣୁ ବିରୋଧି ପଦଯାତ୍ରାରେ ଯୋଗ ଦେବାକୁ ନିମନ୍ତ୍ରଣ ଦେଇଥିଲେ । ସନ୍ଥ ବିନୋବାଙ୍କ ପଦଯାତ୍ରାରେ କିଛି ଦିନ ସାମିଲ ହୋଇଥିଲେ ଇଂରାଜୀ କବି ଟେନିସନଙ୍କ ପୌତ୍ର ହଲାମ ଟେନିସନ । ତାଙ୍କ ଭାଷାରେ ଆଧୁନିକ ସମାଜ ପ୍ରଗତିରେ ପରିପୂର୍ଣ୍ଣ କିନ୍ତୁ ଦିବ୍ୟ ଚେତନା ସମୃଦ୍ଧି ସନ୍ଥଙ୍କ ଅନୁପସ୍ଥିତିରେ ଅତ୍ୟନ୍ତ ଗରିବ । ବିନୋବା ହେଉଛନ୍ତି ସେହି ସନ୍ଥ ଯିଏ ଆମକୁ ସଠିକ୍ ମାର୍ଗରେ ଯିବାରେ ପ୍ରଦର୍ଶକ । ୧୯୬୫ ମସିହା ପର୍ଯ୍ୟନ୍ତ ତାଙ୍କ ଭୂଦାନ ଆନ୍ଦୋଳନ ଚାଲିଥିଲା । 'ବ୍ରହ୍ମ ବିଦ୍ୟା ମନ୍ଦିର' ତାଙ୍କ ଦ୍ୱାରା ସ୍ଥାପିତ ଏକ ପ୍ରସିଦ୍ଧ ଅନୁଷ୍ଠାନ ।

ପୂଜ୍ୟ ବିନୋବାଜୀ ଥିଲେ ଜଣେ ଭାଷାବିତ୍ ଓ ସାରସ୍ୱତ ସାଧକ । ବୈଦିକ ଧର୍ମଗ୍ରନ୍ଥ ବେଦ ବେଦାନ୍ତ, ପୁରାଣ, ଉପନିଷଦ, କୋରାନ୍, ବାଇବେଲ୍, ଗୁରୁଗ୍ରନ୍ଥ ସାହେବ, ବୌଦ୍ଧ ଦର୍ଶନ, ଜୈନ ଦର୍ଶନର ଗୁରୁତ୍ୱକୁ ଆହରଣ କରି ସେ ନିର୍ଭୁଲ ଭାବେ ବୁଝାଇ ପାରୁଥିଲେ । ସାମ୍ୟବାଦର ବୈପ୍ଳବିକ ଚିନ୍ତନକୁ ସନ୍ଥ ବିନୋବାଙ୍କ ଭୂଦାନ, ଗ୍ରାମଦାନ, ଗ୍ରାମ ସ୍ୱରାଜ୍ୟ, ସର୍ବୋଦୟ ଆଦିର ସଫଳତା ବଦଳାଇ ଦେଇଥିଲା । ଏହି ମହାନ୍ ନୀତିନିଷ୍ଠ ସନ୍ଥ ୧୯୮୨ ମସିହା ନଭେମ୍ବର ମାସ ୧୫ ତାରିଖରେ ଇହଲୀଳା ସମ୍ବରଣ କରିଥିଲେ । ୧୯୮୩ ମସିହାରେ ବିନୋବାଜୀଙ୍କୁ ମରଣୋତ୍ତର ଭାବେ 'ଭାରତରତ୍ନ ସମ୍ମାନ' ଅର୍ପଣ କରାଗଲା । ଜଣେ ବିଜ୍ଞ ସନ୍ଥ ହିସାବରେ ଗାନ୍ଧିଜୀଙ୍କ ଆଧ୍ୟାତ୍ମିକ ମାନସର ସୁଯୋଗ୍ୟ ଉତ୍ତରାଧିକାରୀଭାବେ ବିନୋବା ଭାବେ ସବୁଦିନ ପାଇଁ ସମାଜରେ ଆଲୋକବର୍ତ୍ତିକା ହୋଇ ରହିଛନ୍ତି ଓ ରହିବେ ମଧ୍ୟ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଗ୍ରାମ/ପୋଅ: ଖୁଚିଂ, ଜିଲ୍ଲା: ମୟୂରଭଞ୍ଜ
ପିନ୍–୭୫୭୦୩୯



# ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପଦ୍ମବେଶ

ମୋନାଲିସା ପାଣୀ

ଯେଉଁ ଜାତିର ସଂସ୍କୃତି ଯେତିକି ସମୃଦ୍ଧ ସେହି ଜାତି ସେତିକି ଉନ୍ନତ ଓ ପ୍ରାଣବନ୍ତ । ଉତ୍ତମ ସଂସ୍କୃତି ଦ୍ୱାରା ଜାତି ବିଶ୍ୱ ଦରବାରରେ ସମ୍ମାନିତ ହୁଏ । ଠିକ୍ ସେହିପରି ଆମ ଭାରତୀୟ ସଂସ୍କୃତି, ଯାହା ସ୍ୱୟଂ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବିନା ଅଚଳ, ନିଶ୍ଚଳ । ତାଙ୍କ ପାଇଁ ବିଶ୍ୱ ଦରବାରରେ ସମଗ୍ର ଓଡ଼ିଆ ଜାତି ପରିଚିତ, ଗୌରବାନ୍ୱିତ ଓ ସମ୍ମାନିତ ହୁଏ ।

ଭାରତୀୟ ସଂସ୍କୃତି ହେଉଛି ଆର୍ଯ୍ୟ-ଦ୍ରାବିଡ଼-ଶବର ସଂସ୍କୃତିର ଏକ ସମନ୍ୱିତ ରୂପ । ଏହି ସଂସ୍କୃତିର ବିକାଶ ଶ୍ରୀଜଗନ୍ନାଥଙ୍କ ସହ ନିବିଡ଼ ଭାବେ ସଂଶ୍ଳିଷ୍ଟ ହୋଇ ଏକ ସ୍ୱତନ୍ତ୍ର ଧାରା ଭାବେ ପରିଣତ ହେବା ହେତୁ ଏହା ଜଗନ୍ନାଥ ସଂସ୍କୃତି ରୂପେ ପରିଗଣିତ । ଜଗନ୍ନାଥ ସଂସ୍କୃତିର ମୂଳରେ ରହିଛି ଜଗନ୍ନାଥ ଚେତନା । ଏହି ଚେତନା ହିଁ ସମଗ୍ର ବିଶ୍ୱକୁ ଭାରତୀୟ ସଂସ୍କୃତିର ଶ୍ରେଷ୍ଠ ଅବଦାନ ଓ ମାନବୀୟ ସଂସ୍କୃତିର ଚରମ ଅଭିବ୍ୟକ୍ତି । ଜଗନ୍ନାଥ ଚେତନାରେ ଦୁଷ୍କୃତି ନାହିଁ, ଗ୍ଳାନି ମଧ୍ୟ ନାହିଁ, ଅଛି ଏକ ଅତୁଳନୀୟ ବ୍ୟାପକତା । ଯେଉଁଥିରେ ପ୍ରତିଟି ମାନବାତ୍ମା ଲାଭ କରେ ଅପରିସୀମ ତୃପ୍ତି ଏବଂ ଜୀବନ୍ମୁକ୍ତିର ସନ୍ଧାନ । ଏହା ହିଁ ହେଉଛି ଜଗନ୍ନାଥ ଚେତନା ତଥା ସଂସ୍କୃତିର ବୈଶିଷ୍ଟ୍ୟ ।

ଓଡ଼ିଶାର ଧର୍ମ, ସଂସ୍କୃତି, ଇତିହାସ, ସାହିତ୍ୟ, ଶିଳ୍ପ ଭାସ୍କର୍ଯ୍ୟ ତଥା ବ୍ୟକ୍ତିଗତ, ପାରିବାରିକ ଓ ସାମାଜିକ ଜୀବନର ପ୍ରାଣକେନ୍ଦ୍ର ହେଉଛନ୍ତି ମହାପ୍ରଭୁ ଶ୍ରୀଜଗନ୍ନାଥ । ସେ ହେଉଛନ୍ତି ଅନନ୍ତ, ଅକ୍ଷୟ, ଅବ୍ୟୟ, ଅବିନଶ୍ୱର,



ନିରାକାର, କ୍ଷରଅକ୍ଷର, ସାକାର, ସଗୁଣ ନିର୍ଗୁଣ, ସର୍ବାନ୍ତର୍ଯ୍ୟାମୀ ଓ ଦାରୁବ୍ରହ୍ମ । ତାଙ୍କର ସ୍ୱରୂପ ଅଚିନ୍ତ୍ୟ, ଅବ୍ୟକ୍ତ ଓ ରହସ୍ୟମୟ । ସୃଷ୍ଟିର କେଉଁ ଆବହମାନ କାଳରୁ ସେ ଦିବ୍ୟ ନୀଳାଚଳରେ ନିତ୍ୟ-ଲୀଳାରତ । ବିଶ୍ୱର ସକଳ ଧର୍ମ ବିଶ୍ୱାସ ଓ ଧର୍ମ ଭାବନାର ଆଧାର ରୂପେ ପ୍ରଭାବିତ ହୋଇ ସେ ସର୍ବପ୍ରାଚୀନ ଗଣଦେବତା ରୂପେ ମହିମା ମଣ୍ଡିତ ।

ସର୍ବ ଦର୍ଶନ ସାର ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ଦିବ୍ୟ ନୀଳାଚଳରେ ସକଳ ଧର୍ମଧାରା, ମତବାଦ ଓ ସିଦ୍ଧାନ୍ତର

ସମନ୍ୱୟ ରୂପେ ପ୍ରତିଭାତ । ମହାପ୍ରଭୁ ଏ ଦିବ୍ୟ ନୀଳାଚଳ ଧାମରେ ଅନାଦି କାଳରୁ ଦାରୁବ୍ରହ୍ମ ରୂପେ ଲୀଳା ସରଂଚନା କରୁଛନ୍ତି । ବେଦ, ପୁରାଣ, ଇତିହାସ, ଜ୍ଞାନୀ, ସିଦ୍ଧସାଧକ ସଭିଏଁ ତାଙ୍କ ଲୀଳାର ଆଦ୍ୟାନ୍ତ ନିର୍ଣ୍ଣୟ କରିବାରେ ଅସମର୍ଥ । କିନ୍ତୁ ଏହି ଭକ୍ତାଧୀନ ଦାରୁବ୍ରହ୍ମ ଯୁଗେ ଯୁଗେ ନିତ୍ୟ ନୂତନ ସ୍ୱରୂପରେ ପ୍ରଭାବିତ ହୋଇଛନ୍ତି । ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟଭରା ପରମବ୍ରହ୍ମ ଶ୍ରୀଜଗନ୍ନାଥ ମହାପ୍ରଭୁ ଦିବ୍ୟଲୀଳାରେ ବିଭିନ୍ନ ବେଶ ଧାରଣ କରି ତାଙ୍କର ଅଗଣିତ ଆଶ୍ରିତ ଜନଙ୍କୁ ଗତି ଓ ମୁକ୍ତି ପ୍ରଦାନ କରୁଛନ୍ତି ।

ଭକ୍ତମାନଙ୍କ ମନୋରଂଜନ ନିମିତ୍ତ ବଳିଆରଭୁଜ ନିତ୍ୟନୈମିତ୍ତିକ ସେବା ପୂଜାରେ ଅବକାଶ ବେଶ, ବଡ଼ ସିଂହାର ବେଶ,ସୁନା ବେଶ, ପଦ୍ମ ବେଶ, ଗଜ ଉଦ୍ଧାରଣ ବେଶ, ରଘୁନାଥ ବେଶ, ଚନ୍ଦନଲାଗି ବେଶ, ଗଜାନନ(ହାତୀ) ବେଶ, ଘୋଡ଼ଲାଗି ବେଶ, ନବାଙ୍କ ବେଶ, ବନଭୋଜି ବେଶ, କାଳୀୟଦଳନ ବେଶ, ପ୍ରଳମ୍ବାସୁର ବଧ ବେଶ, କୃଷ୍ଣ ବଳରାମ ବେଶ, ରାଧାଦାମୋଦର ବେଶ, ଲକ୍ଷ୍ମୀ ନାରାୟଣ (ଠିଆ କିଆ) ବେଶ, ବାଙ୍କଚୂଡ଼ା ବେଶ, ଆଡ଼କିଆ ବେଶ, ଡାଳିକିଆ(ଲକ୍ଷ୍ମୀ ନୃସିଂହ) ବେଶ, ନାଗାର୍ଜୁନ ବେଶ, ରାଜରାଜେଶ୍ୱର ବେଶ, ବାମନ ବେଶ, ଶ୍ରାଦ୍ଧ ବେଶ, ଚାଚେରୀ ବେଶ, ନବଯୌବନ ବେଶ, ସନ୍ଧ୍ୟା ବେଶ, ତଡ଼ପ-ଉତ୍ତରୀ ବେଶ, ଟାହିଆ ଲାଗି ବେଶ, ସେନାପଟା ବେଶ, ମକର-ଚୌରାଶି ବେଶ, ଗିରିଗୋବର୍ଦ୍ଧନ ବେଶ ଓ ପୁଷ୍ୟାଭିଷେକ ପରି ବେଶ ପାରମ୍ପରିକ ରୀତିରେ ସଂପନ୍ନ ହୋଇଥାଏ । ତନ୍ମଧ୍ୟରୁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପଦ୍ମବେଶ ଅତ୍ୟନ୍ତ ଭାବମୂଳକ ଓ ଦୁର୍ଲଭ ।

କୋଟି ବ୍ରହ୍ମାଣ୍ଡର ସ୍ରଷ୍ଟା ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ହେଉଛନ୍ତି ପୁରୁଷୋତ୍ତମ । ବେଦରେ ସେ ପରମ ପୁରୁଷ, ପୁରାଣରେ ସେ ପୁରୁଷୋତ୍ତମ, ତ୍ରେତୟା ଯୁଗରେ ସେ ମର୍ଯ୍ୟାଦା ପୁରୁଷୋତ୍ତମ, ଦ୍ୱାପର ଯୁଗରେ ଲୀଳା ପୁରୁଷୋତ୍ତମ, ଯଜ୍ଞ ପୀଠରେ ସେ ଯଜ୍ଞ ପୁରୁଷ ଏବଂ ନୀଳାଚଳରେ ତାଙ୍କ ନାମ ଧାମ ଉଭୟ ପୁରୁଷୋତ୍ତମ ବୋଲି ଅଭିବ୍ୟକ୍ତ ଅଛି ।

**ପଦ୍ମବେଶ**

ଶ୍ରୀଜଗନ୍ନାଥ ସକଳ ରୂପ ଅରୂପର ଆଧାର । ତାଙ୍କର ବେଶ ମଧ୍ୟ ବହୁଳ ତଥା ବିଭିନ୍ନତାରେ ପରିପୂର୍ଣ୍ଣ । ପୁରୀ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପଦ୍ମବେଶ ଭାବମୂଳକ ବେଶ ଅଟେ । କେତେକ ଗବେଷକଙ୍କ ମତାନୁଯାୟୀ ଏହି ବେଶର ପ୍ରବର୍ତ୍ତକ ହେଉଛନ୍ତି ବଡ ଛତା ମଠର ସନ୍ଥ ରଘୁବର ଦାସ(ସପ୍ତଦଶ ଶତାବ୍ଦୀ) ।

ସକଳ ଜ୍ଞାନ, ସାଧନା, କର୍ମ, ଭକ୍ତ, ବୈରାଗ୍ୟ, ଭାବ ଓ ପବିତ୍ରତାର ପ୍ରତୀକ ହେଉଛି ପଦ୍ମ । ଶ୍ରୀଜଗନ୍ନାଥ ସ୍ୱୟଂ ସକଳ ହୃଦୟ ପଦ୍ମର ପ୍ରକାଶକ ତଥା ପ୍ରସ୍ଫୁଟକ । ପଦ୍ମ ବେଶ ସଂପର୍କରେ ଥିବା କିମ୍ବଦନ୍ତୀ ଅନୁଯାୟୀ- ଓଡ଼ିଶାଠାରୁ ଶହ ଶହ ମାଇଲ୍ ଦୂରରେ ଥିଲେ ଜଣେ ହିନ୍ଦୀଭାଷୀ ସାଧୁ । ତାଙ୍କର ନାମ ଥିଲା ମନୋହର ଦାସ । ଏକଦା ମହାତ୍ମା ମନୋହର ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ଉଦ୍ଦେଶ୍ୟରେ ଶ୍ରୀକ୍ଷେତ୍ରକୁ ଆଗମନ କରିଥିଲେ । ଦୀର୍ଘ ଦିନ ପାଦରେ ଚାଲି ଚାଲି ଅନେକ ଜଂଗଲ, ପାହାଡ଼, ନଈ, ରାସ୍ତା ଅତିକ୍ରମ କରି ଶାରୀରିକ ପୀଡ଼ା ସତ୍ତ୍ୱେ ସେ ଅବିଚଳିତ ଭାବେ ଆଗେଇ ଚାଲିଥାନ୍ତି । ପଥ ମଧ୍ୟରେ ରାତ୍ରି ହୋଇଗଲେ କୌଣସି ମନ୍ଦିର, ମଠ, ଆଶ୍ରମ କିମ୍ବା ବୃକ୍ଷ ତଳେ ଆଶ୍ରୟ ନେଇ ତତ୍ ପରଦିନ ପୁନଶ୍ଚ ଶ୍ରୀକ୍ଷେତ୍ର ଅଭିମୁଖେ ଗମନ କରୁଥାନ୍ତି । ଦିନେ ପଦବ୍ରଜରେ ଯାଉଥିବା ସମୟରେ ସାଧୁଙ୍କୁ ଭୀଷଣ ଶୋଷ ହେଲା, ପାଖରେ କୌଣସି ଗ୍ରାମ କିମ୍ବା ଜଳାଶୟ ନଥିଲା । କ'ଣ କରିବେ ଏମିତି ଚିନ୍ତା କରି ମନୋହରଜୀ ଆଗକୁ ଚାଲୁଥାନ୍ତି । କିଛି ବାଟ ଅତିକ୍ରମ କରିବା ପରେ ହଠାତ୍ ତାଙ୍କର ଦୃଷ୍ଟିଗୋଚର ହେଲା ଆଗରେ ଥିବା ଗୋଟିଏ ଗ୍ରାମ ଓ ପାଖରେ ଏକ ଜଳାଶୟ । ମନୋହରଜୀ ଅତ୍ୟନ୍ତ ଆନନ୍ଦିତ ହୋଇଗଲେ । ମନଭରି ଜଳାଶୟରୁ ଆଂଜୁଳା ଆଂଜୁଳା କରି ପାଣି ପିଇ ସନ୍ତୁଷ୍ଟ ହୋଇ ଉପରକୁ ମୁହଁ ଉଠାଇବା ବେଳକୁ ଦେଖିବାକୁ ପାଇଲେ, ପୁଷ୍କରିଣୀରେ ଅନେକ ପଦ୍ମଫୁଲ ଫଟିଛି । ମନୋହର ଦାସ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଗଲେ, କାରଣ ଶୀତଦିନରେ ପଦ୍ମପୁଷ୍ପ ଫୁଟିବା ସମ୍ଭବ

ନୁହେଁ । ସେ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କୁ ମନେମନେ ସ୍ମରଣ କରି ପ୍ରଭୁଙ୍କ ନିମିତ୍ତ ବହୁ କଷ୍ଟରେ ପୁଷ୍କରିଣୀରେ ଫୁଟିଥିବା ପଦ୍ମଫୁଲଗୁଡ଼ିକୁ ତୋଳି, ତାକୁ ନିଜ ମଇଳା ଗାମୁଛାରେ ବାନ୍ଧି ଶ୍ରୀକ୍ଷେତ୍ର ଅଭିମୁଖେ ଅଗ୍ରସର ହେଲେ । ଏହିସବୁ ପଦ୍ମଫୁଲ ଦାରୁବ୍ରହ୍ମରୂପୀ ମହାପ୍ରଭୁଙ୍କୁ ଲାଗି କରିବେ ଚିନ୍ତା କରି ଚାଲିଲେ ।

ମାଘ ମାସ ଅମାବାସ୍ୟା ଦିନ ଶ୍ରୀକ୍ଷେତ୍ରରେ ପହଁଚି ସିଧାସଳଖ ଶ୍ରୀମନ୍ଦିରରେ ପ୍ରବେଶ କଲେ । ଗରୁଡ଼ ସ୍ତମ୍ଭ ନିକଟରେ ଦଣ୍ଡାୟମାନ ହୋଇ ରତ୍ନ ସିଂହାସନସ୍ଥ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦର୍ଶନ କରି ମନୋହର ଅତ୍ୟନ୍ତ ଭାବବିହ୍ୱଳ ହୋଇଯାଇଥିଲେ । ଜଗମୋହନରେ ଉପସ୍ଥିତ ଥିବା ଜନୈକ ସେବକଙ୍କୁ ମଇଳା ଗାମୁଛାରେ ବନ୍ଧା ଯାଇଥିବା ପଦ୍ମଫୁଲଗୁଡ଼ିକୁ ଅତି ଯତ୍ନରେ ବଢେଇଦେଇ ଉକ୍ତ ପୁଷ୍ପସବୁକୁ ଶ୍ରୀଜୀଉମାନଙ୍କ ଚରଣାବିନ୍ଦରେ ଲାଗି କରିବା ପାଇଁ କାକୁତି ମିନତି ହେଲେ । କିନ୍ତୁ ଏହି ପୁଷ୍ପଗୁଡ଼ିକୁ ମଇଳା ଗାମୁଛାରେ ବନ୍ଧା ହୋଇଥିବା ଦେଖି ସେବକ ଜଣଙ୍କ କ୍ରୋଧାନ୍ୱିତ ହୋଇ ସେ ସବୁକୁ ତଳେ ଫିଙ୍ଗିଦେଲେ । ତାଙ୍କୁ ବହୁ ତିରସ୍କାର କରି କହିଲେ ଯେଉଁଠି ରାଜ୍ୟାଧିରାଜ ଶ୍ରୀଜଗନ୍ନାଥଙ୍କୁ ପ୍ରତ୍ୟହ ସଦ୍ୟ ପ୍ରସ୍ଫୁଟିତ ବିଭିନ୍ନ ସୁଗନ୍ଧିତ ପୁଷ୍ପ ଓ ତୁଳସୀ ଲାଗି ହେଉଛି, ସେଠାରେ ତୁ ଏଇ ଶୁଖିଲା ଫୁଲ ଲାଗି ହେବାକୁ ଆଣିଛୁ ? ଏହା ତ ଖୁବ୍ ଅପରାଧ ଓ ପାପ ମଧ୍ୟ । ଏହିପରି ବହୁ ଭର୍ତ୍ସନା କରି ମନୋହରଙ୍କୁ ଶ୍ରୀମନ୍ଦିରରୁ ବିତାଡ଼ିତ କରିଦେଇଥିଲେ । ଏହା ପରେ ଅତି ଦୁଃଖ ଓ ଅପମାନରେ ମ୍ରିୟମାଣ ହୋଇ ଗାମୁଛା ସହ ସେହି ପଦ୍ମ ପୁଷ୍ପଗୁଡ଼ିକୁ ତଳୁ ଗୋଟାଇ ଶ୍ରୀମନ୍ଦିରରୁ ବାହାରି ଆସି ସିଂହଦ୍ୱାରସ୍ଥ ବଡ଼ଛତା ମଠ ନିକଟରେ ଜଗନ୍ନାଥଙ୍କୁ ସ୍ମରଣ କରି ମୂର୍ଚ୍ଛିତ ହୋଇପଡ଼ିଲେ । ଭାବଗ୍ରାହୀ ପ୍ରଭୁ ଜଗନ୍ନାଥ ଭକ୍ତର ଦୁଃଖକୁ ସହ୍ୟ କରିପାରିଲେ ନାହିଁ । ସେଦିନ ରାତ୍ରିରେ ସ୍ୱୟଂ ମହାପ୍ରଭୁ ସ୍ୱପ୍ନାଦେଶରେ ଗଜପତିଙ୍କୁ କହିଲେ– ହେ ରାଜା ! ମୋର ଜନୈକ ପରମ ଭକ୍ତ ତୋ ସେବକଙ୍କ ଦ୍ୱାରା ଅପମାନିତ ହୋଇ ଦୁଃଖରେ ସିଂହଦ୍ୱାର ନିକଟରେ ମୂର୍ଚ୍ଛିତ ହୋଇ ପଡିଛି । ସେ ଆଣିଥିବା ସେହି ପଦ୍ମ ପୁଷ୍ପରେ ହିଁ କେବଳ ଆଜି ରାତ୍ର ମୋର ବଡ଼ ସିଂହାର ବେଶ ହେବ ଓ ପଦ୍ମ ଚାଉଳରେ କ୍ଷୀରି ଭୋଗ କରି ସେହି ସାଧୁଙ୍କୁ ସେବନ କରାଇ ତାଙ୍କର ଜୀବନ ରକ୍ଷା କର । ସ୍ୱପ୍ନାବିଷ୍ଟ ହୋଇ ଗଜପତି ମହାରାଜା ସଂଗେ ସଂଗେ ସିଂହଦ୍ୱାର ନିକଟକୁ ବିଜେ କଲେ ଓ ସେବକମାନଙ୍କୁ ଡାକି ମହାପ୍ରଭୁ ସ୍ୱୟଂ ଇଚ୍ଛା କରିଥିବାରୁ ସାଧୁଙ୍କ ନିକଟରେ ପଡିଥିବା ସବୁ ପଦ୍ମପୁଷ୍ପକୁ ସେମାନଙ୍କ ହାତକୁ ବଢାଇଦେଇ ଆଜି ବଡ଼ ସିଂହାର ବେଶରେ ଏ ସମସ୍ତ ପୁଷ୍ପ ଲାଗି କରିବାକୁ ନିର୍ଦ୍ଦେଶ ଦେଲେ । ସେ ଦିନ ରାତ୍ରରେ ଠାକୁରମାନେ ବଡ଼ସିଂହାର ବେଶ କେବଳ ପଦ୍ମପୁଷ୍ପରେ ଭୂଷିତ ହେଲେ । ଯେଉଁ ଫୁଲ ଅଲୋଡ଼ା ହୋଇଥିଲା, ତାହା ମହାପ୍ରଭୁଙ୍କ ଶ୍ରୀଅଂଗରେ ଲାଗି ହେବା ପରେ ସେହି ପଦ୍ମଫୁଲ ସଦ୍ୟ ସୁଗନ୍ଧିତ ପ୍ରସ୍ଫୁଟିତ ପୁଷ୍ପ ପରି ଶୋଭା ପାଇଲା । ଗଜପତି ଓ ସମସ୍ତ ସେବକ ମହାପ୍ରଭୁଙ୍କର ଏ ପ୍ରକାର ମହିମା ତଥା ବେଶରେ ଆଶ୍ଚର୍ଯ୍ୟ ହୋଇ ସାଧୁ ମନୋହରଙ୍କୁ ସସମ୍ମାନେ ଶ୍ରୀମନ୍ଦିର ରତ୍ନସିଂହାସନ ନିକଟକୁ ପାଛୋଟି ନେଲେ ଓ ସ୍ୱୟଂ ମହାପ୍ରଭୁଙ୍କୁ ଏ ପଦ୍ମବେଶରେ ଦେଖି ଖୁବ୍ ଆନନ୍ଦିତ ହେଲେ ।

ଭକ୍ତ ପ୍ରବର ମନୋହର ଦାସଙ୍କର ଶ୍ରୀଜଗନ୍ନାଥଙ୍କୁ ପଦ୍ମପୁଷ୍ପ ଅର୍ପଣ କିମ୍ବଦନ୍ତୀମୂଳକ ଆଖ୍ୟାନ କ୍ରମେ ଏହି ବେଶରେ ଜଗନ୍ନାଥ ମହାପ୍ରଭୁ ସୋଲରେ ନିର୍ମିତ ପଦ୍ମପୁଷ୍ପ ପରିହିତ ହୋଇଥାଆନ୍ତି । ଶୀତ ଋତୁରେ ପଦ୍ମପୁଷ୍ପର ଅଭାବ ହେତୁ ଶ୍ରୀଜୀଉମାନଙ୍କୁ ସଜ୍ଜିତ କରିବାର ଅଭିଳାଷକୁ ପୂର୍ଣ୍ଣ କରିବା ପାଇଁ ତଥା ପୂର୍ବ ପରମ୍ପରା ଓ ଭକ୍ତର ଭାକ୍ତିକ ଚିନ୍ତନକୁ ପ୍ରମାଣ କରିବା ପାଇଁ ସୋଲ, ଜରି ଇତ୍ୟାଦିରେ ପଦ୍ମପୁଷ୍ପ ତିଆରି ହୋଇ ମହାପ୍ରଭୁଙ୍କ ବେଶରେ ମଣ୍ଡିତ କରାଯାଇଥାଏ ।

ଉଲ୍ଲେଖଯୋଗ୍ୟ ଯେ ବର୍ଷକରେ ଏହି କେବଳ ଗୋଟିଏ ଦିନ ମହାପ୍ରଭୁଙ୍କ ପଦ୍ମ ବେଶ ଥାଇ ପହୁଡ଼ ହୁଅନ୍ତି ।

ପୂର୍ବ ପ୍ରଚଳିତ ପରମ୍ପରା ଅନୁଯାୟୀ ମାଘ ମାସ ଅମାବାସ୍ୟା ପରେ ବସନ୍ତ ପଂଚମୀ ମଧ୍ୟରେ ଶ୍ରୀଜୀଉଙ୍କର ପଦ୍ମବେଶ ଅନୁଷ୍ଠିତ ହୋଇଥାଏ ।

ପ୍ରତିବର୍ଷ ସିଂହଦ୍ୱାର ସଂଲଗ୍ନ ବଡ଼ଛତା ମଠ ତରଫରୁ ଏହି ବେଶର ନିର୍ମାଣର ସମସ୍ତ ଖର୍ଚ୍ଚ ବହନ କରାଯାଇଥାଏ । ସୋଲ, ଜରି, କଦଳୀପଟ, କନା, କଇଥ ଅଠା ଓ ରଂଗ ସାହାଯ୍ୟରେ ପଦ୍ମପୁଷ୍ପ, କତିମାନ କୁଶଳୀ ପାରମ୍ପରିକ କାରିଗରମାନଙ୍କ ଦ୍ୱାରା ନିର୍ମିତ ହୋଇ ଠାକୁରମାନଙ୍କୁ ଲାଗି କରାଯାଇଥାଏ । ମୁଖ୍ୟତଃ ସୋଲରେ ତିଆରି ପଦ୍ମ ପାଖୁଡ଼ାରେ ତିନୋଟି ମୁଖା ତିଆରି ହୁଏ । ସେହି ମୁଖା ସହିତ ଚୂଳ,କିରୀଟ ଲାଗିଥାଏ । ହସ୍ତରେ କଦମ୍ବ ଫୁଲର କରପଲ୍ଲବ ଶୋଭା ପାଇଥାଏ । ଉଲ୍ଲେଖଯୋଗ୍ୟ ଯେ, ବଡ଼ ସିଂହାର ନୀତିରେ ଏହି ବେଶ ହୋଇ ତା' ପରଦିନ ସକାଳ ଅର୍ଥାତ୍ ମଂଗଳ ଆଳତି ପର୍ଯ୍ୟନ୍ତ ରହିଥାଏ । ମଂଗଳ ଆଳତିରେ ଦର୍ଶନାର୍ଥୀମାନେ ମହାପ୍ରଭୁଙ୍କର ଏହି ଦିବ୍ୟ ଓ ଦୁର୍ଲଭ ବେଶ ଦର୍ଶନ କରି ନିଜକୁ ସୌଭାଗ୍ୟ ମନେ କରିଥା'ନ୍ତି ।

**ସହାୟକ ଗ୍ରନ୍ଥସୂଚୀ**

୧. ଶ୍ରୀଜଗନ୍ନାଥ, ଜଗନ୍ନାଥ ପ୍ରତିଷ୍ଠାରେ ସଂସ୍କୃତିର ପରାକାଷ୍ଠା- ବେଣୀ ମାଧବ ପାଢୀ, ଓଡିଶା ସାହିତ୍ୟ ଏକାଡେମୀ, ୨୦୧୬ ପୃ-୧୨୫

୨. ପୁରୁଷୋତ୍ତମ ଜଗନ୍ନାଥ, ପୁରୁଷୋତ୍ତମ ଜଗନ୍ନାଥଙ୍କ ରଘୁନାଥ ବେଶ- ଅନ୍ତର୍ଯ୍ୟାମୀ ମିଶ୍ର, ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ୨୦୧୧ ପୃ-୧୭୫ ।

୩. ଶ୍ରୀଜଗନ୍ନାଥ ବେଶ ବତିଶି, ସମ୍ବାଦ- ସମ୍ପାଦକ ସୌମ୍ୟ ରଂଜନ ପଟ୍ଟନାୟକ ।

୪. ଶ୍ରୀମନ୍ଦିର, ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥ ସଂସ୍କୃତି ସମାଚାର-୨୦୧୩ ଫେବୃଆରୀ, ସପ୍ତମ ସଂଖ୍ୟା ପ୍ରଥମବର୍ଷ ।

ଗ୍ରାମ-ପୋ.ଅ.- ରାଧାଦେଈପୁର
ଜିଲ୍ଲା- ଢେଙ୍କାନାଳ, ପିନ୍- ୭୫୯୦୧୪



# ବରଦେ ବୀଣାବାଦିନୀ

**ଗିରିଜା ଶଙ୍କର ଦାସ**

ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଯାହା, ବା ଯିଏ ପାଖରେ ରହିଥାଏ, ତାହାକୁ ବିଦ୍ୟା କୁହାଯାଏ । ଏହାକୁ ସ୍ୱାହା ଓ ସ୍ୱଧା କୁହାଯାଇଛି । ଜନ୍ମ ନେବା କ୍ଷଣି ଶିଶୁର କାନ କୌଣସି



ଅଚିହ୍ନା ବା ଅମୂଲ୍ୟ ଶକ୍ତିର ସ୍ୱରରେ ବାନ୍ଧି ଦିଆଯାଇଥାଏ । ତାକୁ ଏପରି ଜଣାପଡିଥାଏ ଯେ ଏହି ସଂସାରରେ ଯାହା ବି କିଛି ନିହିତ ରହିଛି, ତାହା ସ୍ୱର ହିଁ ହୋଇଥାଏ । ଜ୍ଞାନ ଅର୍ଥାତ୍ ବିଦ୍ୟାକୁ ମନୁଷ୍ୟର ପ୍ରାରବ୍ଧ ବୋଲି ବିଶ୍ୱାସ କରାଯାଏ । ହିନ୍ଦୁ ଧର୍ମ ଦର୍ଶନରେ ସରସ୍ୱତୀଙ୍କୁ ଜ୍ଞାନର ଅଧିଷ୍ଠାତ୍ରୀ ଦେବୀ ବୋଲି କୁହାଯାଇଛି । ଦିବ୍ୟଶକ୍ତି ଯାହାଙ୍କ ପାଖରେ ଥାଏ ତାଙ୍କୁ ଦେବ, ସ୍ତ୍ରୀ ଲିଙ୍ଗ ବିଶେଷରେ ଦେବୀ କୁହାଯାଏ । ଏହି ଦିବ୍ୟଶକ୍ତି ହିଁ ବିଦ୍ୟା, ବୁଦ୍ଧି, ଜ୍ଞାନ, ଧୀଶକ୍ତି ଆଦିର ପ୍ରତିନିଧିତ୍ୱ କରେ । ଅର୍ଥାତ୍ ସେହି ଶକ୍ତି ଯାହାକି ଜୀବମାନଙ୍କୁ ବିଦ୍ୟା, ବୁଦ୍ଧି ଓ ବିବେକ ମାଧ୍ୟମରେ ଜ୍ଞାନ ପ୍ରାପ୍ତ କରାଇଥାଏ । ଜ୍ଞାନ ପ୍ରାପ୍ତି ପାଇଁ ମନୁଷ୍ୟକୁ ଯେତେକ ଶକ୍ତି ପ୍ରାପ୍ତ ଅଛି, ତାହା ଅନ୍ୟ କୌଣସି ପ୍ରାଣୀକୁ ପ୍ରାପ୍ତ ନାହିଁ । ଯେତେବେଳେ ସୃଷ୍ଟିର ଶୁଭାରମ୍ଭ ହେଲା ସେତେବେଳେ ସଂସାରରେ ମୌନ ବା ନୀରବତା ଛାଇ ରହିଥିଲା । ଚାରିଆଡେ ସ୍ତବ୍ଧତା । ସୃଷ୍ଟିକର୍ତ୍ତା ବ୍ରହ୍ମା ଜ୍ଞାନର ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀଙ୍କୁ ଧ୍ୟାନ କଲେ । ଦେବୀଙ୍କର ବୀଣାର ତାର ହଲିବା କ୍ଷଣି ଜଳ, ସ୍ଥଳ ଓ ନଭ ବା ଆକାଶରେ କମ୍ପନ ହେଲା । ସମସ୍ତଙ୍କୁ ବାଣୀ ଶ୍ରବଣ ଶକ୍ତି, ପୁସ୍ତକ ରୂପରେ ଜ୍ଞାନ ଓ ସ୍ଫଟିକ ରୂପରେ ଗତି ମିଳିଗଲା । ଦେବୀ ଶାସ୍ତ୍ରରେ ଉଲ୍ଲେଖ ରହିଛି ଯେ ମାଘମାସ ଶୁକ୍ଳପକ୍ଷର ପଞ୍ଚମୀ ତିଥି ଅର୍ଥାତ ବସନ୍ତ ପଞ୍ଚମୀକୁ ହିଁ ସଂଗୀତ, ସ୍ୱର, କାବ୍ୟ, କଳା, ଶିଳ୍ପ, ରସ, ଛନ୍ଦ, ଅଳଙ୍କାର ଓ ଶବ୍ଦାତ୍ମକ ବେଦାନ୍ତ ଶକ୍ତି ଜୀବମାନଙ୍କୁ ପ୍ରାପ୍ତ ହେଲା । ଏହି ପର୍ବ ଉପବାସର ନୁହେଁ ବରଂ ଅଭିବ୍ୟକ୍ତିର ପର୍ବ ଅଟେ । ମନୁଷ୍ୟର ସୃଜନର ମଧ୍ୟ ପାଞ୍ଚଟି ତତ୍ତ୍ୱ ରହିଛି । ପାର୍ବତୀ, ରାଧା, ଲକ୍ଷ୍ମୀ, ସରସ୍ୱତୀ ଓ ଗାୟତ୍ରୀ ପାଞ୍ଚଟି ଶକ୍ତି ସୃଷ୍ଟିର ଶକ୍ତି ଅଟେ । ଋଷି ଯାଜ୍ଞବଲ୍କ୍ୟଙ୍କର

ସ୍ମରଣ ଶକ୍ତି ମଧ୍ୟ ସରସ୍ୱତୀଙ୍କ ବରଦାନରେ ଫେରିଆସିଛି । ଗୁରୁ ବୃହସ୍ପତିଙ୍କୁ ମଧ୍ୟ ଏହି ଶକ୍ତି ଦ୍ୱାରା ବିଦ୍ୟା ପ୍ରାପ୍ତି ହୋଇଛି । ଅନ୍ୟ ଏକ ମତରେ ଭଗବାନ ଶ୍ରୀରାମ ରାମରାଜ୍ୟର ଆଧାରଶିଳା ରଖିବା ପୂର୍ବରୁ ଦେବୀ ସରସ୍ୱତୀଙ୍କ ଆରାଧନା କରିଥିଲେ । ଦେବୀ ସରସ୍ୱତୀଙ୍କୁ ହିଁ ଅପରାଜିତା କୁହାଯାଇଛି । ସୂର୍ଯ୍ୟବଂଶୀ ରାମଙ୍କର ଇକ୍ଷ୍ୟାକୁ କୁଳର ସେ ଅଧିଷ୍ଠାତ୍ରୀ ଦେବୀ ଅଟନ୍ତି । ଏହି ସମସ୍ତ ରୂପରେ ଚନ୍ଦ୍ରମାଙ୍କୁ ପୂଜା କରାଯାଇଥାଏ । ଚନ୍ଦ୍ରମା ଶୀତଳତାର ପ୍ରତୀକ ଅଟନ୍ତି । ଶରତ ଋତୁ ମଧ୍ୟ ଏହାର ପ୍ରତୀକ ଅଟେ । ଚନ୍ଦ୍ରମା ଆଧାରିତ ସମସ୍ତ ପର୍ବ ଏହି ଶରତ ଋତୁରେ ହୋଇଥାଏ । ଏହା ପଛରେ ମନ୍ତବ୍ୟ ଏପରି ରହିଥିବ ଯେ ଭଗବାନଙ୍କୁ ପ୍ରାର୍ଥନା କରିବା ଯେ ଶୀତର ପ୍ରକୋପ ଏପରି ନ ହେଉ ଯେ ତାକୁ ସହ୍ୟ କରି ନ ହେଉ । କିନ୍ତୁ ଏ ସମସ୍ତ ପତ୍ରରେ ଆଉ ଏକ କଥା ଦେବୀ ଭାଗବତରେ ରହିଛି । ଦେବୀ ଭାଗବତ ଅନୁସାରେ ସରସ୍ୱତୀ ଦେବୀଙ୍କର ପ୍ରକଟ ଭଗବାନ ଶ୍ରୀକୃଷ୍ଣଙ୍କର ଜିହ୍ୱାର ଅଗ୍ରଭାଗରୁ ହୋଇଛି । ସେ ସରସ୍ୱତୀଙ୍କୁ ଭଗବାନ ନାରାୟଣଙ୍କୁ ସମର୍ପିତ କରିଦେଲେ । ସର୍ବପ୍ରଥମେ ଶ୍ରୀକୃଷ୍ଣ ହିଁ ସଂସାରରେ ଦେବୀ ସରସ୍ୱତୀଙ୍କର ପୂଜା ପ୍ରଚାରିତ କଲେ । ଦେବୀ ପୁରାଣରେ କୁହାଯାଇଛି ଯେ ଭଗବାନ ଶ୍ରୀନାରାୟଣଙ୍କର ତିନୋଟି ପତ୍ନୀ ଥିଲେ- ଲକ୍ଷ୍ମୀ, ଗଙ୍ଗା ଓ ସରସ୍ୱତୀ । ତିନିହେଁ ଅତି ପ୍ରେମରେ ନିବାସ କରୁଥିଲେ । କିନ୍ତୁ କୌଣସି କାରଣ ବଶତଃ ଗଙ୍ଗା ଓ ସରସ୍ୱତୀଙ୍କୁ ଭଗବାନଙ୍କ ଅରବିନ୍ଦ କମଳରୁ କିଛି କାଳ ପାଇଁ ଦୂରକୁ ଯିବାକୁ ପଡିଲା । ଅନେକ ସମୟ ପରେ ତିନିଜଣ ଯାକ ଦେବୀ ଶ୍ରୀନାରାୟଣଙ୍କୁ ମିଶିଲେ କିନ୍ତୁ ସେମାନଙ୍କ ମଧ୍ୟରେ ବିବାଦ ହୋଇଗଲା । ସେତେବେଳେ ଭଗବାନ କହିଲେ ତୁମେମାନେ ଗୋଟିଏ ଅଂଶର ନଦୀ ହୋଇଯିବ । ଶେଷ ଅଂଶରୁ ତୁମର ନିବାସ ମୋ ପାଖରେ ରହିବ । ସରସ୍ୱତୀ ଦେବୀ ଗୋଟିଏ ଅଂଶରୁ ନଦୀ ହୋଇଯିବେ ଏବଂ ଅନ୍ୟ ଅଂଶଟି ବ୍ରହ୍ମାଙ୍କ ପାଖରେ ରହିବେ । ଭଗବାନଙ୍କ ଆଦେଶ ଅନୁସାରେ ସରସ୍ୱତୀ ଦେବୀ ଭାରତର ଭାରତୀ ବୋଲାଇଲେ ଏବଂ ଦ୍ୱିତୀୟ ଅଂଶଟି ବ୍ରହ୍ମାଙ୍କର ଶକ୍ତି ହୋଇଥିବା ହେତୁ ବ୍ରାହ୍ମୀ ବୋଲାଇଲେ । ଥରେ ବ୍ରହ୍ମା ଦେବୀ ସରସ୍ୱତୀଙ୍କୁ କହିଲେ ଦେବୀ ତୁମେ କୌଣସି ଯୋଗ୍ୟ ବ୍ୟକ୍ତିଙ୍କର ମୁଖରେ କବିତ୍ୱ ଶକ୍ତି ହୋଇ ନିବାସ କର । ବ୍ରହ୍ମାଙ୍କର ଆଜ୍ଞା ମାନି ଦେବୀ ଯୋଗ୍ୟପୁତ୍ର ଖୋଜିବା ଆରମ୍ଭ କଲେ । ଖୋଜିବାରେ ସତ୍ୟଯୁଗ ବିତିଗଲା । ତ୍ରେତୟା ଯୁଗରେ ସେ ମହା ତପସ୍ୱୀ ବାଲ୍ମିକୀଙ୍କ ଆଶ୍ରମରେ ପହଞ୍ଚିଲେ । ସେସମୟରେ ତାଙ୍କର ଦୃଷ୍ଟି ଗୋଟିଏ କ୍ରୌଞ୍ଚ ପକ୍ଷୀ ଉପରେ ପଡିଲା । ସେ ବ୍ୟାଧର ବାଣରେ ଆହତ ହୋଇ ଛଟପଟ ହେଉଥିଲା । ଦୟାଳୁ ମହର୍ଷି ବାଲ୍ମିକୀଙ୍କ ମୁହଁରୁ ଅନାୟାସରେ ଗୋଟିଏ ଶ୍ଲୋକ ବାହାରି ଆସିଲା, ତାହା ସରସ୍ୱତୀ ଦେବୀଙ୍କର ପ୍ରସାଦ ଥିଲା । ସରସ୍ୱତୀଙ୍କ କୃପାରୁ ବାଲ୍ମିକୀ ରାମାୟଣ ରଚନା କଲେ, ଯାହା ପାଇଁ କେବଳ ଭାରତ ନୁହେଁ, ସାରା ବିଶ୍ୱ ଋଣୀ ହୋଇ ରହିଛି ।

ବରିଷ୍ଠ ସ୍ତମ୍ଭକାର, ଭୁବନେଶ୍ୱର



# ପ୍ରେମଭକ୍ତିର ମୂର୍ତ୍ତିମନ୍ତ ପ୍ରତୀକ – ଶ୍ରୀଚୈତନ୍ୟ

**ଡକ୍ଟର ତ୍ରିନାଥ ପଟ୍ଟନାୟକ**



ସ୍ନେହ ଶ୍ରଦ୍ଧା ଓ ଭକ୍ତିର ଶାଶ୍ୱତ ମାର୍ଗ ହେଉଛି ପ୍ରେମ । ପ୍ରେମ ବିନା ଜୀବନ ରୁକ୍ଷ କର୍କଶ ମରୁଭୂମି । ପ୍ରତ୍ୟେକ ପ୍ରାଣୀ ପ୍ରତି ପ୍ରେମଭାବ ପୋଷଣ କରିବା ହିଁ ପ୍ରକୃତ ମାନବିକତା । ମହାପ୍ରଭୁ ଶ୍ରୀଚୈତନ୍ୟଙ୍କର ଜୀବନରେ ପ୍ରେମ ହିଁ ଥିଲା ଏକ ପ୍ରଧାନ ବସ୍ତୁ । ସେ ସ୍ୱୟଂ ପ୍ରେମମୟ ପୁରୁଷ । କେତେକ କୁହନ୍ତି ମହାପ୍ରଭୁ ଶ୍ରୀଚୈତନ୍ୟ ସାକ୍ଷାତ୍ ପରବ୍ରହ୍ମ ପରମାତ୍ମା । ଅନ୍ୟ କେତେକ କୁହନ୍ତି ରାଧା ଭାବର ରସସ୍ୱାଦନ ନିମନ୍ତେ ସ୍ୱୟଂ ଶ୍ରୀକୃଷ୍ଣ ଚୈତନ୍ୟ ରୂପରେ ଏହି ସଂସାରରେ ଅବତୀର୍ଣ୍ଣ ହୋଇଥିଲେ । କିନ୍ତୁ ତାଙ୍କର ଜୀବନଚର୍ଯ୍ୟାକୁ ଅନୁଶୀଳନ କଲେ ଆମେ ନିଶ୍ଚିତ ଏଇ ସିଦ୍ଧାନ୍ତରେ ପହଁଚି ପାରିବା ଯେ ସେ ଥିଲେ ମହାନ୍ ପ୍ରେମୀ । ଜୀବ ମାତ୍ରକେ ତାଙ୍କର ସଂସ୍ପର୍ଶରେ ଆସି ପ୍ରେମମୟ ହୋଇ ଉଠୁଥିଲେ । ପ୍ରେମ ପ୍ରାପ୍ତି ନିମନ୍ତେ ଯେତିକି ତ୍ୟାଗ, ବୈରାଗ୍ୟ ଆବଶ୍ୟକ ହେଇଥାଏ, ତାହା ସଂପୂର୍ଣ୍ଣରୂପେ ମହାପ୍ରଭୁ ଚୈତନ୍ୟ (ଗୌରାଙ୍ଗ)ଙ୍କଠାରେ ପରିଲକ୍ଷିତ ହୋଇଥିଲା । ପ୍ରେମ ହେଉଛି ଭକ୍ତିର ଫଳ । ତେଣୁ ମହାପ୍ରଭୁ ରସଘନ ଚୈତନ୍ୟ ପ୍ରେମକୁ ମୋକ୍ଷଠାରୁ ବଳି ପୁରୁଷାର୍ଥ ବୋଲି କହୁଥିଲେ ।

ଶ୍ରୀଚୈତନ୍ୟଙ୍କର ପିତୃଦତ୍ତ ନାମ ହେଉଛି ଗୌରାଙ୍ଗ । ଉଜ୍ଜ୍ୱଳ ସୁବର୍ଣ୍ଣ ସମାନ ଶରୀରର କାନ୍ତି । ଦୀର୍ଘ ଶରୀର, ପାଦସ୍ପର୍ଶ କରୁଥାଏ ପୀତାମ୍ବର, ଆଜାନୁଲମ୍ବିତ ବାହୁ, ଟାଣି ଦେଲାଭଳି ଭ୍ରୂଲତା, ଛଳ ଛଳ ବିଶାଳ ନେତ୍ର ଯୁଗଳ, ତନୁକାନ୍ତିକୁ ଆହୁରି ଦୀପ୍ତିମୟ କରୁଥିଲା । ଦୀର୍ଘ ସ୍ୱଚ୍ଛ କପାଳ, ଚକ୍ଷୁ ଯୁଗଳରୁ ପ୍ରେମ ଅଶ୍ରୁଜଳ ସୁଠାମ କପୋଳ ଦେଶ ଦେଇ ବକ୍ଷ ଦେଶକୁ ସ୍ପର୍ଶ କରୁଥାଏ । ମଥାରେ ସ୍କନ୍ଧ ସ୍ପର୍ଶ କରୁଥିବା କୁଞ୍ଚିତ କେଶ ଦାମ । ସେ ତାଙ୍କର ଦୀର୍ଘ ବାହୁ ଉଠାଇ ଯେତେବେଳେ ହରିବୋଲ ହରିବୋଲ ବୋଲି କହୁଥାନ୍ତି ସେତେବେଳେ ବିଦଗ୍ଧ ହୃଦୟ ବିଗଳିତ ହୋଇ ଉଠେ । ତାଙ୍କର ସୁଠାମ ସୁନ୍ଦର ମୂର୍ତ୍ତି ସତେଯେମିତି ପ୍ରେମମୟ ପୁରୁଷ ଶ୍ରୀକୃଷ୍ଣ ଓ ମଧୁମୟୀ ଶ୍ରୀରାଧାଙ୍କର ମିଳିତ ବିଗ୍ରହ ।

ଶ୍ରୀଚୈତନ୍ୟ ଖ୍ରୀ.ଅ. ୧୪୮୫ରେ ନଦିଆ ବା ନବଦ୍ୱୀପ ନଗରରେ ଜନ୍ମଗ୍ରହଣ କରିଥିଲେ । ସେ ଦିନ ଥିଲା ଦୋଳପୂର୍ଣ୍ଣିମା ଆଉ ଚନ୍ଦ୍ରଗ୍ରହଣ ମଧ୍ୟ । ତାଙ୍କ ପିତାଙ୍କର ନାମ ଥିଲା ଜଗନ୍ନାଥ ମିଶ୍ର ଓ ମାତାଙ୍କ ନାମ ଶଚୀଦେବୀ । ଓଡ଼ିଶାର ଯାଜପୁର (ବାଲେଶ୍ୱର ମତାନ୍ତରେ) ତାଙ୍କ ବଂଶର ଆଦି ବାସସ୍ଥାନ ଥିଲା । ସେସମୟରେ ଶ୍ରୀଜଗନ୍ନାଥ ମିଶ୍ର ଥିଲେ ବିଶିଷ୍ଟ ପଣ୍ଡିତ । ବିଦ୍ୟାଚର୍ଚ୍ଚା କରିବା ନିମନ୍ତେ ସ୍ୱରାଜ୍ୟ ଛାଡ଼ି ସକୁଟୁମ୍ବେ ବଙ୍ଗଳାର ନବଦ୍ୱୀପରେ ବାସ କରୁଥିଲେ । ଚୈତନ୍ୟ ସାରା ଭାରତବର୍ଷରେ ବୈଷ୍ଣବ ଧର୍ମ ପ୍ରଚାର କରିଥିଲେ । ସେ ୧୫୧୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶାକୁ ଆସିଥିଲେ । ଶ୍ରୀଗନ୍ନାଥ ଥିଲେ ଶ୍ରୀଚୈତନ୍ୟଙ୍କର ଆରାଧ୍ୟ ଦେବତା । ରଥଯାତ୍ରା ସମୟରେ ସେ ବଡ଼ଦାଣ୍ଡରେ ସଂକୀର୍ତ୍ତନରେ ମଜ୍ଜି ଯାଉଥିଲେ । ଶ୍ରୀଗୁଣ୍ଡିଚା ମନ୍ଦିର ସମାର୍ଜନୀ କରୁଥିଲେ ଓ ପ୍ରତ୍ୟହ ଗରୁଡ଼ସ୍ତମ୍ଭ ପଛରେ ଥାଇ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ଦର୍ଶନ କରୁଥିଲେ । ସେସମୟରେ ଗଜପତି ପ୍ରତାପ ରୁଦ୍ରଦେବ ରାଜତ୍ୱ କରୁଥିଲେ । ରାଜା ଜଣେ ବୈଷ୍ଣବ ଭାବାପନ୍ନ ବ୍ୟକ୍ତିଥିବା ଯୋଗୁଁ ଶ୍ରୀଚୈତନ୍ୟଙ୍କୁ ଗୁରୁରୂପେ ଗ୍ରହଣ କରିଥିଲେ । ରାଜାଙ୍କ ସହାୟତା ପାଇ ସାରା ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରେମ ଲହରୀ ଖେଳାଇ ଦେଇଥିଲେ ଶ୍ରୀଚୈତନ୍ୟ ।

ଶ୍ରୀଚୈତନ୍ୟ ନିମ୍ବଗଛ ମୂଳେ ଜନ୍ମ ହୋଇଥିବାରୁ ମା' ତାଙ୍କ ନାମ ରଖିଲେ ନିମାଇଁ । ପିତା ତାଙ୍କର ନାମ ରଖିଥିଲେ ବିଶ୍ୱମ୍ଭର । ତାଙ୍କର ଶରୀର ଶ୍ୱେତବର୍ଣ୍ଣ ହୋଇଥିବାରୁ, ଲୋକମାନେ ତାଙ୍କର ନାମ ରଖିଥିଲେ ଗୋରା, ଗୌରାଙ୍ଗ, ଗୌରହରି, ଗୋରାଚାନ୍ଦ ଓ ଗୁରଦତ୍ତ ନାମ ଚୈତନ୍ୟ ଥିଲା । ଏହାକୁ ବୈଷ୍ଣବମାନେ ଶ୍ରୀକୃଷ୍ଣଙ୍କ ଅବତାର ବୋଲି ମାନନ୍ତି । ବାଲ୍ୟକାଳରେ ଶ୍ରୀଚୈତନ୍ୟଙ୍କର ପିତୃ ବିୟୋଗ ଘଟିଥିଲା । ପ୍ରଥମ ବିବାହ କରି, ପତ୍ନୀ ବିୟୋଗ ଘଟିବାରୁ ଦ୍ୱିତୀୟ ପତ୍ନୀ ଗ୍ରହଣ କରିଥିଲେ । କିଛି ଦିନ ସଂସାରୀ ହୋଇ ଗୃହତ୍ୟାଗ ପୂର୍ବକ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କଲେ ।

ବୈଷ୍ଣବ ଧର୍ମର ଅହେତୁକ ପ୍ରେମ, ବିଶ୍ୱଜନୀନ ମୈତ୍ରୀ ଭାବର ପ୍ରଚାର କରିଥିଲେ । ତାଙ୍କ ପ୍ରଚାର ବିଶେଷତ୍ୱ ହେଉଛି, ସେ କହୁଥିଲେ ବୈଷ୍ଣବ ହେଲେ ସମସ୍ତେ ଏକ ଜାତି ଓ ଏକ ଭାଇ । ଶ୍ରୀଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କର ମିଳିତ ବିଗ୍ରହ ବୋଲି ଗ୍ରହଣ କରିଥିଲେ । ଶ୍ରୀକୃଷ୍ଣଙ୍କୁ ସର୍ବଦା ଧ୍ୟାନ କରିବା, ନାମ ସଂକୀର୍ତ୍ତନ ଦ୍ୱାରା ମୋକ୍ଷ ପ୍ରାପ୍ତି ହୁଏ ବୋଲି ପ୍ରଚାର କରୁଥିଲେ ।

ପୁରୀରେ ସେ ଅଠର ବର୍ଷ କାଳ ଶ୍ରୀଜଗନ୍ନାଥଙ୍କ ସାନ୍ନିଧ୍ୟରେ ଅତିବାହିତ କରିଥିଲେ । ପୁରୀର ରାଧାକାନ୍ତ ମଠ ତାଙ୍କର ସାଧନାର ପ୍ରଧାନ ପୀଠ ଥିଲା । ଏହି ମଠକୁ ମାଧ୍ୱାଗୌଡ଼େଶ୍ୱର ମଠ ବୋଲି ମଧ୍ୟ କୁହାଯାଏ । ଏହି ମଠ ପୁରୀର ବାଲିସାହିରେ ଅବସ୍ଥିତ । ଏହା ଥିଲା ଚୈତନ୍ୟ ଗମ୍ଭିରା ନାମରେ ପରିଚିତ । ଶ୍ରୀଚୈତନ୍ୟଙ୍କ ସମୟରୁ ଏହି ମଠର ସନ୍ନ୍ୟାସୀମାନେ ରଥଯାତ୍ରା ପୂର୍ବରୁ ଗୁଣ୍ଡିଚା ମନ୍ଦିର ମାର୍ଜନା କରନ୍ତି । ନବକଳେବର ଦାରୁ ଆସିଲେ ଦାରୁ ଆଗରେ ସଂକୀର୍ତ୍ତନ କରିଥାନ୍ତି । ମହାପ୍ରଭୁ ଚୈତନ୍ୟଙ୍କର କଣ୍ଠଉ, ବାଡ଼ି, ଚାମର ଓ ଅନ୍ୟାନ୍ୟ କେତେକ ବ୍ୟବହୃତ ଜିନିଷ ସେହି ଗମ୍ଭୀରା ମଧ୍ୟରେ ସୁରକ୍ଷିତ ଭାବରେ ରଖା ଯାଇଛି ।

ଶ୍ରୀଚୈତନ୍ୟ ୪୮ବର୍ଷ ବୟସରେ ଖ୍ରୀ.ଅ. ୧୫୩୩ରେ ଲୋକ ଚକ୍ଷୁର ଅଗୋଚରରେ ଅପ୍ରକଟ ହୋଇଯାଇଥିଲେ ।

ତାଙ୍କର ଦେହାନ୍ତର ବିଷୟରେ ବିଭିନ୍ନ ଯୁକ୍ତି ଶୁଣିବାକୁ ମିଳେ । ମାତ୍ର କେଉଁ ତଥ୍ୟଟି ଠିକ୍, ତାହା ଶେଷ ସିଦ୍ଧାନ୍ତରେ ପହଁଚି ପାରିନାହିଁ । ୧- ସମୁଦ୍ରର ନୀଳ ଜଳରାଶିକୁ ଶ୍ରୀକୃଷ୍ଣଙ୍କ ତନୁକାନ୍ତି ମଣି ସେଥିରେ ନିମଜ୍ଜନ ହୋଇ ସଲିଳ ସମାଧି ନେଇଛନ୍ତି । ୨- ଶ୍ରୀଜଗନ୍ନାଥଙ୍କ ଶ୍ରୀବିଗ୍ରହରେ ଲୀନ ହୋଇଯାଇଛନ୍ତି । ୩- ତୋଟା ଗୋପୀନାଥ ମନ୍ଦିରରେ ତନୁ ତ୍ୟାଗ କରିଛନ୍ତି । ୪- ସ୍ୱତଃ ଦେହତ୍ୟାଗ ପରେ ତାଙ୍କୁ କୋଇଲି ବୈକୁଣ୍ଠରେ ସମାଧିସ୍ଥ କରାଯାଇଛି ।

ଶ୍ରୀଚୈତନ୍ୟ ଧରାଧାମରେ ଅବତୀର୍ଣ୍ଣ ହୋଇ ଯେଉଁ ସବୁ ଲୀଳା ରଚନା କରିଛନ୍ତି, ତାହା ନିଶ୍ଚିତ ରୂପେ ଅସାଧାରଣ । ଏ ସଂସାରକୁ ଉଦ୍ଧାର କରିବା ନିମନ୍ତେ ସେ ଯେଉଁ ପ୍ରେମର ମନ୍ଦାକିନୀ ପ୍ରବାହିତ କରାଇଥିଲେ, ତାହା ଅଭୂତପୂର୍ବ, ତାଙ୍କ ପ୍ରତିଭାରେ ଆକୃଷ୍ଟ ହୋଇ ନାନା ଧର୍ମର ଉପାସକମାନେ ତାଙ୍କର ସମୀପସ୍ଥ ହୋଇଥିଲେ । ଏପରିକି ତାଙ୍କର କୀର୍ତ୍ତନ ମଣ୍ଡଳୀରେ ଯୋଗଦାନ କରିଥିଲେ । ଶ୍ରୀଚୈତନ୍ୟ ବୃନ୍ଦାବନଠାରୁ ଆରମ୍ଭ କରି ଭାରତବର୍ଷର ବିଭିନ୍ନ ତୀର୍ଥସ୍ଥାନ ପରିଦର୍ଶନ କରି ପ୍ରୀତିରସରେ ପ୍ଲାବନ କରି ଜୀବମାନଙ୍କୁ କଳିକଳୁଷରୁ ମୁକ୍ତି କରିଥିଲେ ।

ଜୀବନର ଶେଷ ଅଷ୍ଟାଦଶ ବର୍ଷ ଅବିଚ୍ଛିନ୍ନ ଭାବରେ ପୁରୀ ଧାମରେ ଅବସ୍ଥାନ କରି ଉତ୍କଳୀୟ ଶୁଦ୍ଧ ଭକ୍ତିବାଦ ବୈଷ୍ଣବ ତଥା ଜ୍ଞାନମିଶ୍ର ଭକ୍ତିବାଦର ବୈଷ୍ଣବମାନଙ୍କ ସହିତ ପ୍ରେମାନନ୍ଦମୟ ଜୀବନ ଅତିବାହିତ କରାଇଥିଲେ । ଉତ୍କଳୀୟ ପଞ୍ଚସଖା- ବଳରାମ, ଜଗନ୍ନାଥ, ଅଚ୍ୟୁତ, ଯଶୋବନ୍ତ ଓ ଶିଶୁ ଅନନ୍ତ ପ୍ରକୃତରେ ତାଙ୍କର ଅନ୍ତରଙ୍ଗ ଭକ୍ତ ଥିଲେ । ଶ୍ରୀଚୈତନ୍ୟଙ୍କ ପ୍ରଚାରିତ ନାମ ହେଉଛି - ''ହରେ କୃଷ୍ଣ ହରେ କୃଷ୍ଣ , କୃଷ୍ଣ କୃଷ୍ଣ ହରେ ହରେ । ହରେ ରାମ ହରେ ରାମ, ରାମ ରାମ ହରେ ହରେ ।'' ଶ୍ରୀଚୈତନ୍ୟ ଜୟଦେବକୃତ 'ଗୀତଗୋବିନ୍ଦ'କୁ ପ୍ରତିଦିନ ଶ୍ରବଣ କରି ଆତ୍ମବିଭୋର ହୁଅନ୍ତି । ଶ୍ରୀଚୈତନ୍ୟ ଶ୍ରୀଧର ସ୍ୱାମୀକୃତ ଭାଗବତ ଟୀକା ପାଠକରି ଶ୍ରୀମଦ୍ ଭାଗବତ ମଧ୍ୟରେ ପ୍ରବେଶ କରିଥିଲେ । ଏଣୁ ଚୈତନ୍ୟ କହିଥିଲେ- ''ଯେଉଁ ବ୍ୟକ୍ତି ଶ୍ରୀଧରଙ୍କ ବ୍ୟାଖ୍ୟା ଅବଲମ୍ବନ ନ କରି ଅନ୍ୟଥା ଭାଗବତରେ ପ୍ରବେଶ କରେ ତାକୁ ବେଶ୍ୟାମାନଙ୍କ ମଧ୍ୟରେ ଗଣନା କରାଯାଏ ।''

କବି ଈଶ୍ୱର ଦାସ ତାଙ୍କ ଦ୍ୱାରା ରଚିତ ଚୈତନ୍ୟ ଭାଗବତ ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି, ଶ୍ରୀଚୈତନ୍ୟ ବିଷ୍ଣୁଙ୍କ (କୃଷ୍ଣ) ଅଂଶରେ ଜନ୍ମ ହୋଇଥିଲେ । ଏଣୁ ତାଙ୍କର ସହଚରମାନେ ମର୍ତ୍ତ୍ୟମଣ୍ଡଳରେ ଭିନ୍ନ ରୂପରେ ଜନ୍ମ ହୋଇ ଲୀଳା ସହଚର କରିଥିଲେ । - ମହେଶ - ଉଦତ୍ତ ବା ସୁଦର୍ଶନ । ବଳରାମ -ନିତ୍ୟାନନ୍ଦ । ଦାମ -ଅନନ୍ତ । ସୁଦାମ- ଅଚ୍ୟୁତ । ସୁବାହୁ-ଯଶୋବନ୍ତ । ସୁବଳ- ବଳରାମ । ଶ୍ରୀବସୁ-ଜଗନ୍ନାଥ ଦାସ । ବ୍ରହ୍ମା - ହରିଦାସ । ବସୁ ଗୋପାଳ -ଅଭିରାମ । କୁବେର -ସୁନ୍ଦରନନ୍ଦ । ବ୍ୟାସ- ସାର୍ବଭୌମ । ରାଧା- ଅଦ୍ୱୈତ । ଅନ୍ୟାନ୍ୟ ଦେବ ଅଂଶୀ ରୂପ, ସନାତନ, ରାୟ ରାମାନନ୍ଦ ଓ ରଘୁଦାସ ଭକ୍ତ ରୂପେ ଜନ୍ମ ହୋଇ ଥିଲେ ।

ଶ୍ରୀଚୈତନ୍ୟଙ୍କର ନାରୀ ସହାୟିକା ଥିଲେ - ଭାନୁମତୀ, କାମୋଦୀ, ନାୟକୀ, ସୀତା, ସତଲକ୍ଷ୍ମୀ, ଜାହ୍ନବୀ, ବସୁମତୀ, ବ୍ରାହ୍ମଣୀଗଣ, ନେତ୍ରାକ୍ଷୀ ଓ ଚନ୍ଦ୍ରକାନ୍ତି ପ୍ରଭୃତି ।

ଶ୍ରୀଚୈତନ୍ୟ ଭାରତବର୍ଷର ବିଭିନ୍ନ ସ୍ଥାନରେ ଭ୍ରମଣ କରିଛନ୍ତି ଓ ଅବସ୍ଥାନ ମଧ୍ୟ କରିଛନ୍ତି । ମାତ୍ର ଶ୍ରୀକ୍ଷେତ୍ର ରହଣି ଓ ଓଡିଶା ପ୍ରବାସ ତାଙ୍କ ଜୀବନରେ ଏକ ବିଶେଷ ମହତ୍ତ୍ୱ ରଖେ । କଟକ ସହରର ବାରବାଟୀ ଦୁର୍ଗଠାରେ ଉତ୍କଳ ନରେଶ ଗଜପତି ପ୍ରତାପରୁଦ୍ରଙ୍କ ସହିତ ତାଙ୍କର ପ୍ରଥମ ସାକ୍ଷାତ୍ ହୋଇଥିଲା ମହାନଦୀ କୂଳସ୍ଥ ବାଲିରେ । ଶ୍ରୀଚୈତନ୍ୟ ସଂକୀର୍ତ୍ତନରେ ମଜ୍ଜିଯାଇ ମାଟି ଉପରେ ଗଡିଥିଲେ । ସେଇ ସ୍ମୃତିକୁ ବହନ କରି ସେହି ନଈଘାଟକୁ ଗଡଗଡିଆ ଘାଟ ବୋଲି ଏବେ ବି ଜନମୁଖରେ କଥିତ ହୁଏ । ଶ୍ରୀଚୈତନ୍ୟ ଥିଲେ ଉତ୍କଳବାସୀଙ୍କର ପ୍ରିୟ ସନ୍ଥ । ତାଙ୍କର ମହିମା ସର୍ବତ୍ର ଜ୍ଞାତ । ସେହି କାରଣରୁ ପ୍ରତିବର୍ଷ

ଦୋଳପୂର୍ଣ୍ଣିମା ଦିନକୁ ଉତ୍କଳବାସୀ ଶ୍ରୀଚୈତନ୍ୟଙ୍କ ଜନ୍ମୋତ୍ସବ ରୂପେ ଶ୍ରଦ୍ଧାର ସହିତ ପାଳନ କରିଆସୁଛନ୍ତି । ଶ୍ରୀଚୈତନ୍ୟ ତାଙ୍କର ଭାରତ ଭ୍ରମଣ କାଳରେ ନଦୀୟାରୁ ପ୍ରୟାଗ ଯାଇ ସେଠାରୁ ଗଙ୍ଗାନଦୀ କୂଳେ ଗୋମତୀଠାରେ ପହଞ୍ଚିଥିଲେ । ସେଠାରୁ କଶ୍ୟପ ଗିରି ଯାଇ ସେଠାରେ ପ୍ରାୟ ଦୁଇମାସ ରହି ଚନ୍ଦ୍ରିକାମହୀ ଯାଇଥିଲେ । ସେଠାରେ ମଧ୍ୟ ଦୁଇମାସ ରହି ସରସ୍ୱତୀ ତୀରରେ ଅବସ୍ଥିତ ଅବନ୍ତୀ ପୁରୀରେ ପହଞ୍ଚି ଥିଲେ । ଗୋପପୁରରୁ ବନାରସ ଆସି ଦକ୍ଷିଣ ଅଭିମୁଖେ କର୍ଣ୍ଣାଟକ ଯାତ୍ରା କରିଥିଲେ । ଗୋପରୁ ଦ୍ୱାରକାକୁ ବାହାରି ବଦ୍ରିକାଶ୍ରମରେ ପହଞ୍ଚିଥିଲେ ।

ଗୋପ, ବୃନ୍ଦାବନ, ମଥୁରାରେ ସେ କିଛି ଦିନ ଅବସ୍ଥାନ କରି ବହୁ ସଂସ୍କାର ଆଣିଥିଲେ । ଫଲ୍‌ଗୁ ନଦୀର ଗୋମତୀ ତୀର୍ଥ ପରିଭ୍ରମଣ ଓ ଅବସ୍ଥାନ ପରେ ଓଡିଶା ଅଭିମୁଖେ ଯାତ୍ରା କରିଥିଲେ । ତା'ପରେ ଚନ୍ଦ୍ରପୁର, କଟକ, କୁଶଭଦ୍ରା ନଦୀ ପାର ହୋଇ ଭୁବନେଶ୍ୱରରେ ପହଞ୍ଚି ଥିଲେ । ଅନନ୍ତ ବାସୁଦେବ ମନ୍ଦିରରେ ରହି ବିନ୍ଦୁ ସାଗରରେ ସ୍ନାନ ପୂର୍ବକ ପ୍ରାଚୀନଦୀ କୂଳ ଆଡକୁ ଅଗ୍ରସର ହୋଇଥିଲେ । କବି ଜୟଦେବଙ୍କ ଗୀତଗୋବିନ୍ଦ କାବ୍ୟ ଶ୍ରୀଚୈତନ୍ୟଙ୍କ ମନରେ ବିଶେଷ ରେଖାପାତ କରିଥିଲା । ଏଣୁ ଜୟଦେବଙ୍କ ଅବସ୍ଥାନ କେନ୍ଦୁବିଲ୍ୱ ପରିଦର୍ଶନ କରି ପବିତ୍ର ପ୍ରାଚୀ ନଦୀ ପରିକ୍ରମା ନିମନ୍ତେ ସ୍ଥିର କଲେ । ନିଆଳୀର ଶୋଭନେଶ୍ୱର ମନ୍ଦିର ପ୍ରାଙ୍ଗଣରେ ଗୋଟିଏ ରାତି ବିତାଇ ପ୍ରାଚୀ କୂଳସ୍ଥ ବିଭିନ୍ନ ମାଧବ ମନ୍ଦିର ଦର୍ଶନ ପରେ, ବେଲେଶ୍ୱର, ଗୋମୁଖୀ କେଶବ ଦର୍ଶନ କରି କୋଣାର୍କଠାରେ ପହଁଚି ଥିଲେ । କୋଣାର୍କଠାରୁ ନୀଳାଚଳରେ ପହଁଚି ଟୋଟା ଗୋପୀନାଥଠାରେ ଅବସ୍ଥାନ କରିଥିଲେ । ଏହା ବ୍ୟତୀତ ଓଡିଶାର କୁଜଙ୍ଗସ୍ଥ କୁଞ୍ଜବନ, ଛେଦରା, କନିକା, ଚନ୍ଦ୍ରକଣା, ହେତୁପାଟଣା ପଦ୍ମପୁର, କଟକସ୍ଥ ତୁଳସୀପୁର ପ୍ରଭୃତି ସ୍ଥାନକୁ ଭ୍ରମଣ କରି ସେହି ସ୍ଥାନମାନଙ୍କରେ ରାତି ଅତିବାହିତ କରିଛନ୍ତି ।

ଭାରତୀୟ ପୁରାଣମାନଙ୍କରେ ଶ୍ରୀଚୈତନ୍ୟଙ୍କ ବିଷୟରେ ବର୍ଣ୍ଣନା ହୋଇଛି, ଭଗବାନ ସ୍ୱୟଂ ଶ୍ରୀଚୈତନ୍ୟ ରୂପରେ ଏ ସଂସାରରେ ଅବତୀର୍ଣ୍ଣ ହେବେ ବୋଲି ସୂଚନା ମିଳେ ।

ଦେବୀପୁରାଣରେ ବର୍ଣ୍ଣିତ ଅଛି –

ନାମ ସିଦ୍ଧାନ୍ତ ସଂପତ୍ତି– ପ୍ରକାଶନ ପରାୟଣଃ
କ୍ୱଚିତ୍ ଶ୍ରୀକୃଷ୍ଣ ଚୈତନ୍ୟନାମା ଲୋକେ ଭବିଷ୍ୟତି । ।

(ଉମାମହେଶ୍ୱର–ସଂବାଦେ)

ମହାଦେବ ପାର୍ବତୀଙ୍କୁ କହିଲେ– କ୍ୱଚିତ୍ (ଶ୍ରୀନବଦ୍ୱୀପରେ) ପ୍ରକଟ ହୋଇ ଭଗବାନ ସିଦ୍ଧାନ୍ତ ସମ୍ପତ୍ତିର ପ୍ରକାଶ ପରାୟଣ ଶ୍ରୀକୃଷ୍ଣ ଚୈତନ୍ୟ ନାମ ଲୋକରେ ପ୍ରସିଦ୍ଧ ହେବେ ।

ସେହିଭଳି ପଦ୍ମପୁରାଣ ଉତ୍ତର ଖଣ୍ଡର ବୈକୁଣ୍ଠ ବର୍ଣ୍ଣନ ପ୍ରକରଣରେ କୁହାଯାଇଛି –

କଳେଃ ପ୍ରଥମ ସଂଧ୍ୟାୟାଂ ଗୌରାଙ୍ଗୋଦ୍ଧହଂ–ମହୀତଳେ
ଭାଗୀରଥୀ ତଟେ ରମ୍ୟେ ଭବିଷ୍ୟାମି ଶଚୀସୁତଃ ।

(୪୨ ପଦ)

ଭଗବାନ କହିଛନ୍ତି – ମୁଁ କଳି ଯୁଗରେ ପ୍ରଥମ ସଂଧ୍ୟାରେ ପରମ ରମଣୀୟ ଭାଗୀରଥି ତଟରେ ଧରାତଳେ ଶ୍ରୀଶଚୀମାତାଙ୍କଠାରୁ ପ୍ରାକଟ୍ୟ ଘେନି ଶ୍ରୀଗୌରାଙ୍ଗ ରୂପରେ ଅବତୀର୍ଣ୍ଣ ହେବି।

କୂର୍ମପୁରାଣ, ଗରୁଡପୁରାଣ, ନୃସିଂହ ପୁରାଣ, ବୃହନ୍ନାରଦୀୟ ପୁରାଣ, ବ୍ରହ୍ମପୁରାଣ, ଭବିଷ୍ୟ ପୁରାଣ, ଅଗ୍ନିପୁରାଣ, ବାୟୁ ପୁରାଣ ଆଦିରେ ଶ୍ରୀଚୈତନ୍ୟ ଆବିର୍ଭାବ ବିଷୟରେ ସୂଚନା ବହୁ ପୂର୍ବରୁ ଦିଆଯାଇଛି ।

ମନ୍ତ୍ର ସାହିତ୍ୟମାନଙ୍କରେ ମଧ୍ୟ ଶ୍ରୀଚୈତନ୍ୟଙ୍କ ଆଗମନ ବିଷୟରେ ବହୁ ପୂର୍ବରୁ ସୂଚନା ଦିଆଯାଇଥିଲା ।

ଭୁବଂ ପ୍ରାପ୍ତେତୁ ଗୋବିନ୍ଦେ ଚୈତନ୍ୟାଖ୍ୟାଭବିଷ୍ୟତି ।
ଅଂଶେନ ତତ୍ରୟାସ୍ୟନ୍ତି ତତ୍ର ତତ୍ ପୂର୍ବପାର୍ଷଦାଃ ।
(କୃଷ୍ଣଯାମଳତନ୍ତ୍ର)

ଯେତେବେଳେ ପୁରାଣ ପୁରୁଷୋତ୍ତମ ଭଗବାନ ଶ୍ରୀଗୋବିନ୍ଦ ପୃଥିବୀରେ ଅବତୀର୍ଣ୍ଣ ହେବେ, ସେତେବେଳେ ତାଙ୍କ ନାମ ଶ୍ରୀଚୈତନ୍ୟ ଦେବ ଏବଂ ତାଙ୍କ ସାଥିରେ ହିଁ ପୂର୍ବ ପାର୍ଷଦମାନେ ନିଜ ନିଜ ଅଂଶରେ ଅବତୀର୍ଣ୍ଣ ହେବେ । ତାଙ୍କ ନାମ ମଧ୍ୟ ଭିନ୍ନ ଭିନ୍ନ ହୋଇ ପ୍ରାୟଃ ପୁରୁଷାକାର ମୂର୍ତ୍ତିରେ ପ୍ରକଟ ହେବ ।

ବିଭିନ୍ନ ତନ୍ତ୍ରଶାସ୍ତ୍ରରେ ଶ୍ରୀଚୈତନ୍ୟଙ୍କ କଥା ଆସେ ସେଗୁଡିକ ହେଲା- କପିଳତନ୍ତ୍ର, ସଂମୋହନତନ୍ତ୍ର, ବ୍ରହ୍ମଯାମଳାତନ୍ତ୍ର, କୃଷ୍ଣଯାମଳାତନ୍ତ୍ର, ବିଶ୍ୱସାର ତନ୍ତ୍ର, କପିଳତନ୍ତ୍ର, କୁଳାର୍ଣ୍ଣବ ତନ୍ତ୍ର ଇତ୍ୟାଦି ।

ଶ୍ରୀଚୈତନ୍ୟଙ୍କ ବିଷୟରେ ବହୁ ପ୍ରତିଭାବାନ୍ ବ୍ୟକ୍ତି ସ୍ୱ ମତ ପୋଷଣ କରିଛନ୍ତି । ବିଶିଷ୍ଟ ପାଶ୍ଚାତ୍ୟ ପଣ୍ଡିତ ମ୍ୟାକ୍ସ ମୁଲାର କହିଛନ୍ତି, ଯେଉଁ ଦେଶରେ ଗୌରାଙ୍ଗ ଦେବଙ୍କ ଭଳି ମହାପୁରୁଷଙ୍କର ଜନ୍ମ ହୋଇଥିଲା, ସେ ଦେଶ ଓ ଜାତି କେବେହେଲେ ହୀନ ନୁହନ୍ତି । ସେପରି ହୋଇଥିଲେ ସେ ଦେଶରେ ଏପରି ମହାପ୍ରଭୁ ଜନ୍ମ ହୋଇ ନଥାନ୍ତେ ।

ଆମର ପୂର୍ବତନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ କହିଛନ୍ତି – ଶ୍ରୀଚୈତନ୍ୟ ମହାପ୍ରଭୁ ମହାନ୍ ବିଦ୍ୱାନ୍ ଥିଲେ । ଯିଏ ପରିପୂର୍ଣ୍ଣତମ ଧାର୍ମିକ ଥିଲେ । ମାନବମାତ୍ରଙ୍କୁ ପ୍ରେମ କରିବା ତାଙ୍କର ସ୍ୱଭାବ ଥିଲା ସେ ବୈଷ୍ଣବ ଧର୍ମ ପ୍ରତିପାଦନ କରିଯାଇଛନ୍ତି ।

ଶ୍ରୀଅରବିନ୍ଦ କହିଛନ୍ତି- ଶ୍ରୀଚୈତନ୍ୟଙ୍କ 'ପ୍ରେମ' ପ୍ରାଣ ଧର୍ମର ମହିମାନ୍ୱିତ- ବିକାଶର ଧାରା ପଥରେ ଆବିର୍ଭୂତ ଏକ ସ୍ୱର୍ଗୀୟ ଅନୁଭୂତି ।

ରାମକୃଷ୍ଣ ପରମହଂସଙ୍କ ମତରେ- ଶ୍ରୀଚୈତନ୍ୟଙ୍କ ଜ୍ଞାନ ସୌରଜ୍ଞାନ ଜ୍ଞାନ ସୂର୍ଯ୍ୟର ଆଲୋକ, ପୁଣି ତା'ଭିତରେ ଭକ୍ତି ଚନ୍ଦ୍ରର ଶୀତଳ ଆଲୋକ ଥିଲା । ବ୍ରହ୍ମଜ୍ଞାନ, ଭକ୍ତିପ୍ରେମ ଦୁଇଟି ହିଁ ଥିଲା । ପ୍ରେମଭକ୍ତି ନଥିଲେ ଈଶ୍ୱର ଲାଭ ହୁଏ ନାହିଁ, ଶ୍ରୀଚୈତନ୍ୟ ଦେବ ଭକ୍ତିର ଅବତାର, ଜୀବକୁ ଭକ୍ତି ଶିଖାଇବାକୁ ଆସିଥିଲେ ।

ସ୍ୱାମୀ ବିବେକାନନ୍ଦ କହିଛନ୍ତି – ଏକମାତ୍ର ଏକ ମହତୀ ପ୍ରତିଭା ସେଇ 'ଅବିଚ୍ଛିନ୍ନ ଅବଚ୍ଛେଦକ' ଜାଲ ଛେଦନ କରି ଉତ୍‌ଥିତ ହୋଇଥିଲେ – ଭଗବାନ ଶ୍ରୀକୃଷ୍ଣ ଚୈତନ୍ୟ । ସମୁଦାୟ ଭାରତରେ ହିଁ ଶ୍ରୀଚୈତନ୍ୟଙ୍କ ପ୍ରତିଭା ପରିଲକ୍ଷିତ ହୁଏ । ଯେଉଁଠାରେ ଲୋକେ ଭକ୍ତିମାର୍ଗ ଜାଣନ୍ତି ସେଠାରେ ହିଁ ତାଙ୍କ ବିଷୟରେ ଲୋକ ଆଦରରେ ଚର୍ଚ୍ଚା କରିଥାନ୍ତି ଓ ତାଙ୍କୁ ପୂଜା କରିଥାନ୍ତି ।

ମହାତ୍ମା ଗାନ୍ଧୀ କହିଛନ୍ତି – " For me Srichaitanya is the only son of God."

ରବୀନ୍ଦ୍ରନାଥ ଠାକୁରଙ୍କ ମତରେ – ଦିନେ ଶ୍ରୀଚୈତନ୍ୟ ମହାପ୍ରଭୁ ଆମ୍ଭମାନଙ୍କୁ ବୈଷ୍ଣବ କରିଥିଲେ ଯେତେବେଳେ ସାମ୍ୟ, ଭ୍ରାତୃଭାବ କଥାର ସୃଷ୍ଟି ହୋଇ ନଥିଲା । ସେତେବେଳେ ଏପରି କଥା କିଭଳି ବାହାରିଲା ଯେ, ମାଡ ଖାଉଛି ନତୁବା ଆହୁରି ମାଡ ଖାଇବି, ତା' ବୋଲି କ'ଣ ପ୍ରେମ ଦେବି ନାହିଁ ?

ଭାରତର ପ୍ରଥମ ରାଷ୍ଟ୍ରପତି ଡଃ ରାଜେନ୍ଦ୍ର ପ୍ରସାଦ କହିଛନ୍ତି, The value of Chaitanya's Teaching is immense. It will be a source of preennical inspiration for mankind.

ଶ୍ରୀଚୈତନ୍ୟ କେତେଗୋଟି ଉପଦେଶ ବାଣୀ ମନୁଷ୍ୟମାନଙ୍କ ଉନ୍ନତି ନିମନ୍ତେ କହିଯାଇଛନ୍ତି ।

(୧) ସୁଖଭୋଗ କଲେ ଯେପରି ଦୁଃଖ ପଳାଏ, ସେହିଭଳି ହୃଦୟରେ କୃଷ୍ଣପ୍ରେମ ଜାତ ହେଲେ ହୃଦୟରୁ ବିଷୟବାସନା ଲୋପ ହୋଇଯାଏ ।

(୨) ହରିଭକ୍ତି ହୃଦୟରେ ଏକ ଅଦ୍ଭୁତ ଶକ୍ତି ଜାଗ୍ରତ କରାଇ ସକଳ ଅବିଦ୍ୟା ନାଶ କରିଥାଏ । ଦାବାନଳ ଯେପରି ସର୍ପିଣୀକୁ ଭସ୍ମୀଭୂତ କରିଦିଏ, ସେହିଭଳି ହରି ଭକ୍ତି

ହୃଦୟରେ ସତ୍‌ଶକ୍ତି ଜାଗ୍ରତ କରାଇ ଅବିଦ୍ୟାକୁ ନଷ୍ଟ କରିଦିଏ ।

(୩) କାହାକୁ ଘୃଣା କରିବ ନାହିଁ । କୌଣସି ପ୍ରାଣୀ ମନରେ ଉଦ୍‌ବେଗ ଦେବ ନାହିଁ । ସର୍ବଜୀବ ପ୍ରତି ସମ୍ମାନ ପ୍ରଦର୍ଶନ କରିବ । ସଦାଚାର, ଦୟା, କ୍ଷମା, ସହିଷ୍ଣୁତା, ସତ୍ୟ, ଧର୍ମ, ଶାନ୍ତି ପ୍ରଭୃତି ସଦ୍ଗୁଣରେ ଆତ୍ମାକୁ ସର୍ବଦା ଭୂଷିତ କରିବ । ପରନିନ୍ଦା, ପରଚର୍ଚ୍ଚା, ପରର ଅନିଷ୍ଟ ଚିନ୍ତା, ଅନ୍ୟର ପ୍ରାଣରେ କଷ୍ଟଦେବା ମହାପାତକ ମଧ୍ୟରେ ଗଣ୍ୟ ।

(୪) ସମସ୍ତ ମନୁଷ୍ୟ ସମାନ, ସମସ୍ତଙ୍କ ହୃଦୟରେ ଭଗବାନ ଅଛନ୍ତି, ଭଗବାନ ସମସ୍ତଙ୍କର ଏବଂ ଆମେ ସମସ୍ତେ ଭଗବାନଙ୍କର ସନ୍ତାନ । ତାଙ୍କୁ ପାଇବାକୁ ହେଲେ ମନ ପ୍ରାଣ ଦେଇ ଡାକିବାକୁ ହେବ । ଭାଗ୍ୟରେ ଯାହା ଅଛି ତାହା ନିଶ୍ଚୟ ଘଟିବ । ସର୍ବଦା ସାଧୁ ସଙ୍ଗ କରିବାକୁ ଯଥାସାଧ୍ୟ ଚେଷ୍ଟା କରିବ ଓ ସଦ୍‌ଗ୍ରନ୍ଥ ପାଠ କରିବ ।

(୫) ଶ୍ରୀଚୈତନ୍ୟ ଦେବ କହୁଥିଲେ ମୁଁ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କଲି ବୋଲି ଅନ୍ୟମାନେ କଳିଯୁଗରେ ସନ୍ନ୍ୟାସୀ ହେବେ, ଏହା ଅନୁଚିତ ଅଟେ । ଗୃହସ୍ଥ ଧର୍ମ ସବୁଠାରୁ ଶ୍ରେଷ୍ଠ ଧର୍ମ । ଗୃହରେ ଥାଇ ସାତ୍ତ୍ୱିକ ଆହାର କର ଓ ଅବିରତ ହରିନାମ କୀର୍ତ୍ତନ କର । ଜୀବେ ଦୟା ନାମରେ ପ୍ରୀତିଲାଭ ମନୁଷ୍ୟର କର୍ତ୍ତବ୍ୟ ।

(୬) ଅହଂଭାବ ନାଶ କରି ମନୁଷ୍ୟ ନିଜେ ଉତ୍ତମ ହୋଇ ମଧ୍ୟ ନିଜକୁ ଅଧମ ଭାବି କଦାପି ମୁକ୍ତି ବାଞ୍ଛା କରିବ ନାହିଁ । ସେ ଧନଜନ, ସୁନ୍ଦରୀ ସ୍ତ୍ରୀ, କବିତା ଏସବୁ ତୁଚ୍ଛ ଭାବିବା ଉଚିତ ।

(୭) କଳିହତ ଜୀବ ଉଦ୍ଧାରର ଏକମାତ୍ର ଉପାୟ– ଅହରହ ନାମ ଶ୍ରବଣ, କୀର୍ତ୍ତନ ଓ ମନନ । ସାଧକ ସର୍ବଦା ନିଜକୁ ତୃଣଠାରୁ ହୀନ ଭାବିବ ।

ତୃଣାଦପି ସୁଚୀତେନ, ତରୋରିବ ସହିଷ୍ଣୁନା ।
ଅମାନିନା ମାନଦେନ କୀର୍ତ୍ତନୀୟଂ ସଦାହରିଃ ।।

ଜୀବଠାରେ କୃଷ୍ଣ ଅଧିଷ୍ଠାନ ରହିଛି ବୋଲି ସେ ବ୍ରାହ୍ମଣ, ଚଣ୍ଡାଳ ଏବଂ ନୀଚ ଲୋକଙ୍କୁ ସମ୍ମାନ କରି ନିରଭିମାନ ହେବ ।

ସଂପାଦକ, 'ପୁରାଣ ପତ୍ରିକା'
ନିଆଳୀ – ୭୫୪୦୦୪
ଜିଲ୍ଲା– କଟକ



# ସାମାଜିକ ସମୀକ୍ଷା ଓ ପଞ୍ଚାୟତିରାଜ ବ୍ୟବସ୍ଥା

**ସରୋଜ ଦାଶ**

ଏକ ଉତ୍ତମ ଓ ସମ୍ବେଦନଶୀଳ ଲୋକଶାସନ ତିନୋଟି ମୁଖ୍ୟ ଉପାଦାନ ଉପରେ ଆଧାରିତ ଯଥା– ସ୍ୱଚ୍ଛତା, ଉତ୍ତରଦାୟିତ୍ୱବୋଧ ଓ ଜନସହଭାଗିତା । ସୂଚନା ପ୍ରାପ୍ତି ଅଧିକାରରୁ ସ୍ୱଚ୍ଛତାର ଆରମ୍ଭ । ଭାରତର ସମ୍ବିଧାନମତେ ପ୍ରତ୍ୟେକ ନାଗରିକ ପାଇଁ ସୂଚନା ଅଧିକାର ଏକ ମୌଳିକ ଅଧିକାର । ରାଜ୍ୟ ବ୍ୟବସ୍ଥାପକ ସଭାର ନିୟମ ଅନୁସାରେ ଦିଆଯାଇଥିବା କ୍ଷମତାର ପ୍ରୟୋଗ ଓ କାର୍ଯ୍ୟର ପରିଚାଳନା ନିମନ୍ତେ ଗ୍ରାମରେ ଥିବା ଗ୍ରାମବାସୀମାନଙ୍କର ଏକତ୍ରୀକରଣକୁ ନେଇ ଏକ ଗ୍ରାମସଭାର ଗଠନକୁ ୭୩ତମ ସଂଶୋଧନରେ ଅନିବାର୍ଯ୍ୟ କରାଯାଇଅଛି । ଯେହେତୁ ଗ୍ରାମସଭା, ସମସ୍ତ ଭୋଟରମାନଙ୍କୁ ନେଇ ଗଠିତ ଓ ଯେଉଁମାନଙ୍କ ପାଇଁ ସମସ୍ତ ନିର୍ବାଚିତ ପ୍ରତିନିଧିମାନେ ଦାୟୀ ହୋଇଥାନ୍ତି, ତେଣୁ ଆଶା କରାଯାଏ ଗ୍ରାମସଭାର ସକ୍ରିୟ ପରିଚାଳନା ଶାସନର ଗୁଣବତ୍ତା, ଗୋଷ୍ଠୀର ସହଭାଗିତା ତଥା ସ୍ୱଚ୍ଛତା ଓ ଦାୟିତ୍ୱବୋଧତାର ପରିମାଣ ଉପରେ ପ୍ରଭାବ ପକାଇଥାଏ । ସ୍ୱତନ୍ତ୍ରଭାବେ, ଗ୍ରାମର ସର୍ବାଙ୍ଗୀନ ଉନ୍ନୟନ ପ୍ରାକୃତିକ ସମ୍ବଳର ପରିଚାଳନା ଏବଂ ସ୍ଥାନୀୟ ସମସ୍ୟାର ସମାଧାନ ଦିଗରେ ଗ୍ରାମସଭା ଏକ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନ ।

ସାମାଜିକ ସମୀକ୍ଷା, ଏପରି ଏକ ବ୍ୟବସ୍ଥା ଯାହାଦ୍ୱାରା ଗଣତନ୍ତ୍ରର ତୃଣମୂଳରେ ପରିଚାଳନା କରାଯାଉଥିବା ଅର୍ଥନୈତିକ ବିକାଶ ଓ ସାମାଜିକ ନ୍ୟାୟଜନିତ କାର୍ଯ୍ୟକ୍ରମ ସମ୍ବନ୍ଧୀୟ ସୂଚନାଗତ ଅଧିକାର ଓ ସ୍ୱଚ୍ଛତାକୁ ଆଣିପାରିବ । ଗ୍ରାମପଞ୍ଚାୟତ ଓ ସରକାରୀ ଶାସନକଳର କାର୍ଯ୍ୟକ୍ରମ ଉପରେ ପର୍ଯ୍ୟବେକ୍ଷଣ, ନିରୀକ୍ଷଣ ଏବଂ ବାର୍ଷିକ ହିସାବ ଓ ସମୀକ୍ଷା ବିବରଣୀର ପରୀକ୍ଷଣ କରିବା ପାଇଁ କ୍ଷମତା ଦେଇଛି । ସାମାଜିକ ସମୀକ୍ଷା ଦ୍ୱାରା ଗ୍ରାମସଭା, ପଞ୍ଚାୟତରେ କାର୍ଯ୍ୟ ଚାଲୁରଖିବା ସହିତ ଅନ୍ୟାନ୍ୟ କାର୍ଯ୍ୟ କରିବାକୁ ପରୋକ୍ଷ ଭାବରେ ସୁପରିଚାଳନା କରିବା ପାଇଁ କ୍ଷମତାଶାଳୀ କରେ । ଏହା ବ୍ୟତୀତ ପ୍ରତ୍ୟେକ ପଞ୍ଚାୟତରେ ଗ୍ରାମସଭା ଦ୍ୱାରା ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟ ପାଇଁ ଯଥାଯୁକ୍ତ ସମୀକ୍ଷାର ଅନିବାର୍ଯ୍ୟ ବ୍ୟବସ୍ଥା ରହିଛି । ଉଦାହରଣ ସ୍ୱରୂପ, ସାମାଜିକ ସମୀକ୍ଷା କରିବା ପରେ ଗ୍ରାମସଭା ଦ୍ୱାରା ସମସ୍ତ ପଞ୍ଚାୟତ ଉନ୍ନୟନ କାର୍ଯ୍ୟର ବିନିଯୋଗ ପ୍ରମାଣପତ୍ର ଦେବା ଉଚିତ, ଯେଉଁ ଭିତ୍ତିରେ ପୁଞ୍ଜିରାଶିର ପରବର୍ତ୍ତୀ କିସ୍ତି ପଞ୍ଚାୟତକୁ ଦିଆଯିବ । ଗ୍ରାମ୍ୟ ଉନ୍ନୟନ ଓ ପୁଞ୍ଜିରାଶି ଗ୍ରହଣ କରି ସମସ୍ତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟ ଗ୍ରାମ୍ୟ ସ୍ତରରେ ସମ୍ପନ୍ନ କରାଯାଇଥାଏ ।

ସାମାଜିକ ସମୀକ୍ଷାର ନିଶ୍ଚିତ ଆବଶ୍ୟକତା ରହିଛି, ଯାହାକି ବ୍ୟବସ୍ଥାର ସର୍ବମୋଟ ଲକ୍ଷ୍ୟ ହାସଲ କରିବା ପାଇଁ ଏହାକୁ ଏକ ପ୍ରଭାବଶାଳୀ ମାଧ୍ୟମ ଭାବରେ ବ୍ୟବହାର କରାଯାଇପାରେ । ଗ୍ରାମସଭା ସାମାଜିକ ସମୀକ୍ଷାର ଏକ ପ୍ରଭାବଶାଳୀ ଉପାଦାନ ହୋଇପାରିବ ଯଦି ଏହାର ନିମ୍ନଲିଖିତ ଉପାଦାନ ସବୁ ରହିଥାଏ ।

(କ) ଗ୍ରାମପଞ୍ଚାୟତର କୌଣସି କାର୍ଯ୍ୟ, ଯୋଜନା, ଆୟ ଓ ବ୍ୟୟ ଉପରେ ସରପଞ୍ଚ ଓ ଗ୍ରାମପଞ୍ଚାୟତରେ ନିର୍ବାଚିତ ସଦସ୍ୟଙ୍କଠାରୁ ସ୍ପଷ୍ଟୀକରଣ ଆବଶ୍ୟକ କରିବା ।

(ଖ) ଗ୍ରାମପଞ୍ଚାୟତର ରହିଥିବା ଯୋଜନା ଓ ସମସ୍ତ ପ୍ରକାର କାର୍ଯ୍ୟର ବିଚାର ଓ ସମୀକ୍ଷା ଏବଂ

(ଗ) ଗ୍ରାମପଞ୍ଚାୟତର କିମ୍ବା ଅନ୍ୟ କୌଣସି ସରକାରୀ ବିଭାଗ ଦ୍ୱାରା ନିଆଯାଇଥିବା ଉନ୍ନୟନ କାର୍ଯ୍ୟକ୍ରମ ସମ୍ପର୍କିତ ନଥି ଓ ଦସ୍ତାବିଜ୍‌ର ବ୍ୟବହାର କରିବା । ଏହି ଆବଶ୍ୟକତାକୁ ଏହି ସର୍ତ୍ତରେ ପୂରଣ କରାଯାଇପାରିବ ଯେ ଗ୍ରାମପଞ୍ଚାୟତ ଓ ଅନ୍ୟାନ୍ୟ କାର୍ଯ୍ୟକାରୀ ସଂସ୍ଥା ସ୍ୱଚ୍ଛତାର କିଛି ନିର୍ଦ୍ଦିଷ୍ଟ ଉପାଦାନ ବଜାୟ ରଖିଛନ୍ତି ଏବଂ ଉନ୍ନୟନ ସମ୍ବନ୍ଧିତ ଆଇନ ଓ କାର୍ଯ୍ୟକ୍ରମ ବାସ୍ତବ ରୂପ ଦେବା ଦାୟିତ୍ୱରେ ଥିବା ପ୍ରତିଷ୍ଠାନମାନଙ୍କଠାରୁ ଏହାର ସୂଚନା ଅନୁସନ୍ଧାନ କରିବାର ଅଧିକାର ଅଛି ।

**ସାମାଜିକ ସମୀକ୍ଷାର ପରିଚାଳନା**

ସାମାଜିକ ସମୀକ୍ଷା ପରିଚାଳନା କରିବାର ବିଭିନ୍ନ ଉପାୟମାନ ରହିଛି । ସେମାନଙ୍କ ମଧ୍ୟରୁ ଏଗୁଡ଼ିକ ଅନ୍ୟତମ ।

ସମସ୍ତ ମୂଲ୍ୟ ଅଟକଳ, ଉପଭୋକ୍ତା ହିତାଧିକାରୀମାନଙ୍କ ତାଲିକା, ପ୍ରତ୍ୟେକ ଯୋଜନାରେ ଦିଆଯାଇଥିବା ସହାୟତାର ତାଲିକା, କ୍ରୟ ଦ୍ରବ୍ୟର ପ୍ରମାଣପତ୍ର, ରସିଦ, ହିସାବ ଆଦି କରିବା, କୌଣସି ନାଗରିକଙ୍କ ଦ୍ୱାରା ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ ପାଇଁ ଦସ୍ତାବିଜ୍ ଖୋଲିବା ।

ନୂତନ ଗଣତାନ୍ତ୍ରିକ ସ୍ଥିତିରେ ସାମାଜିକ ସମୀକ୍ଷା ପାଇଁ ଗ୍ରାମସଭା ଏକ ନାର୍ଯ୍ୟ ଅଂଶ । ଗ୍ରାମସଭାର ସଭ୍ୟମାନେ ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ ଭଳି ନିର୍ବାଚିତ ସମିତି, ସେମାନଙ୍କର ପ୍ରତିନିଧି ଦ୍ୱାରା ସାମାଜିକ ଓ ସର୍ବସାଧାରଣ ସ୍ୱାର୍ଥ ସଂପୃକ୍ତ ବାଦ୍ ପ୍ରଶ୍ନ ଉଠେଇବା ସହିତ ଏହାର କୈଫିୟତ ଦାବୀ କରିପାରିବେ । ସାମାଜିକ ସମୀକ୍ଷା ନିମ୍ନଲିଖିତ ପରିବର୍ତ୍ତନ ଆଣିବା ପାଇଁ ଆଶା କରାଯାଏ ।

(କ) ଅସଫଳ ଦଳକୁ ସାହାଯ୍ୟ କରିବାରେ
(ଖ) ବିଭିନ୍ନ ସମୁଦାୟ ଗୋଷ୍ଠୀକୁ ପ୍ରଶିକ୍ଷଣ ଦେବାରେ
(ଗ) ଆନ୍ତଃ ଗଣତନ୍ତ୍ରକୁ ପ୍ରୋତ୍ସାହନ ଦେବାରେ
(ଘ) ମାନବ ସମ୍ବଳର ବିକାଶରେ
(ଙ) ଜନ ସହଭାଗିତା ଓ ପ୍ରଭୁତ୍ୱ ହୃଦୟଙ୍ଗମ କରିବାରେ
(ଚ) ସାମୂହିକ ନିର୍ଣ୍ଣାୟକ ପ୍ରଣାଳୀକୁ ତ୍ୱରାନ୍ୱିତ କରିବା ।

**ଗ୍ରାମସଭା ଦ୍ୱାରା ସାମାଜିକ ସମୀକ୍ଷାର ପ୍ରୟୋଗ**

ସାମାଜିକ ସମୀକ୍ଷାର କ୍ଷମତାକୁ ଜାହିର କରାଇବାର ଲକ୍ଷ୍ୟ ନେଇ ଗ୍ରାମସଭାକୁ ଅଧିକ ସଶକ୍ତ କରିବା ପାଇଁ ସରକାର ବ୍ୟବସ୍ଥା କରିଛନ୍ତି । ଏହି ବ୍ୟବସ୍ଥା ଅନୁସାରେ ଗ୍ରାମପଞ୍ଚାୟତର ପରିଚାଳନାରେ ସ୍ୱଚ୍ଛତାକୁ ସୁନିଶ୍ଚିତ କରାଯାଇପାରିବ । ହିତାଧିକାରୀ ମନୋନୟନ ବିନିଯୋଗ ପ୍ରମାଣପତ୍ର ସହିତ ସମସ୍ତ ଯୋଜନାର ପ୍ରମାଣପତ୍ର, ଅଟକଳ, କାର୍ଯ୍ୟାଦେଶ, କାର୍ଯ୍ୟର ରସିଦ ଓ ଅନ୍ୟାନ୍ୟ ପଞ୍ଚାୟତଜନିତ ଆଦେଶନାମାକୁ ନାଗରିକଙ୍କ ଦ୍ୱାରା ଉପଲବ୍ଧ କରିବା । ସ୍ୱଳ୍ପ ସମୟ ଓ ଅଳ୍ପ ମୂଲ୍ୟରେ, ଆବଶ୍ୟକ ଅନୁସାରେ ଦରଖାସ୍ତ ଦ୍ୱାରା ପ୍ରମାଣପତ୍ରର ନକଲ ଯୋଗାଇ ଦେବାର ବ୍ୟବସ୍ଥା କରାଯାଉଛି । ପରବର୍ତ୍ତୀ ସୋପାନରେ ପ୍ରତ୍ୟେକ ସର୍ବସାଧାରଣ କାର୍ଯ୍ୟକ୍ଷେତ୍ରରେ ପ୍ରତିଦିନ ଏକ ବିଜ୍ଞାପନ ପ୍ରଦର୍ଶନ କରାଯିବାକୁ ନିର୍ଦ୍ଦେଶ ଦିଆଯାଉଛି, ଯାହାକି ମଜୁରିଆର ନାମ ସହିତ ଉପାର୍ଜିତ ମଜୁରି, ଏକକ ପିଛା ବସ୍ତୁର କ୍ରୟ ଦର, ପରିମାଣ, ପରିବହନ ଖର୍ଚ୍ଚ ଏବଂ ସମ୍ଭାବିତ କାର୍ଯ୍ୟର ତାଲିକା ଦର୍ଶାଇବା । ନିଃସନ୍ଦେହ ଭାବେ ଏହି ବ୍ୟବସ୍ଥାଗୁଡିକର କାର୍ଯ୍ୟକାରିତା ନାଗରିକମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିଛି ଏବଂ ଏହା ଆଞ୍ଚଳିକ ସ୍ତରରେ ହେଉଥିବା କ୍ଷମତାର ଅପବ୍ୟବହାର ଓ ଦୁର୍ନୀତିର ସମ୍ଭାବନାକୁ ହ୍ରାସ କରିଛି । ଅପରାଧୀମାନଙ୍କ ବିରୁଦ୍ଧରେ କୌଣସି ବୈଧାନିକ ଦଣ୍ଡ ନଥିବାରୁ ସାମାଜିକ ସମୀକ୍ଷାକୁ ସୁଗମ କରିବାର ବ୍ୟବସ୍ଥା ଅନେକ କ୍ଷେତ୍ରରେ କ୍ଷମତାହୀନ ହୋଇଯାଉଛି ବୋଲି ଦର୍ଶାଯାଉଛି ।

**ଗ୍ରାମସଭାକୁ ସୂଚନାଗତ ଅଧିକାର ଦ୍ୱାରା ସଜ୍ଜିତ କରାଯାଉଛି**

ବିଷୟବସ୍ତୁର ମୂଳ ସମସ୍ୟା ହେଉଛି ଯେ ଏହା ସରକାରୀ ସମିତି ହେଉ ବା ସ୍ଥାନୀୟ ସମିତି ହେଉ ଲୋକମାନଙ୍କର ସ୍ୱାର୍ଥ ଉପରେ ସେମାନଙ୍କର ଜାଣିବାର ଅଧିକାର ରହିଛି । ସମସ୍ତ ରାଜ୍ୟ ସୂଚନା–ଅଧିକାର ନିୟମ ମଞ୍ଜୁର କରିଦେଉଛନ୍ତି । କିଛି ଦୁର୍ବଳତା ଥିବା ସତ୍ତ୍ୱେ ଏହି ନିୟମମାନ ରାଜ୍ୟସ୍ତରରୁ ଆରମ୍ଭ କରି ପଞ୍ଚାୟତସ୍ତର ପର୍ଯ୍ୟନ୍ତ ସ୍ୱଚ୍ଛ ଶାସନର ପଥ ଖୋଲି ଦେଉଛନ୍ତି । ଏହି ନିୟମ (କିଛି କାର୍ଯ୍ୟ କରିବାର ପ୍ରଣାଳୀ ଉପରେ) କିଛି ନୀତି ନିୟମ ଉଲ୍ଲେଖ ରହିଛି, ଯଦ୍ୱାରା କେହି ଆବଶ୍ୟକୀୟ ସୂଚନା ଖୋଜି ପାଇବାକୁ ଚେଷ୍ଟା କରିପାରିବେ, ଯଦି କୌଣସି ଅଧିକାରୀ ସୂଚନା ଦେବାର ଅକ୍ଷମତା ପ୍ରକାଶ କରନ୍ତି କିମ୍ବା ମିଥ୍ୟା ସୂଚନା ପ୍ରଦାନ କରନ୍ତି ତେବେ ସେମାନଙ୍କୁ ଶାସ୍ତି ଦେବାର ବିଧାନ କରାଯାଉଛି । ସେହିପରି ଭାବେ ଏହି ନିୟମମାନ ସର୍ବନିମ୍ନ ମଜୁରି, ଲିଂଗାଧିକାର ଭଳି ସାମାଜିକ ବ୍ୟବସ୍ଥାପନାର କାର୍ଯ୍ୟକାରିତାରେ ଏବଂ ଗୁରୁତ୍ୱପୂର୍ଣ୍ଣ ଭାବେ ଉନ୍ନୟନଭିତ୍ତିକ ଯୋଜନାରେ ତର୍କବିତର୍କ ପାଇଁ ପଥ ପରିଷ୍କାର କରିବାରେ ଓ ସରକାରଙ୍କ ଯୋଜନାରେ ଅଗ୍ରସର କରାଇଥାଏ । ସେଥିପାଇଁ ସୂଚନାର ଅଧିକାର ଅଧିନିୟମକୁ ଅଧିକ ଫଳପ୍ରଦ ଓ ପ୍ରଭାବଶାଳୀ କରିବା ଉଦ୍ଦେଶ୍ୟରେ ସୂଚନାର ଅଧିକାର, କାର୍ଯ୍ୟ ଓ ପ୍ରମାଣପତ୍ରର ପର୍ଯ୍ୟବେକ୍ଷଣ ଓ ଚିହ୍ନ ଓ ଉଦ୍ଧୃତାଂଶ ନେବାର ଅଧିକାରକୁ ଅନ୍ତର୍ଭୁକ୍ତ କରିବା ଆବଶ୍ୟକ । ଗ୍ରାମସଭାକୁ ଏହି ମାପଗୁଡିକ ଅଧିକ ଶକ୍ତି ପ୍ରଦାନ କରିବ ଏବଂ ସର୍ବଶେଷରେ ଏହାର କାର୍ଯ୍ୟପ୍ରଣାଳୀରେ ଉନ୍ନତି ଆଣିବ ।

**ସାମାଜିକ ସମୀକ୍ଷା**

ଭାରତ ସମ୍ବିଧାନମତେ ପ୍ରତ୍ୟେକ ନାଗରିକଙ୍କର ସୂଚନା ପ୍ରାପ୍ତି ଅଧିକାର ଏକ ମୌଳିକ ଅଧିକାର । ଏହି ଅଧିକାର ବଳରେ ପ୍ରତ୍ୟେକ ବ୍ୟକ୍ତି ସରକାରଙ୍କ ଦ୍ୱାରା କାର୍ଯ୍ୟକାରୀ ହେଉଥିବା ସମସ୍ତ ଉନ୍ନୟନମୂଳକ ଯୋଜନା, ସେଥିନିମନ୍ତେ ମଂଜୁର ଅର୍ଥର ପରିମାଣ, ପ୍ରକଳ୍ପର କାର୍ଯ୍ୟକାରିତା ତଥା ଖର୍ଚ୍ଚ ଆଦି ପ୍ରତ୍ୟେକ ବିଷୟରେ ଅବଗତ ହୋଇପାରିବେ । ଏହି କାର୍ଯ୍ୟ ପ୍ରଣାଳୀରେ ସ୍ୱଚ୍ଛତା ରକ୍ଷା କରିପାରିବେ । ସାମାଜିକ ସମୀକ୍ଷା ହେଉଛି ଏକ ମାଧ୍ୟମ ଯାହାକି ଉଭୟ ସୂଚନା ପ୍ରଦାନ ଓ ସ୍ୱଚ୍ଛତା ରକ୍ଷା କରିବାରେ ସାହାଯ୍ୟ କରିବ । ଇତି ମଧ୍ୟରେ କାର୍ଯ୍ୟକାରୀ ହେଉଥିବା ସମସ୍ତ ଶ୍ରମଭିତ୍ତିକ ଯୋଜନାଗୁଡ଼ିକର ସାମାଜିକ ସମୀକ୍ଷା ହେଉଛି ଏକ ମାଧ୍ୟମ, ଯାହାକି ଉଭୟ ସୂଚନା ପ୍ରଦାନ ଓ ସ୍ୱଚ୍ଛତା ରକ୍ଷା କରିବାରେ ସାହାଯ୍ୟ କରିବ । ଇତି ମଧ୍ୟରେ କାର୍ଯ୍ୟକାରୀ ହେଉଥିବା ସମସ୍ତ ଶ୍ରମଭିତ୍ତିକ ଯୋଜନାଗୁଡ଼ିକର ସାମାଜିକ ସମୀକ୍ଷା ନିମନ୍ତେ ମାନ୍ୟବର ଉଚ୍ଚତମ ନ୍ୟାୟାଳୟ ଦରଖାସ୍ତ ନଂ (ସିଭିଲ) ୧୬୮/୨୦୦୧ରେ ଆଦେଶ ପ୍ରଦାନ କରିଛନ୍ତି । ଉକ୍ତ ଆଦେଶ ଅନୁଯାୟୀ ସାମାଜିକ ସମୀକ୍ଷାର ଦାୟିତ୍ୱ 'ଗ୍ରାମସଭା' ଉପରେ ନ୍ୟସ୍ତ କରାଯାଇଛି । ଗ୍ରାମ ଉନ୍ନୟନ ତଥା ପଞ୍ଚାୟତିରାଜ କାର୍ଯ୍ୟଗୁଡ଼ିକର ସାମାଜିକ ସମୀକ୍ଷା ସଂକ୍ରାନ୍ତରେ ଏକ ନିର୍ଦ୍ଦେଶନାମା ୧୫ ସେପ୍ଟେମ୍ବର, ୨୦୦୨ ତାରିଖରେ ଓଡ଼ିଶାର ତତ୍କାଳୀନ ଶାସନ ସଚିବ ତଥା ଉନ୍ନୟନ କମିଶନର ଶ୍ରୀଯୁକ୍ତ ଦେବୀ ପ୍ରସାଦ ବାଗ୍‌ଚୀ ରାଜ୍ୟର ସମସ୍ତ ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ, ଯାହାକି ଅଦ୍ୟାବଧି ଗ୍ରାମପଞ୍ଚାୟତରେ ସାମାଜିକ ସମୀକ୍ଷାର ଆଧାର ହୋଇ ରହିଅଛି ।

ପଞ୍ଚାୟତରେ ସାମାଜିକ ସମୀକ୍ଷା କରିବା ପାଇଁ ଫୋରମ ହେଲା ପଲ୍ଲୀସଭା ଓ ଗ୍ରାମସଭା । ଏଥିପାଇଁ ଏକ ସ୍ୱତନ୍ତ୍ର ପଲ୍ଲୀସଭା ଆହୂତ କରାଯିବ । ଏହା ଏକାଧିକ ବାର ଅନୁଷ୍ଠିତ ହୋଇପାରେ । ଜିଲ୍ଲାପାଳ ବା ଉପଜିଲ୍ଲାପାଳ ମଧ୍ୟ ଏଥି ନିମନ୍ତେ ସ୍ୱତନ୍ତ୍ର ପଲ୍ଲୀସଭା ଆହୂତ କରିପାରିବେ । ତେବେ ପଲ୍ଲୀସଭା ବୈଠକ ପାଇଁ ସଂପୃକ୍ତ ୱାର୍ଡ଼ର ଏକ ଦଶମାଂଶ ଭୋଟର ଉପସ୍ଥିତ ରହିବା ଜରୁରୀ । ଏଥି ସହିତ ପ୍ରକଳ୍ପଗୁଡ଼ିକର କାର୍ଯ୍ୟ କରିଥିବା ଶ୍ରମିକମାନଙ୍କର ହାଜିରାଖାତା (ମଷ୍ଟର ରୋଲ୍)ରେ ନାମ ଥିବା ଶ୍ରମିକମାନେ ଉପସ୍ଥିତ ରହିବେ । ପଲ୍ଲୀସଭା ବୈଠକରେ ମଧ୍ୟ ଅନ୍ୟ ସାଧାରଣ ବୈଠକ ଭଳି ୧୫ ଦିନ ପୂର୍ବରୁ ନୋଟିସ୍ ଜାରି ହେବ । ଏହି ସମୟ ଭିତରେ ପଲ୍ଲୀସଭାର ସଭ୍ୟମାନେ

କାର୍ଯ୍ୟକାରୀ ହୋଇଥିବା ବା ଚାଲୁ ରହୁଥିବା ପ୍ରକଳ୍ପ ନିମନ୍ତେ ସ୍ପଷ୍ଟୀକରଣ ଲୋଡିପାରିବେ ବା ଆପତ୍ତି ଦାଖଲ କରିପାରିବେ । ବୈଠକରେ ମୌଖିକ ଆପତ୍ତିର ମଧ୍ୟ ଗ୍ରହଣ କରାଯିବ । ମିଳିଥିବା ସମସ୍ତ ଲିଖିତ ଆପତ୍ତିଗୁଡ଼ିକୁ ଗୋଟିଏ ପରେ ଗୋଟିଏ ଶୁଣାଣି କରାଯିବ । ପ୍ରକଳ୍ପ ସଂପୃକ୍ତ ସରକାରୀ ଅଧିକାରୀ ବା ବେସରକାରୀ ସଦସ୍ୟ ପ୍ରକଳ୍ପ ସଂପର୍କରେ ସ୍ପଷ୍ଟୀକରଣ ବା ତଥ୍ୟ ଉପସ୍ଥାପନ କରିବେ । ଅଭିଯୋଗର ସ୍ପଷ୍ଟୀକରଣ ପରେ ଦ୍ୱିମତ ପ୍ରକାଶ ପାଇଲେ ଭୋଟ ଦ୍ୱାରା ଚୂଡାନ୍ତ ନିଷ୍ପତ୍ତି କରାଯାଇପାରିବ । କାର୍ଯ୍ୟକାରୀ ହୋଇଥିବା ପ୍ରକଳ୍ପରେ ଅନିୟମିତତା ହୋଇ ନଥିବା ବା କାର୍ଯ୍ୟ ସନ୍ତୋଷଜନକ ବିଷୟ ସଂଖ୍ୟାଧିକ ଭୋଟରେ ଗୃହୀତ ହୋଇଥିଲେ ଗ୍ରାମପଞ୍ଚାୟତ ବିନିଯୋଗ ପ୍ରମାଣପତ୍ର ପ୍ରଦାନ କରିପାରିବ । ଯଦି ଅଭିଯୋଗରେ ସତ୍ୟତା ଥାଏ, ତେବେ ତାହାର ଏକ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ତ୍ରୁଟି ପରିପାଳନ ନିମନ୍ତେ ସଂପୃକ୍ତ ବିଭାଗକୁ ପଠାଯିବ । ଯଦି ତ୍ରୁଟି ପରିଶୋଧନ କରାନଯାଏ ତେବେ ସଂପୃକ୍ତ ବିଭାଗ ଆଇନ ଅନୁସାରେ ଉପଜିଲ୍ଲାପାଳଙ୍କ ଦ୍ୱାରା ଦର୍ଶାଯାଇଥିବା ଅର୍ଥ ଆଦାୟ ଓ ଦଣ୍ଡବିଧି ଆଇନ ଅନୁସାରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇପାରିବ ।

ଏଠାରେ ମଧ୍ୟ ଦର୍ଶାଇ ଦିଆଯାଇପାରେ କି ସୂଚନାଗତ ଅଧିକାର ନିୟମ ୨୦୦୫ ଓ ଜାତୀୟ ଗ୍ରାମୀଣ କର୍ମନିଯୁକ୍ତି ଆଇନ ୨୦୦୫, ସାମାଜିକ ସମୀକ୍ଷାକୁ ଉତ୍ତମ ପ୍ରଶାସନ ପରିଚାଳନାର ଏକ ଶକ୍ତିଶାଳୀ ମାଧ୍ୟମ ରୂପେ ଉପଯୋଗ କରିବାର ବ୍ୟବସ୍ଥା କରିଅଛି ।

ମହାତ୍ମା ଗାନ୍ଧୀ ନରେଗା ଯୋଜନାରେ ସାମାଜିକ ସମୀକ୍ଷା କରିବା ବାଧ୍ୟତାମୂଳକ । ବ୍ୟବସ୍ଥା ଅନୁସାରେ ସାମାଜିକ ସମୀକ୍ଷାକୁ ସର୍ବାଧିକ ଗୁରୁତ୍ୱ ଦିଆଯାଇଅଛି । ୨୦୧୧ରେ ଭାରତ ସରକାରଙ୍କ ଗ୍ରାମୀଣ ବିକାଶ ମନ୍ତ୍ରଣାଳୟ ଦ୍ୱାରା ସାମାଜିକ ସମୀକ୍ଷା ନିୟମାବଳୀ ପ୍ରଣୟନ ହୋଇ ସାମାଜିକ ସମୀକ୍ଷା ପ୍ରକ୍ରିୟାକୁ ତ୍ୱରାନ୍ୱିତ କରାଯାଇଅଛି । ଏହି ନିୟମାବଳୀ ପ୍ରକାରେ ରାଜ୍ୟ ସ୍ତରରେ ସାମାଜିକ ସମୀକ୍ଷାରେ ସହାୟକ ହେବା ପାଇଁ ସ୍ୱତନ୍ତ୍ର ଭାବେ ସାମାଜିକ ସମୀକ୍ଷା ସଂସ୍ଥା କାର୍ଯ୍ୟ କରୁଅଛି । ଏହି ସଂସ୍ଥା ଦ୍ୱାରା ବିଭିନ୍ନ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇ ଲୋକମାନଙ୍କର ଅଧିକାର ସମ୍ବନ୍ଧରେ ସଚେତନତା ସୃଷ୍ଟି କରାଯିବ । ପଞ୍ଚାୟତ ସ୍ତରରୁ ରାଜ୍ୟ ପର୍ଯ୍ୟନ୍ତ ସ୍ୱତନ୍ତ୍ର କର୍ମକର୍ତ୍ତା ନିୟୋଜନ ହୋଇ ସାମାଜିକ ସମୀକ୍ଷା ପ୍ରକ୍ରିୟାରେ କାର୍ଯ୍ୟକାରୀ ସଂସ୍ଥା ଦ୍ୱାରା କୌଣସି ପ୍ରକାର ହସ୍ତକ୍ଷେପକୁ ଏଥିରେ ନିଷେଧ କରାଯାଇଅଛି ।

ପ୍ରତ୍ୟେକ ବର୍ଷ ପ୍ରାରମ୍ଭରେ ରାଜ୍ୟ ସ୍ତରରେ କାର୍ଯ୍ୟ କରୁଥିବା ସାମାଜିକ ସମୀକ୍ଷା ସଂସ୍ଥା ସମଗ୍ର ରାଜ୍ୟରେ ସାମାଜିକ ସମୀକ୍ଷା ଅନୁଷ୍ଠିତ ପାଇଁ ବାର୍ଷିକ କାର୍ଯ୍ୟସୂଚୀ ପ୍ରସ୍ତୁତ କରିବେ । ସାମାଜିକ ସମୀକ୍ଷା ପ୍ରତ୍ୟେକ ଗ୍ରାମପଞ୍ଚାୟତରେ ପ୍ରତ୍ୟେକ ଛଅ ମାସରେ ଥରେ ଅନୁଷ୍ଠିତ ହେବ । ସାମାଜିକ ସମୀକ୍ଷା ବାବଦରେ ବ୍ୟାପକ ସୂଚନା ଗ୍ରାମବାସୀମାନଙ୍କୁ ଗ୍ରାମସଭାର ଯଥେଷ୍ଟ ପୂର୍ବରୁ ଜଣାଇ ଦିଆଯିବ । ପଞ୍ଚାୟତ ସ୍ତରରେ ନିୟୋଜିତ ସାମାଜିକ ସମୀକ୍ଷା କର୍ମକର୍ତ୍ତା ସ୍ଥାନୀୟ ଲୋକଙ୍କୁ ବିଭିନ୍ନ ରେକର୍ଡ, ତଥ୍ୟ, ଯାଞ୍ଚ କାର୍ଯ୍ୟରେ ସହାୟତା ପ୍ରଦାନ କରିବେ । ଗ୍ରାମସଭା ବୈଠକ ପୂର୍ବରୁ ତଥ୍ୟ ସଂଗ୍ରହ ସହିତ ଏହାର ଯାଞ୍ଚ କାର୍ଯ୍ୟ ଶେଷ ହେବ । ଯାଞ୍ଚ ରିପୋର୍ଟ ଗ୍ରାମସଭାରେ ଉପସ୍ଥାପନ ହୋଇ ଆଲୋଚନା କରାଯିବ । ଗ୍ରାମସଭାର ନିଷ୍ପତ୍ତି ପ୍ରକାରେ ରାଜ୍ୟ ସରକାର ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବେ । ସାମାଜିକ ସମୀକ୍ଷା ଅନୁଷ୍ଠିତ ନିମନ୍ତେ ସ୍ୱତନ୍ତ୍ର ଭାବରେ ପାଣ୍ଠିର ମଧ୍ୟ ବ୍ୟବସ୍ଥା କରାଯାଇଅଛି ।

ସଂକ୍ଷେପରେ, ଗ୍ରାମସଭା ଦ୍ୱାରା ସ୍ୱଚ୍ଛତା ଓ ଉତ୍ତରଦାୟିତ୍ୱତାର ସଂସ୍କୃତିକୁ ତ୍ୱରାନ୍ୱିତ କରିବା ପାଇଁ ସାମାଜିକ ସମୀକ୍ଷା ଏକ ନିୟମିତ ଓ ପ୍ରଭାବଶାଳୀ ବ୍ୟବସ୍ଥା । ଏହି ସାମାଜିକ ସମୀକ୍ଷାର ବହୁଳ ପ୍ରଚାର, ପ୍ରସାର ଓ ପରିଚାଳନା ନିଶ୍ଚିତ ଭାବରେ ଗ୍ରାମୀଣ ଓଡ଼ିଶାର ବିକାଶର କାର୍ଯ୍ୟକ୍ରମଗୁଡ଼ିକୁ ପ୍ରଭାବଶାଳୀ କରିବା ଦିଗରେ ସହାୟକ ହେବ ବୋଲି ଦୃଢ଼ ଆଶା ।

ରାଜ୍ୟ ଗ୍ରାମ୍ୟ ଉନ୍ନୟନ ଓ
ପଞ୍ଚାୟତିରାଜ ପ୍ରତିଷ୍ଠାନ, ଭୁବନେଶ୍ୱର

# ଐଶ୍ୱରିକ ସତ୍ତା : ଏକ ଅନୁଭବ

ଡକ୍ଟର କିଶୋର ମହାନ୍ତି

ଭଗବାନ ଅଛନ୍ତି ଯେତିକି ବିସ୍ମୟ ଲାଗେ, ଭଗବାନ ନାହାନ୍ତି ସେତିକି ବିସ୍ମୟ କରେ । ପୁନରାୟ ଭଗବାନଙ୍କର ସ୍ଥିତି ଉପରେ ଅଧିକ ବିଚାର ବିମର୍ଶ କରିବା ଆହୁରି ବିସ୍ମୟାଭିଭୂତ କରିପକାଏ । ଏ ସଂପର୍କରେ ଗବେଷଣା ଓ ଚର୍ଚ୍ଚା କରିବାକୁ ଗଲେ ପୂର୍ଣ୍ଣଚ୍ଛେଦ ପଡ଼େ । କେହି ଆଗକୁ ବଢ଼ନ୍ତିନି । କିନ୍ତୁ ଶାସ୍ତ୍ରରେ ବର୍ଣ୍ଣିତ 'ସକଳ ଘଟେ ନାରାୟଣ', ନାରାୟଣ ସମସ୍ତଙ୍କ ଶରୀରରେ ବିଦ୍ୟମାନ– ଆମେ କିନ୍ତୁ ଦେଖିପାରୁନା । ସେଥିପାଇଁ ଦିବ୍ୟଚକ୍ଷୁର ଆବଶ୍ୟକତା ପଡେ ।

ଭକ୍ତ ପ୍ରହଲ୍ଲାଦ ତାଙ୍କର ପିତା ହିରଣ୍ୟକଶ୍ୟପଙ୍କୁ ଉତ୍ତର ଦେଇ କହିଥିଲେ, ସବୁଠି ପ୍ରଭୁ ମୋର ବିଦ୍ୟମାନ । ଖୁମ୍ବକୁ ଦେଖାଇ କହିଲେ– ଏଇଠି ଭଗବାନ କ'ଣ ଅଛନ୍ତି ? ପ୍ରହଲ୍ଲାଦ କହିଥିଲେ ହଁ । କିଛି କ୍ଷଣରେ ପ୍ରଭୁଙ୍କର ଆବିର୍ଭାବ ଘଟିଲା । ଆଉ ପ୍ରଭୁ ନରସିଂହ ରୂପ ଧରି ପାପୀ ହିରଣ୍ୟକଶ୍ୟପଙ୍କୁ ବିଦାରି ତା' ଅନ୍ତ ଫାଡ଼ିଦେଲେ ।

ପୁନରାୟ ଯୁଦ୍ଧ ଭୂଇଁରେ ପ୍ରଭୁ ନିଜର ବିଶ୍ୱରୂପ ଦେଖାଇଛନ୍ତି– ନିଜର ବନ୍ଧୁ ଅର୍ଜୁନଙ୍କୁ, ସ୍ୱୟଂ ଅର୍ଜୁନ ସେଇ ବିଶ୍ୱରୂପ ସଂଦର୍ଶନ କରି ନିଜର ଚୈତି ସତ୍ତାରେ ପ୍ରଭୁଙ୍କୁ ଅନୁଭବ କରିଛନ୍ତି । ସେ କହିଛନ୍ତି––

''ହେ ମହାବାହୁ ବିଶ୍ୱମ୍ବର, ତୋର ଅସଂଖ୍ୟ ମୁଖ ମୁଁ ଦେଖୁଛି। ଅସଂଖ୍ୟ ଦୀପ୍ତିମନ୍ତ ଚକ୍ଷୁ, ଅସଂଖ୍ୟ କର, ଚରଣ, ଅସଂଖ୍ୟ ଭୟଙ୍କର ତୀକ୍ଷ୍ଣ ଦନ୍ତ ଦେଖି ସମସ୍ତେ ଭୀତତ୍ରସ୍ତ, ମୁଁ ମଧ୍ୟ ଭୟରେ ବିହ୍ୱଳ ହୋଇପଡୁଛି...'' !

ଏପରି ସ୍ୱରୂପ ଯେଉଁ ଭଗବାନଙ୍କର, ସାଧାରଣ ମଣିଷ ତାଙ୍କୁ ଚିହ୍ନିବା ବଡ଼ କଷ୍ଟକର । କିନ୍ତୁ ପଣ୍ଡିତମାନେ କହିଥାନ୍ତି, ''ଭଗବାନ ତ ସର୍ବତ୍ର ।''

ବିଶ୍ୱପ୍ରସିଦ୍ଧ ବୈଜ୍ଞାନିକ ତଥା ଭାରତର ପୂର୍ବତନ ରାଷ୍ଟ୍ରପତି ଡକ୍ଟର ଏ.ପି.ଜେ. ଅବଦୁଲ୍ କଲାମଙ୍କର ଗୋଟିଏ ଭାବପୂର୍ଣ୍ଣ ବକ୍ତବ୍ୟ ହିଁ ଭଗବାନ ସର୍ବତ୍ର ବିଦ୍ୟମାନ ବୋଲି ଧାରଣା ଉପୁଜାଏ । ତାଙ୍କର ସେ ବହୁମୂଲ୍ୟ ବକ୍ତୃତା ହିଁ କେତେକାଂଶରେ ଆମ ସନ୍ଦେହ ଦୂର କରିବାରେ ସହାୟକ ହୋଇଥାଏ ।

ତାଙ୍କ ବକ୍ତବ୍ୟରେ ସେ ଉଲ୍ଲେଖ କରିଥିଲେ ଯେ ତାଙ୍କ କମ୍ପାନିର ବୈଠକୀରେ ଜଣେ ବିଦ୍ୱାନ୍ ବକ୍ତା ଆସିଥିଲେ ଓ ସେ ତାଙ୍କ ସହ ଭେଟ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ ଏବଂ ତାଙ୍କ ବାର୍ତ୍ତାଳାପଟି ସେ ଉଦ୍ଧୃତ କରିବା ଅଧିକ ସମୀଚୀନ ଭାବି ବକ୍ତୃତା ପ୍ରଦାନ କଲେ । ବରୋଦାର ଜଣେ ବିଶିଷ୍ଟ ତଥା ଜଣାଶୁଣା ହୃଦ୍‌ରୋଗ ଚିକିତ୍ସକ ଯାହାଙ୍କର ନାମ ଏସ୍.ଶୈଳେଶ ମେହେଟ୍ଟା । ହୃଦ୍‌ରୋଗ ବିଶେଷଜ୍ଞ ଭାବରେ ସେ ଖୁବ୍ ସୁନାମ ଅର୍ଜନ କରିଛନ୍ତି । ତାଙ୍କ ସହ ସାକ୍ଷାତ୍ କରିବାକୁ ହେଲେ ଅନ୍ୟୁନ ଏକମାସର ମହଲତ ମାଗିବାକୁ ପଡ଼େ । ସେଇ ବକ୍ତାଙ୍କର ଅତି ଅନ୍ତରଙ୍ଗ ବନ୍ଧୁ ଥିଲେ ସେ । କୌଣସି ଗୋଟିଏ ଦିନ ବକ୍ତାଙ୍କ ସହ ଏହି ୬୬ ବର୍ଷୀୟ ଡାକ୍ତର କୌଣସି ଗୋଟିଏ ହୋଟେଲ ବାରଣ୍ଡାରେ ରାତ୍ରିଭୋଜନ ଅପେକ୍ଷାରେ ଥିଲେ । ସେତିକିବେଳେ ସେ ଏହି କାହାଣୀଟି କହିଲେ ।

ଗୋଟିଏ ଦମ୍ପତି ନିଜର ୬ ବର୍ଷର ଝିଅକୁ ସାଙ୍ଗରେ ଧରି ତାଙ୍କ କକ୍ଷ ଭିତରକୁ ପ୍ରବେଶ କଲେ । ତାଙ୍କୁ ନଥିଟିକୁ ଦେଖାଇଲେ । ଏହା ସତ୍ୟ ଯେ ଛୋଟ ପିଲାଟିର ହୃଦୟଟା ଅତି ଜଟିଳ ଅବସ୍ଥାରେ ଥିଲା । ଏହା ପୂର୍ବରୁ ଅନ୍ୟ ଜଣେ ଡାକ୍ତରଙ୍କ ସହ ଏ ସଂପର୍କରେ ପରାମର୍ଶ ନେଇଥିଲେ । କିନ୍ତୁ ସେ ସିଧା ମନା କରିଦେଇଥିଲେ । ଶ୍ରୀ ମେହେଟ୍ଟା ସେ ଦୁହିଁଙ୍କୁ ଭଲ ଭାବରେ ବୁଝାଇ ସାନ୍ତ୍ୱନା ଦେଲେ ଯେ ଝିଅର ଅବସ୍ଥା ଅତି ଶୋଚନୀୟ ଏବଂ ତା'ର ତୁରନ୍ତ ଅପରେସନ ଦରକାର । କେବଳ ତିନିରୁ ଛଅମାସ ସେ ଜୀବନ ବିତାଇପାରେ ? ବଂଚିବା କେବଳ ୩୦% ସମ୍ଭାବନା ରହିଛି ଏବଂ ଆଉ ସତୁରୀ ଶତାଂଶ ମୃତ୍ୟୁ ଆଡ଼କୁ ତାକୁ ଟାଣି ନେଉଛି । ଆଉ ଯଦି ସର୍ଜରୀ କରାଯାଏ ତେବେ ୩୦% ଭାଗ ହିଁ ସଫଳତା ମିଳିପାରେ । ବଂଚିଯାଇପାରେ ବି ନ ପାରେ । ଆଖିରୁ ଅଶ୍ରୁ ବୁହାଇ ଦୁଃଖିତ ଅବସ୍ଥାରେ ଦୁହେଁ ଅପରେସନ କରିବା ପାଇଁ ଡାକ୍ତରଙ୍କୁ ଅନୁରୋଧ କଲେ ।

ତା'ପରେ ପିଲାଟିକୁ ହସ୍ପିଟାଲରେ ଭର୍ତ୍ତି କରାଗଲା ଓ ଅପରେସନର ତାରିଖ ମଧ୍ୟ ମା'ବାପାଙ୍କୁ ଜଣାଇ ଦିଆଗଲା ।

ଯେତେବେଳେ ଅପରେସନ ଟେବୁଲକୁ ଯିବାପାଇଁ ନର୍ସ ସେହି ଝିଅକୁ ପ୍ରସ୍ତୁତ କରାଉଥିଲେ, ଡାକ୍ତର ମେହେଟ୍ଟା ଠିକ୍ ସେତିକିବେଳେ ସେ ରୁମ୍ ଭିତରକୁ ପ୍ରବେଶ କଲେ । ସେ ଆଗରୁ ଏତେବଡ଼ ବଡ଼ ଅପରେସନ କରିଛନ୍ତି ଏବଂ ସେ ଜାଣିଥିଲେ ଏହା ଏକ ଅଦ୍ଭୁତ ଏବଂ ନୂଆ ପ୍ରକାରର ଅଭିଜ୍ଞତା । ଡାକ୍ତର ମେହେଟ୍ଟା ଝିଅ ଆଡ଼େ ଚାହିଁଲେ । ସେ ଦୁଇଜଣଙ୍କ ଭିତରେ କଥାବାର୍ତ୍ତା ଚାଲିଲା ।

ଡକ୍ଟର ମେହେଟ୍ଟା– କେମିତି ଲାଗୁଛି ?

ଝିଅଟି କହିଲା ମୁଁ ଭଲ ଅଛି ଡାକ୍ତର । କିନ୍ତୁ ଆପଣଙ୍କୁ ପଚାରିବା ପାଇଁ ମୋର ଗୋଟେ ପ୍ରଶ୍ନ ଅଛି । ଡକ୍ଟର ମେହେଟ୍ଟା– – କ'ଣ ତାହା ?

ଝିଅ– – ସମସ୍ତେ ତ କହୁଛନ୍ତି କି ମୋର ହାର୍ଟ ସଜରୀ କରିବାକୁ ପଡ଼ିବ । ଏହାର ଅର୍ଥ କ'ଣ ଯେ ମୋ ହାର୍ଟକୁ ଆପଣ କ'ଣ ପୂରା ଖୋଲିଦେଇ ବାହାରକୁ ନେଇଆସିବେ ? ଡକ୍ଟର ମେହେଟ୍ଟା – –ଆରେ, ଏତେକଥା କାହିଁକି ଭାବୁଛ ? ତୁମକୁ କିଛି ହିଁ କଷ୍ଟ ହେବ ନାହିଁ । ସେଥିପାଇଁ ତୁମକୁ ମୁଁ ଔଷଧ ଦେବି । ମୋଟେ କିଛି ଭାବନି ମା', ଭଲ ହେଇଯିବ । ଝିଅ– – ମୁଁ କିନ୍ତୁ ବ୍ୟସ୍ତ ଯେ ମୋ ହୃଦୟକୁ ପୂରା ଖୋଲିଦେବେ ? କାହିଁକି ନା ମୋ ମା' ମୋତେ ସବୁବେଳେ କହନ୍ତି ଭଗବାନ ସବୁବେଳେ ମୋ' ହୃଦୟରେ ଥାଆନ୍ତି । ଏଇଥିପାଇଁ କହୁଛି ଯଦି ଆପଣ ତାକୁ ଖୋଲୁଥାନ୍ତି ଆପଣ କ'ଣ ତା' ଭିତରେ ଈଶ୍ୱରଙ୍କୁ ଦେଖିପାରିବେ ? ମୋର ଅପରେସନ ପରେ ମୋତେ ଦୟାକରି କହିବେ ନା, ସେ ଦେଖିବାକୁ କେମିତି ?

ଏ କଥା ପଦକରେ ଡକ୍ଟର ମେହେଟ୍ଟା ସ୍ତମ୍ଭୀଭୂତ ହୋଇଗଲେ ! ନିଜର ସତ୍ତା ଭୁଲିଗଲେ କିଛି କ୍ଷଣ ପାଇଁ । ତାଙ୍କ ମନରେ ଆସୁନଥିଲା ଯେ ଏହାର ଉତ୍ତରରେ ସେ ଝିଅଟିକୁ କ'ଣ ଦେବେ ! ତା'ପରେ ଅପରେସନ ଥିଏଟର ଆଡ଼କୁ ପାଦ ବଢ଼ାଇଲେ ଡାକ୍ତର । ଅପରେସନ ଆରମ୍ଭ ହେଲା । ଜମାଟ ବାନ୍ଧିବା ଯୋଗୁଁ ରକ୍ତ ହୃଦୟକୁ ପ୍ରସରି ଯାଉନଥିଲା । ପ୍ରାୟ ୪୫ ମିନିଟ ଅତିବାହିତ ହୋଇଥିଲା । ଆଉ ସବୁକିଛି ସରିଲା ପରେ ଡାକ୍ତର ମେହେଟ୍ଟା ତାଙ୍କ ସାଥୀ ଓ ଅନ୍ୟାନ୍ୟ ଡାକ୍ତରଙ୍କୁ କହିଲେ ଯେ ନା ଆଉ କିଛି ହେବନି ।

ପରେ ପରେ ଡାକ୍ତରଙ୍କ ମନକୁ ସେଇ ଝିଅଟିର କଥାଟି ବାରମ୍ବାର ଆଘାତ କଲା । ସେ ନିଜକୁ ଦୋଷୀ ବୋଲି ଭାବୁଥିଲେ । ସେ ଚାଲିଯାଉଥିଲେ ଯେତେବେଳେ ଏଇ କଥାକୁ ମନେ ପକାଇଲେ, ଠିକ୍ ସେତିକିବେଳେ ଅନ୍ୟ ଜଣେ ସାଥି ଡାକ୍ତର କହିଲେ, ତା' ହାର୍ଟରୁ ଏବେ ରକ୍ତ ନିର୍ଗତ ହେଲାଣି । ଏହା ସତରେ ଏକ ବାସ୍ତବିକ ଘଟଣା । ଏମିତି କ'ଣ କିଛି ହେଲା ଯେମିତି ବଡ଼ ଚମତ୍କାରିତା ! ଡାକ୍ତର ତା'ର ପିତାମାତାଙ୍କୁ ସିଧା ମନା କରିଦେଇଥିଲେ । ପୁନରାୟ ଅପରେସନ ଟେବୁଲ ପାଖକୁ ସମସ୍ତଙ୍କୁ ଡାକିଲେ ।

ଶେଷରେ ଅପରେସନ ସଫଳ ହେଲା । ଝିଅଟିର ହାର୍ଟ ସଂପୂର୍ଣ୍ଣ ଭାବରେ ଚାଲିଲା । ଏବେ ସେ ଶାନ୍ତିପୂର୍ଣ୍ଣ

ଜୀବନ କାଟୁଛି । ଅପରେସନ ପରେ ପରେ ଯେବେ ସେ ଝିଅ ପାଖକୁ ଭଲମନ୍ଦ ବୁଝିବାକୁ ଗଲେ, ସେ ଭାବିନଥିଲେ କି ଝିଅଟି ତାଙ୍କୁ କ'ଣ ପଚାରିବ ? କିନ୍ତୁ ଡାକ୍ତର ଜଣକ ଝିଅଟିକୁ କହିଲେ,- ''ଈଶ୍ୱରଙ୍କୁ ଖୋଜିବାକୁ ଚେଷ୍ଟା କରନାହିଁ । ଈଶ୍ୱରଙ୍କୁ କେବେ ଖୋଜାଯାଏ ନାହିଁ ।'' ମୋତେ ଏହି ଅପରେସନରୁ ହିଁ ଏକ ଶିକ୍ଷା ମିଳିଲା । ଈଶ୍ୱରଙ୍କ ଉପରେ ବିଶ୍ୱାସ ରଖ ଆଉ ସେ ତୁମକୁ ନିଶ୍ଚିତ ସାହାଯ୍ୟ କରିବେ ।

ଏକଥା କହିଲା ବେଳେ ଡକ୍ଟର ମେହେଢାଙ୍କ ଆଖିରୁ ଅଶ୍ରୁ ବହିବାରେ ଲାଗିଥିଲା । ସେ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ ତାଙ୍କର ୪୦ ବର୍ଷର ଦୀର୍ଘ ସାଧନା ଓ ଅଭିଜ୍ଞତା ଏହି ମହତ୍ତ୍ୱପୂର୍ଣ୍ଣ କଥାଟି ସେଇ ସାମାନ୍ୟ ଝିଅଟି ତାଙ୍କୁ ଶିଖାଇ ଦେଲା । ସେ ହଜାର ହଜାର ହୃଦୟ ଖୋଲି ତନ୍ନତନ୍ନ କରି ଦେଖିଛନ୍ତି, କିନ୍ତୁ ଏଇ ସାମାନ୍ୟ ଘଟଣାଟି ତାଙ୍କ ହୃଦୟକୁ ବିଚଳିତ କରିପକାଇଥିଲା । ଭଗବାନ ଅଛନ୍ତି- ଯାହାଙ୍କ ନାମ ସ୍ମରଣ କରି ହଜାର ହଜାର ହୃଦ୍‌ରୋଗୀଙ୍କୁ ସେ ଭଲ କରିପାରୁଛନ୍ତି । ଭଗବାନ ନାହାନ୍ତି ବୋଲି କିଏ କହିଲା ?

ଇ-୫୦, ସେକ୍ଟର-୭
ମର୍କତନଗର, ସିଡିଏ, କଟକ-୧୪

# ମହା ଶିବରାତ୍ରି

**ଇଂଜିନିୟର ରଘୁନାଥ ପାତ୍ର**

ଫାଲ୍‌ଗୁନ ମାସର କୃଷ୍ଣପକ୍ଷ ଚତୁର୍ଦ୍ଦଶୀ
ଅର୍ଦ୍ଧରାତ୍ରି ଶିବରାତ୍ରି ନାମେ ସୁବିଦିତ
ଚତୁର୍ଦ୍ଦଶୀ ସ୍ୱାମୀ ହେଉଛନ୍ତି ମହେଶ୍ୱର
ଶିବ ରାତ୍ରେ ଶିବ ଲିଙ୍ଗ ହେଲେ ଆବିର୍ଭୂତ ।
ଦିବସେ ପାଳିତ ଆନ ଦେବତାଙ୍କ ପୂଜା
'ମହା ଶିବରାତ୍ର' ବ୍ରତ ହୁଏ ଅର୍ଦ୍ଧ ରାତ୍ରେ
ଶିବଙ୍କ ପ୍ରିୟ ସମୟ ତମୋମୟୀ ନିଶି
ଭୁକ୍ତି ମୁକ୍ତି ପ୍ରଦାୟକ ପ୍ରଭୁ ଉମାପତେ ।
ପ୍ରକାଶର ସଂହାର ହିଁ ରାତ୍ରି ଆଗମନେ
ଜୀବମାନଙ୍କର କର୍ମ ଚେଷ୍ଟାର ସଂହାର
ନିଦ୍ରାଭିଭୂତ ଜଗତ ହରାଏ ଚେତନା
ସଂହାରିଣୀ ରାତ୍ରି କୋଳେ ଅଚେତ ସକଳ ।
ଆଗମ ନିଗମ ଶାସ୍ତ୍ର ପ୍ରଣେତା ଶଙ୍କର
ଆଚାର୍ଯ୍ୟ ଗିରୀଶ ଶ୍ରେଷ୍ଠ, ସବୁରି ନମସ୍ୟ
ତ୍ରେତୟାରେ ରାମ, ଦ୍ୱାପରରେ କୃଷ୍ଣ ଚନ୍ଦ୍ର
ଭକ୍ତି ଭରେ କଲେ ପୂଜା ପ୍ରଭୁ ବ୍ୟୋମକେଶ ।
ଶିବ ଅଂଶୀ ହନୁମାନ ରାମ ସହାୟକ
ଭାରତ ସମରେ ପାର୍ଥ ରଥରେ ମାରୁତି
ଜୀବନ ସଂଗ୍ରାମେ ଯଦି ଚାହଁ ସଫଳତା
ଶିବ ଉପାସନା ଶ୍ରେୟ, ମିଳେ ଯଶ କୀର୍ତ୍ତି ।
ଶିବ ଶବ୍ଦାର୍ଥ ମଙ୍ଗଳ, ଅଶିବ ଅଶୁଭ
ଶିବଙ୍କ କୃପାରୁ ଜୀବ ଲଭେ ହରି ଭକ୍ତି
ଲଙ୍କା ଜୟ କଲେ ରାମ ଈଶାନ କୃପାରୁ
ଗୋପେଶ୍ୱର ପୂଜି ନନ୍ଦ ଲଭିଲେ ଶ୍ରୀପତି ।
ମହା ଶିବରାତ୍ରି କାଳେ ତେଣୁ ଶିବ ଭକ୍ତ
ଦୀପ ଜାଳି ଜ୍ୟୋତିର୍ଲିଙ୍ଗ କରିଥାଏ ପୂଜା
ଭକ୍ତ ମନୋବାଞ୍ଛା ପୂର୍ଣ୍ଣ କରନ୍ତି ଅଚିରେ
ଆଶୁତୋଷ ନାମେ ବିଶ୍ୱେ ଉଡ଼େ ଯଶଧ୍ୱଜା ।
କବି ରଘୁ ପିତା ମାତା ଈଶାନ ପାର୍ବତୀ
ଉଭୟ କୃପାରୁ ଜ୍ଞାନ ଭକ୍ତିର ଉଦୟ
ଜଡ଼ବତ୍ ହୋଇପାରେ ବିଶ୍ୱେ ବ୍ରହ୍ମବିତ୍
ଦୁବକୁ କରନ୍ତି ଦାରୁ, ଏଇତ ବିସ୍ମୟ !

ବୃନ୍ଦାବନ ଧାମ
ଲୋକନାଥ ରୋଡ଼, ପାଟଣାହାଟ ସାହି ଛକ
ପୁରୀ-୭୫୨୦୦୧

ଏରସମାର ମହାନାୟକ ତଥା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଭୀମ ଚରଣ ଦାଶଙ୍କ ସ୍ମୃତିରେ

# ସଂଗ୍ରାମର ପଥେ...

**କିରଣବାଳା ଦାଶ**

ଆଧୁନିକତାର ଉପଢୌକନକୁ ଆଧାର କରି, ବିଜ୍ଞାନ ପରି ଏକ ଦ୍ରୁତଗାମୀ ଲଗାମ୍ ବିହୀନ ଘୋଡା ଉପରେ ସବାର ହୋଇ, ଆମେ ସଭିଏଁ ଧାଇଁଛେ ଆଗକୁ ଆଗକୁ । ବହୁତ ବଡ ଏକ ପ୍ରତିଯୋଗିତାର ଭାବନାକୁ ମନରେ ନେଇ, ବହୁତ କିଛି ପାଇ ଯିବାର ଆଶା ଓ ଅହଂକାରର ବଶବର୍ତ୍ତୀ ହୋଇ, ସୁ-ଉଚ୍ଚ ପିରାମିଡ ଗଢି ତୋଳିବାର ସ୍ୱପ୍ନ ନେଇ ଆଗେଇ ଚାଲିଛେ । ଆମେ କଣ ଥିଲେ, ପଛକୁ ଫେରି ଚାହିଁବା ନାହିଁ ? ନିଜକୁ ଥରେ ପ୍ରଶ୍ନ କରିବା ନାହିଁ ? ଆଜି ଆମେ ଯେଉଁ ସ୍ୱାଧୀନ ଭାରତର ଗଣତନ୍ତ୍ରର ସୁନେଲି ସୂର୍ଯ୍ୟକିରଣରେ ସ୍ୱତନ୍ତ୍ରତାର ସାତ ରଙ୍ଗରେ ନିଜକୁ ରଙ୍ଗାଇ ଖୁସିରେ ଜୀବନ ନିର୍ବାହ କରୁଛୁ, ସ୍ୱାଧୀନ ଭାରତର ନାଗରିକ ବୋଲି ତ୍ରିରଙ୍ଗା ତଳେ ଏକତ୍ରିତ ହେଉଛୁ, ଆମକୁ ସେ ସୌଭାଗ୍ୟର ଅଧିକାରୀ କଲା କିଏ ? ତାହା ସମ୍ଭବ ହେଲା କେମିତି ? ଯେଉଁ କ୍ରାନ୍ତିବୀରମାନେ ଫିରିଙ୍ଗି ହଟାଇ, ଆମ ପାଇଁ, ଏ ଜାତି ପାଇଁ ବେତି କୋରଡାର ପାହାର ଖାଇ, ଗୋଳାବାରୁଦ ସାମ୍ନାରେ ଛାତି ପତାଇ, ନିଜର ଲହୁ ଲୁହ ଢାଳି, ଏ ମାଟିକୁ ଶୃଙ୍ଖଳ ମୁକ୍ତ କରିଥିଲେ, ପରାଧୀନତାର କଳା ବାଦଲକୁ ଆମ ହିନ୍ଦୁସ୍ଥାନର ଆକାଶରୁ ହଟାଇ ଦେଇଥିଲେ, ସ୍ୱାଧୀନ ସୂର୍ଯ୍ୟର ଉଷ୍ମତାରେ ମଜବୁତ୍ ହୋଇ ଛିଡା ହେବାର ଇନ୍ଧନ ଯୋଗାଇଥିଲେ, ଆମେ କ'ଣ ତାଙ୍କ ତ୍ୟାଗ ଆଦର୍ଶର ମହାନତାର ପରାକାଷ୍ଠାକୁ ସ୍ମୃତି କରି ସାଇତି ନରଖି ହଜାଇ ଦେବା । ଯଦି ନା, ତେବେ ଆସନ୍ତୁ, ଆମେ ଏକ ପ୍ରୟାସ ଜାରି ରଖିବା, ହଜିଲା ସ୍ୱର୍ଣ୍ଣାଭ ସ୍ମୃତି ଶିଖାଗୁଡିକୁ ପ୍ରଜ୍ୱଳିତ କରି, ଖୋଜି ଖୋଜି ପଲ୍ଲୀ ମାଟିର ସେହି ବ୍ୟଥାତୁର ସଂଗ୍ରାମୀମାନଙ୍କର ଦୁଃଖଭରା କାହାଣୀଗୁଡିକୁ ଲୋକାବଗତ କରାଇବା, ଯେଉଁମାନେ ମରି ମଧ୍ୟ ଅମର, ସେ ବଞ୍ଚିଛନ୍ତି ଆମରିମାନଙ୍କ ଭିତରେ । ତ୍ୟାଗ ଆଉ ଆଦର୍ଶର ମଜବୁତ୍ ଖମ୍ଭ ସଦୃଶ । ଚିର ସ୍ମରଣୀୟ ହୋଇ । ସେହିପରି ଜଣେ ଐତିହାସିକ ସୁପୁରୁଷ, ସ୍ୱାଧୀନତା ସଂଗ୍ରାମର ରଣଭୂମିରେ, ତ୍ୟାଗ ଆଦର୍ଶର ପରାକାଷ୍ଠା ଦେଖାଇ ଓଡିଶା ଜାତିର ବୀର ସୈନିକ ପରି, ସ୍ୱାଧୀନତାର ରଣଭୂମିକୁ ଓହ୍ଲାଇ ଯାଇଥିଲେ ଇଂରେଜଙ୍କୁ ଏ ଦେଶରୁ ହଟାଇବା ପାଇଁ । ତେବେ ଆସନ୍ତୁ ଜାଣିବା ସ୍ୱର୍ଗତଃ ଭୀମ ଚରଣ ଦାଶଙ୍କର ଦୁଃଖଭରା କାହାଣୀ ।

ଯାଜପୁର ଜିଲ୍ଲାର, ବିଞ୍ଝାରପୁର ନିର୍ବାଚନ ମଣ୍ଡଳୀର ଏକ ଛୋଟ ଗାଁ ବ୍ରାହ୍ମଣୀ ଗାଁ(ଠାକୁର ବାଡି), ଚିକଣା ପଞ୍ଚାୟତରେ ଅବସ୍ଥିତ । ପ୍ରଭୁ ଦଧିବାମନଜୀଉଙ୍କର ସେବାୟତ ପରିବାରରେ ଜନ୍ମ ତାଙ୍କର । ପିତା ରାମଚନ୍ଦ୍ର ଦାଶଙ୍କର ମଧ୍ୟମ ପୁତ୍ର ଭାବେ ୧୯୧୧ ମସିହାରେ ଜନ୍ମଗ୍ରହଣ କରି ମାତା ସାବିତ୍ରୀ ଦେବୀ ଏ ମାଟିକୁ ଓ ଏ ଜାତିକୁ ଧନ୍ୟ କରି ଦେଇଥିଲେ । ଜ୍ୟେଷ୍ଠ ଭାଇ ଯୁଧିଷ୍ଠିର ଦାଶ, ଭଗିନୀ କୁଞ୍ଜେଶ୍ୱରୀଙ୍କୁ ନେଇ ତାଙ୍କର ଏକ ଛୋଟ ପରିବାର । ତାଙ୍କୁ ଯେତେବେଳେ ଆଠ ବର୍ଷ ବୟସ ସେତେବେଳେ ତାଙ୍କ ପିତା ରାମଚନ୍ଦ୍ରଙ୍କର ଦେହାନ୍ତ ହୋଇଥିଲା । ବଡ ଭଉଣୀ କୁଞ୍ଜେଶ୍ୱରୀ ବିବାହ କରି

ଶାଶୁଘରକୁ ଚାଲିଯାଇଥିଲେ । ମାତ୍ର ସାବିତ୍ରୀ ଦେବୀ ୪ ମାସର ଅନ୍ତଃସତ୍ତ୍ୱା ଥିଲେ । ବଡ ନନା ଘରର ଦାୟିତ୍ୱ ତୁଲାଇବା ନିମନ୍ତେ ରୋଜଗାର ନିମନ୍ତେ ସୁଦୂର କଲିକତା ଚାଲିଯାଇଥିଲେ । କିଛି ଦିନ ପରେ ତାଙ୍କର ଆଉ ଏକ ସାନ ଭାଇ ତାଙ୍କ ସଂସାରକୁ ଆସିଥିଲେ । ନଅ ବର୍ଷ ବୟସରେ, ଭୀମଚରଣଙ୍କର ବ୍ରତୋପନୟନ ଶେଷ ପରେ ତାଙ୍କୁ, ଇଷ୍ଟଦେବ ଶ୍ରୀଶ୍ରୀ ଦଧିବାମନ ଜୀଉଙ୍କର ସେବା ନୀତିର ଭାର ଗ୍ରହଣ କରିବାକୁ ପଡିଥିଲା । ଘରେ ବିଧବା ମା' ଓ ଛୋଟ ଭାଇ ସଂସାର ଭାର ତାଙ୍କ ଉପରେ । ସେ ଏକାକୀ ଏ ସମସ୍ତ ଦାୟିତ୍ୱ ତୁଲାଉ ଥାଆନ୍ତି । ୧୯୨୧ମସିହାରେ ଜଣେ ପଡୋଶୀଙ୍କ ସହିତ ସେ ମଧ୍ୟ ରୋଜଗାର ପାଇଁ କଲିକତା ଚାଲିଗଲେ, ମାଆଙ୍କ ଦାୟିତ୍ୱରେ ସବୁ ଛାଡି ଦେଇ । କଲିକତାରେ ଜଣେ ବଂଗାଳୀ ଭଦ୍ରଲୋକଙ୍କ ଘରେ ସେ ମନ୍ଦିର ପୂଜା ଦାୟିତ୍ୱ ନେଇ ଚାକିରି କଲେ, ତା'ସହିତ ତାଙ୍କ ଘରର ରୋଷେଇ ମଧ୍ୟ । ଯାହା ବେତନ ପାଆନ୍ତି, ମାଆଙ୍କ ନିକଟକୁ ପଠାଇ ଦିଅନ୍ତି ।

ସଂଗ୍ରାମୀ ଭୀମ ଚରଣ ଯେଉଁ ବଙ୍ଗାଳୀ ବାଡିରେ ରହୁଥିଲେ ସେଠାରେ ଗୋଟିଏ ଓଡିଆ ପଡା ମଧ୍ୟ ଥିଲା । ପିଲାମାନଙ୍କର ପାଠପଢା ନିମନ୍ତେ ଗୋଟିଏ ଓଡିଆ ସ୍କୁଲ ମଧ୍ୟ ଥିଲା । ସେ ରାତିରେ ସେଠାରେ ପାଠ ପଢୁଥିଲେ । ଥରେ ଗଂଗା କୂଳରେ ଦୈବାତ୍ ତାଙ୍କର ଦେଖା ହୋଇଥିଲା ଉତ୍କଳଗୌରବ ମଧୁବାବୁଙ୍କ ସହିତ । ଓଡିଆ ପିଲା ଜାଣି ସେ ତାଙ୍କର ନାଁ, ଗାଁ, ଠିକଣା ଓ ବୃତ୍ତି ବିଷୟରେ ପଚାରି ବୁଝିଥିଲେ । ଜଣେ ବ୍ରାହ୍ମଣ ପିଲା ଏତେ ଛୋଟ ବୟସରେ ପର ଘରେ ରୋଷେଇ କରୁଛି ଜାଣି ସେ ତାଙ୍କୁ ଗୋଟିଏ ଠିକଣା ଦେଇ କହିଥିଲେ ସାକ୍ଷାତ୍ କରିବା ପାଇଁ ଏବଂ ଏହି କଥାର ଗୋପନୀୟତା ରକ୍ଷା କରିବାକୁ ନିର୍ଦ୍ଦେଶ ମଧ୍ୟ ଦେଇଥିଲେ । କିଶୋର ଭୀମ ଚରଣ ସେ ଠିକଣାରେ ଯାଇ ତାଙ୍କୁ ଯଥା ସମୟରେ ଭେଟିଥିଲେ । ମଧୁବାବୁ ତାଙ୍କ କଥାବାର୍ତ୍ତା ଚାଲିଚଳଣିରେ ଖୁବ୍ ପ୍ରଭାବିତ ହୋଇ ତାଙ୍କୁ ତାଙ୍କ ନିକଟରେ ରହିବାକୁ କହିଥିଲେ । ସେଠାରେ ତାଙ୍କର ପଢାପଢି ସମସ୍ତ ବନ୍ଦୋବସ୍ତ ମଧ୍ୟ କରି ଦେଇଥିଲେ ।

ବହୁ ବିଶିଷ୍ଟ ମାନ୍ୟଗଣ୍ୟ ବ୍ୟକ୍ତିବିଶେଷଙ୍କୁ ନେଇ କଲିକତାରେ ଏକ ଅଧିବେଶନ ବସିଥିଲା । ସେ ସେହି କଂଗ୍ରେସ ଅଧିବେଶନରେ ଖାଦ୍ୟପେୟ ଯୋଗାଇବାର ଦାୟିତ୍ୱରେ ଥିଲେ । ଏ ଦାୟିତ୍ୱ ତାଙ୍କୁ ମଧୁବାବୁ ଦେଇଥିଲେ । ଭୀମଚରଣଙ୍କ ହାତ ତିଆରି ଖାଦ୍ୟରେ ଏକ ନିଆରା ସ୍ୱାଦ ଥାଏ ବୋଲି ସେ ସେଠାରେ ସମସ୍ତଙ୍କ ଆଗରେ ବର୍ଣ୍ଣନା କରିଥିଲେ । ଉକ୍ତ ସଭାରେ ସେ ମହାତ୍ମା ଗାନ୍ଧୀଙ୍କୁ ପ୍ରଥମ ଥର ଦେଖିଥିଲେ । ବହୁ ବରେଣ୍ୟ ବିଶିଷ୍ଟ ନେତାଙ୍କ ସଂସ୍ପର୍ଶରେ ଆସିଥିଲେ ଏବଂ ପରିଚିତ ମଧ୍ୟ ହୋଇଥିଲେ । ହରେକୃଷ୍ଣ ମହତାବଙ୍କୁ ସେ ସେହିଠାରେ ହିଁ ଚିହ୍ନିଥିଲେ । ୧୯୨୯ ମସିହାରେ ସେ ବିଶେଷ ଏକ ଗୋପନୀୟ ପତ୍ର ନେଇ କଟକ ଆସିଥିଲେ । ସେଠାରେ ପହଞ୍ଚି, ଗୋପବନ୍ଧୁ ଦାସ, ସରଳା ଦେବୀ, ଗୋପବନ୍ଧୁ ଚୌଧୁରୀ, ମା' ରମାଦେବୀ, ନବକୃଷ୍ଣ ଚୌଧୁରୀ, ଆଚାର୍ଯ୍ୟ ହରିହର ଦାସଙ୍କ ସଂସ୍ପର୍ଶରେ ଆସିଥିଲେ । ସେସମୟରେ ସ୍ୱରାଜ ଆନ୍ଦୋଳନ ଖୁବ୍ ଜୋର୍‌ରେ ତେଜି ଉଠିଥାଏ । ୧୯୩୫ ମସିହାରେ ଲବଣ ଆଇନ୍ ପ୍ରଣୟନ କରି ଇଂରେଜ ସରକାର ଲୁଣ ମାରିବା ଏକ ଧର୍ତ୍ତବ୍ୟ ଅପରାଧ ବୋଲି ଘୋଷଣା କରିଥିଲେ । ସେହିଦିନଠାରୁ ଏଠାରେ ଲୁଣମରା ବନ୍ଦ ହୋଇ ଯାଇଥିଲା । ଲୁଣ ଏମାନଙ୍କର ଜୀବିକା ଥିଲା । ଲୁଣ ଉପରେ ବ୍ରିଟିଶ ସରକାର ଦୁଇ ଗୁଣ ଟିକସ ମଧ୍ୟ ବସାଇ ଦେଲେ । ଓଲିପା ପଦ୍ମପୁର, ରାମତାରା, କୁଜଂଗ, ଦାସ ମଠ ବେଲାରୀ ପ୍ରଭୃତିରେ ଲୁଣ ବିକ୍ରି କରି ଲୋକମାନେ ପରିବାର ପ୍ରତିପୋଷଣ କରିଥିଲେ । ସ୍ୱରାଜ ଆନ୍ଦୋଳନର ମୁଖ୍ୟଙ୍କ ନିର୍ଦ୍ଦେଶକ୍ରମେ ଆଚାର୍ଯ୍ୟ ହରିହର ଦାସ, ଭୀମଚରଣ ଦାଶଙ୍କୁ ସାଥିରେ ନେଇ ଜଗତସିଂହପୁର ଏରସମା ଦାୟିତ୍ୱ ଦେଇଥିଲେ । ସେଠାକାର ସ୍ୱରାଜ ଆନ୍ଦୋଳନର କର୍ମୀମାନଙ୍କ ସହିତ ପରିଚୟ କରାଇ ଦେଇଥିଲେ । ଯଥା– ଗୌରୀଶ୍ୟାମ ନାୟକ, ଉତ୍ସବ ଦାସ, ଭାସ୍କର ମଳିକ, ବେଲ ଦେଇ ପ୍ରମୁଖ । ଜଗତସିଂହପୁରରେ ସେ ସରଳା ଦେବୀଙ୍କୁ ମଧ୍ୟ ଭେଟିଥିଲେ । ତା'ପରେ ସେ ଏରସମାର ତଳ ଅଞ୍ଚଳ ନଳପାହି ଓ କନାଗୁଳି ଚାଲିଯାଇ ଥିଲେ । ସେଠାରେ ସେ ଗୋଟିଏ ବସାଘର ଝାଟିମାଟିରେ

ତିଆରି କରି ରହିଲେ ଏବଂ ସେଠାକାର ଲୋକମାନଙ୍କୁ ନେଇ ଲୁଣ ପ୍ରସ୍ତୁତ କଲେ ।

ଇଂରେଜମାନଙ୍କ ନିକଟରେ ଅର୍ଥର ଦାସତ୍ୱ ସ୍ୱୀକାର କରି ତାଙ୍କର ପାଦ ଲେହନ କରୁଥିବା ଆମରି ଜାତି ଭାଇମାନେ ଏ ସମସ୍ତ ଲୁଣମରା କୌଶଳର ପ୍ରଣାଳୀକୁ ତାଙ୍କ ନିକଟରେ ବ୍ୟକ୍ତ କରିଥିଲେ । ଏସବୁର ପ୍ରତିବାଦ କରି ମହାତ୍ମା ଗାନ୍ଧୀ ଜାତୀୟ କଂଗ୍ରେସର ପୂର୍ଣ୍ଣ ସ୍ୱରାଜ ପ୍ରସ୍ତାବକୁ ଗ୍ରହଣ କରି, ସାଧାରଣ ଲୋକଙ୍କର ଦୁଃଖ ଲାଘବ ନିମନ୍ତେ, ଇଂରେଜ ସରକାର ବସାଇ ଥିବା ଆଇନ, ଯୁକ୍ତି ଯୁକ୍ତ ନୁହେଁ ବୋଲି ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିଥିଲେ । ୧୯୩୦ ମସିହା ମାର୍ଚ୍ଚ ୧୨ ତାରିଖରେ ୭୮ ଜଣ ସତ୍ୟାଗ୍ରହୀଙ୍କୁ ସାଥିରେ ଧରି, ସାବରମତିରୁ ଚାଲି ଚାଲି ୨୪୧ ମାଇଲ୍ ପଥ ଅତିକ୍ରମ କରି ଆରବ ସାଗରର କୂଳେ କୂଳେ ଯାଇ ଦାଣ୍ଡିରେ ପହଞ୍ଚିଥିଲେ । ୧୯୩୦ ମସିହା ଅପ୍ରେଲ ୬ ତାରିଖରେ ମହାତ୍ମା ଗାନ୍ଧୀ ସକାଳୁ ସମୁଦ୍ରରେ ସ୍ନାନ ସାରି ହାତରେ ମୁଠାଏ ଲୁଣ ସେଠାରୁ ଉଠାଇ ନେଇ ବିଧିବଦ୍ଧ ଭାବେ ଲବଣ ଆଇନ୍ ଭଂଗ କରିଥିଲେ । ତାମିଲ୍‌ନାଡୁର ସରୋଜିନୀ ନାଇଡୁ, କୁଜଙ୍ଗର ପାଟ ମହାଦେଈ, ରାଣୀ ଭାଗ୍ୟବତୀ ଦେବୀ ମଧ୍ୟ ଏକା ସମୟରେ ଲବଣ ଆଇନ ଅମାନ୍ୟ କରିଥିଲେ । ମା' ରମାଦେବୀ, ମାଳତୀ ଦେବୀ ଏବଂ ବହୁ ମହିଳା ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣୀତ ହୋଇ ଏବଂ ବହୁ ପୁରୁଷ ସତ୍ୟାଗ୍ରହୀଙ୍କୁ ଏକତ୍ରିତ କରି ଗଂଜାମର ହୁମା, ପୁରୀର ଅସ୍ତରଙ୍ଗ, କୁହୁଡି, ବାଲେଶ୍ୱରରେ ଇଞ୍ଚୁଡି ବାସୁଦେବପୁରରୁ ଇରମ ଉପରେ ଏହାର ପ୍ରଭାବ ବହୁ ପରିମାଣରେ ପକାଇଥିଲେ । ସେତେବେଳକୁ ସମସ୍ତଙ୍କୁ ସାହସ ଓ ଭରସାର ଇନ୍ଧନ ମିଳିଗଲା । ଆମ ଓଡିଶାର କାର୍ଯ୍ୟନିର୍ବାହିକା କମିଟି ୧୨ ଅପ୍ରେଲଠାରୁ ସବୁ ଜିଲ୍ଲାର ପ୍ରଦେଶ କଂଗ୍ରେସ କମିଟିର ସଦସ୍ୟମାନଙ୍କୁ ନେଇ ପ୍ରତିନିଧିତ୍ୱ ପାଇଁ ଇଞ୍ଚୁଡିର ଗୋପାଳ କୃଷ୍ଣ ଚୌଧୁରୀଙ୍କ ବାସଭବନରେ ସଭା କରିବାକୁ ସ୍ଥିର କରିଥିଲେ । ଏଥିରେ ପ୍ରତିନିଧିତ୍ୱ କରିଥିଲେ ବିଶ୍ୱନାଥ ହୋତା, ସୁରେନ୍ଦ୍ର ନାଥ ଦାଶ ଓ ଡକ୍ଟର ହରେକୃଷ୍ଣ ମହତାବ । ତା'ପରେ ଏକ ସାଧାରଣ ସଭା କରାଯାଇଥିଲା, ଏହା ଉପରେ ବ୍ରିଟିଶ ସରକାର ୧୪୪ ଧାରା ଜାରି କରିଥିଲେ । କିନ୍ତୁ ତାହାକୁ ବିଫଳ କରିଥିଲେ ଗୋପବନ୍ଧୁ ଚୌଧୁରୀ । ଆଇନ ଅମାନ୍ୟ କରି ଉକ୍ତ ସଭାରେ ଯେଉଁ ଭାଷଣ ଦେଇଥିଲେ, ତାହା ସାଧାରଣ ଜନତାଙ୍କର ମନୋବଳକୁ ଦୃଢ କରିଥିଲା । ତା'ପରେ ଲୁଣ ଆମଦାନୀ କରି ସମସ୍ତ ଲୁଣ ଚାଷୀମାନେ ବିଭିନ୍ନ ସ୍ଥାନରେ ଯଥା - ବାଲେଶ୍ୱର, କଟକ ପ୍ରଭୃତିରେ ଆଇନ୍ ଅମାନ୍ୟ କରି ଲୁଣମାନ ବିକ୍ରି କରିବାକୁ ଲାଗିଲେ । ଗାନ୍ଧିଜୀଙ୍କର ଆଦର୍ଶକୁ ପାଥେୟ କରି ସଂଗ୍ରାମୀ ଭୀମ ଚରଣ ମଧ୍ୟ ଖୁବ୍ ଦୁଃସାହସିକ ପଦକ୍ଷେପ ଗ୍ରହଣ କରିଥିଲେ ।

ଏରସମାର ପ୍ରମୁଖ ନେତା ବୀରବର ସାମନ୍ତ, ପନ୍ନୀ ରନ୍‌ମାଳିନୀ ଜେମା, ଚମ୍ପାହାଟ ଡିହସାହିସ୍ଥିତ ଗୌରଶ୍ୟାମ ନାୟକଙ୍କ ସହିତ ଭୀମ ଚରଣ ମଧ୍ୟ ଲୁଣ ମାରିବାର ଯୋଜନା କରି ବସିଲେ । ତାଙ୍କର ଏପରି ସୁ ଚିନ୍ତାଧାରାକୁ ସଫଳ କରିବା ପାଇଁ ତାଙ୍କୁ ରନ୍‌ମାଳିନୀ ଜେମା କିଛି ଭୂସମ୍ପତ୍ତି ଦାନ ସୂତ୍ରରେ ଦେଇଥିଲେ । ଆଶ୍ରମ ଘରଟିଏ କରି ସାଧାରଣ ଜନତାଙ୍କୁ ଆନ୍ଦୋଳନର କାର୍ଯ୍ୟକ୍ରମ ଶୈଳୀ ସମ୍ପର୍କରେ ପ୍ରଶିକ୍ଷଣ ଦେବା ପାଇଁ ଭୀମ ଚରଣଙ୍କର ଉଦ୍ୟମରେ ସେଠାକାର ସଂଗଠନ ଖୁବ୍ ଆଗୁଆ ସଂଗଠନରେ ପରିଣତ ହେଲା । ସେମାନେ କୁଞ୍ଜ କୋଠୀ, ନଳପାହି, ଖୁରାଣ୍ଟ, ବଳେଇପୁରୁ, ନୂଆ ରତନପୁରୁ, ଚଟୁଆ, ଅଂଧାରୀ ମଧ୍ୟଭାଗରେ ଥିବା ଘଞ୍ଚ ଜଙ୍ଗଲରେ ଲୁଚି ରହି ଫିରିଙ୍ଗି ବିରୁଦ୍ଧରେ ଆନ୍ଦୋଳନକୁ ଖୁବ୍ ତେଜୀୟାନ୍ କରିବାରେ ସଫଳ ହୋଇଥିଲେ ।

ଇଂରେଜ ସିପାହିଙ୍କୁ ଲୁଚି ଲୁଚି ସେମାନେ ଠେଙ୍ଗାଦ୍ୱାରା ରଣ କୌଶଳ ବିଭିନ୍ନ ମଲ୍ଲ ଯୁଦ୍ଧର ପାରଙ୍ଗତା ହୋଇ ଉଠିଥିଲେ । ଭେଜିବାରି ପାଚରା ନିବାସୀ ଭୋଳି ଦାସ ସେମାନଙ୍କ ନିମନ୍ତେ ଜଂଗଲରେ ଥିବା ମଠରେ ମାଣ୍ଡିଆ ଜାଉ କିଛି ଶାଗ ଏବଂ ହେମଳା ସିଝାର ଖାଇବାର ବନ୍ଦୋବସ୍ତ କରୁଥିଲେ । ମଠର ମହନ୍ତ ମଧ୍ୟ ଏଥିରେ

ସାହାଯ୍ୟ କରୁଥିଲେ । ଦିନକର ଘଟଣା ସମ୍ପର୍କରେ କହିବେ ବୋଲି କହି ସେଦିନ ସେ ମୋ ପାଖରେ ଭୋ ଭୋ ହୋଇ କାନ୍ଦି ପକାଇଥିଲେ । ଯାହା ସ୍ମରଣକୁ ଆସିଲେ ଆଜିବି ତାଙ୍କର ଲୋମ ଟାଙ୍କୁରୀ ଉଠେ ବୋଲି ଲୁହ ଭିଜା ଆଖିରେ ସେ ବର୍ଣ୍ଣନା କରିଥିଲେ । ସେହି ନିକଟବର୍ତ୍ତୀ ଗ୍ରାମବାସୀମାନଙ୍କ ମଧ୍ୟରୁ କେତେଜଣଙ୍କୁ ନେଇ ସେ ଲୁଣ ମାରିବା ପାଇଁ ସମୁଦ୍ର ତଟର ଦାସ ମଠ ବେଲାରୀ ନିକଟକୁ ଯାଇଥିଲେ । ପୂର୍ବ ଦିନ ରାତିରୁ ଲୁଣ ପାଣି ସବୁ ଝର ପକାଯାଇ ପ୍ରସ୍ତୁତ କରି ରଖାଯାଇଥିଲା । ସେମାନେ ହାଣ୍ଡି ବସାଇ ଲୁଣ ମାରିବାକୁ ଚୁଲିରେ ଅଗ୍ନି ସଂଯୋଗ କଲେ । ପ୍ରାୟତଃ ୩୦ଟି ହାଣ୍ଡିରେ ଲୁଣ ପାଣି ସବୁ ଟକମକ ହୋଇ ଫୁଟୁ ଥାଏ । ଇଂରେଜ ସିପାହିଙ୍କର ଆସିଯିବାର ସମ୍ଭାବନାକୁ ଚିନ୍ତାକରି ସେ ଭୂମିରେ କାନ ପାତି ଜାଣି ପାରିଥିଲେ ଯେ ଦୂରରୁ ଭାରି ବୁଟ୍‌ର ଶବ୍ଦ ଭୂମି ପରେ କମ୍ପନ ସୃଷ୍ଟି କରୁଛି । ଗୋଟେ ବଡ ଗଛକୁ ଚଢି ବାଉଁଶ ଦ୍ୱାରା ପ୍ରସ୍ତୁତ ନଳୀ ସାହାଯ୍ୟରେ ସେ ସେମାନଙ୍କର ଗତିପଥ ଯେ ଏଇ ଆଡକୁ ଆସୁଅଛି, ତାହା ଜାଣି ପାରିଥିଲେ । ଗଛରୁ ଓହ୍ଲାଇ ସେ ସମସ୍ତଙ୍କୁ ଏ ସ୍ଥାନ ଛାଡି ଚାଲି ଯିବା ପାଇଁ କହିଥିଲେ । ଏବଂ ସେ ଲୁଣଗୁଡିକର ସୁରକ୍ଷାର ପ୍ରତିଶ୍ରୁତି ଦେଇଥିଲେ । ସମସ୍ତେ ଚାଲି ଯିବା ପରେ ଲୁଣ ରନ୍ଧା ଚୁଲାରେ ନିଜେ ଭୀମ ଚରଣ କାଠ ପକାଇ ଲୁଣ ହେବା ପର୍ଯ୍ୟନ୍ତ ଅପେକ୍ଷା କରି ରହିଲେ । କଣ କରିବେ, ଚିନ୍ତା କରୁ କରୁ ହଠାତ୍ ଏକ ବୁଦ୍ଧି ତାଙ୍କ ମନକୁ ଆସିଲା, ସେ ଖଣ୍ଡେ ଜଳନ୍ତା କାଠକୁ ଖୁବ୍ ଜୋରରେ ବୁଲାଇ ଦୂରକୁ ଫିଙ୍ଗି ଦେଇଥିଲେ । କାଠଟି ଗୋଟିଏ ଶୁଖିଲା ଖରିବୁଦା ମଧ୍ୟରେ ଯାଇ ପଡିଥିଲା । ଜଳନ୍ତା କାଠରୁ ନିଆଁ ଖସି ବାଟ ସାରା ନିଆଁ ଜଳିବାକୁ ଲାଗିଲା । ସବୁଆଡେ ହୁତୁହୁତୁ ହୋଇ ନିଆଁ ଜଳିବାକୁ ଲାଗିଲା, ଫିରିଙ୍ଗି ସିପାହିଙ୍କର ପଥରୋଧ କଲା ସେହିନିଆଁ । ସେମାନେ ସିନା ଆସି ପାରିନଥିଲେ, କିନ୍ତୁ ତାଙ୍କ ବନ୍ଧୁକର ଗୁଳି ଛୁଟି ଆସିଥିଲା ଭୀମଚରଣଙ୍କ ଆଡକୁ । ସେ ସେତେବେଳକୁ ସର ବାନ୍ଧି ଆସିଥିବା ଲୁଣ ହାଣ୍ଡିଗୁଡିକୁ ଝିଙ୍କାମାନ ଘୋଡାଇ ଦେଇ ଜାଳିବା ବନ୍ଦ କରି ଦେଇଥିଲେ । ଏପରି ଗୁଳି ଚାଲିବାର ପରିସ୍ଥିତିରେ ସେ ଭୟଭୀତ ହୋଇ ଯାଇଥିଲେ । ତାଙ୍କ ପାଟିରୁ ବାହାରି ପଡିଥିଲା ହେ ପ୍ରଭୁ ରକ୍ଷା କର । ସେହି ସମୟରେ ସେ ଅନୁଭବ କଲେ କିଏ ଯେମିତି ତାଙ୍କୁ ଖୁବ୍ ଜୋର୍‌ରେ ସେଠାରୁ ଗଛ ଉହାଡକୁ ଟାଣି ନେଇ କହିଲା ନନା ଭୟ କର ନାହିଁ । ତୁମର କିଛି ହେବ ନାହିଁ । ସେ ଦେଖିଲେ ଜଣେ ବାଳକ ତାଙ୍କୁ ଏକଥା କହୁଛି । ତଳେ ଶୋଇଯିବା ପାଇଁ ଇସାରା କରୁଛି । ତାଙ୍କ ଦେହରେ ଗରମ ଲୁଣର ଛିଟ୍‌କା ପଡି ଦେହ ଭୀଷଣ ପୋଡା ଜଳା ହେଉଥାଏ । ସେ ଗାମୁଛା ପାରି ତଳେ ଶୋଇ ଯାଇଥିଲେ । ମନେ ମନେ ଭାବିଲେ ଯାହାହେଉ ପଛେ ଲୁଣତକ ରକ୍ଷା ହୋଇଯାଇଛି । ଅନ୍ଧାର ଗାଢ ହେବାକୁ ଲାଗିଲା, ସେ ଚିନ୍ତା କଲେ ଆଜି ତ ଆଉ ବସାକୁ ଫେରି ହେବ ନାହିଁ ବରଂ ଏହିଠାରେ ହିଁ ବିଶ୍ରାମ ନେଇ ରାତି କଟାଇ ଦେବି । ପ୍ରବଳ ଭୋକ ହେଉଥାଏ ତାକୁ ଖାତିର ନ କରି ସେ ଗଭୀର ନିଦରେ ଶୋଇଯାଇଥିଲେ । କେତେବେଳେ ରାତି ପାହିଲା ତାଙ୍କୁ ଜଣାନଥିଲା । ମୁହଁରେ ଖରା ପଡିବାରୁ ସେ ଉଠି ବସିଥିଲେ । ସେ ଏଠାକୁ ଆସିଲେ କିପରି ? ଗୁଳି ମୁହଁରୁ ଯେଉଁ ବାଳକ ତାଙ୍କୁ ବଞ୍ଚାଇଲେ ସେ କିଏ ? ଏ ପ୍ରଶ୍ନ ସେ ଶେଷ ପର୍ଯ୍ୟନ୍ତ ନିଜକୁ ପଚାରି ଚାଲିଥିଲେ । ହଠାତ୍ ଦିନେ ଗୋରା ସିପାହିମାନେ ତାଙ୍କୁ ଲବଣ ଆଇନ୍ ଅମାନ୍ୟ ଅପରାଧରେ ଗିରଫ କଲେ । ଲବଣ ଆଇନ୍ ଅମାନ୍ୟକୁ ଆଉ ବେଶି ଦିନ ରୋକି ପାରିନଥିଲେ । ବ୍ରିଟିଶ ସରକାର ଏତେ ସଂଖ୍ୟକଙ୍କୁ ଗିରଫ ହୋଇ ଜେଲ୍‌ରେ ରଖିଲେ ଯେ ପରିସ୍ଥିତି ଅସମ୍ଭାଳଜନକ ହୋଇଯାଇଥିଲା । ତେଣୁ ଗୋରା ସରକାର ସମସ୍ତଙ୍କୁ ମୁକ୍ତ କରି ଦେବା ପାଇଁ ବାଧ ହୋଇଥିଲେ ।

ଜେଲ୍‌ରେ ତାଙ୍କର ବହୁ ନୂଆ ନୂଆ ବନ୍ଧୁମାନଙ୍କ ସହିତ ପରିଚୟ ମଧ୍ୟ ହୋଇଥିଲା । ପୁଣି ସେ ଏରସମା ଫେରି ଆସିଥିଲେ । ବନ୍ଧୁମାନଙ୍କର ସାହାଯ୍ୟ ନେଇ ସେ ଭେଜିବାରି ପାଚରା ନିକଟସ୍ଥ ଜଂଗଲ ସଫା କରି ଗୋଟିଏ ଜନବସତି ବସାଇ ଥିଲେ । ଯାହାର ନାମ ଏବେ କୁଞ୍ଜକୋଠୀ, ରେଭିନ୍ୟୁ ଭିଲେଜ୍ । ସେଠାରେ ସବୁ ଜାତିର ପରିବାର ବାସଗୃହ ତିଆରି କରି ରହିଲେ । ଗ୍ରାମରେ

ଗୋଟିଏ ସ୍କୁଲ ମଧ୍ୟ ବସାଗଲା ପାଠପଢ଼ା ନିମନ୍ତେ । ମାଷ୍ଟର ମନ୍ଦରଧର ମଲ୍ଲିକ ଶିକ୍ଷକ ରୂପେ ଦାୟିତ୍ୱ ଗ୍ରହଣ କରିଥିଲେ । ଭୀମ ଚରଣ ଏବଂ ମନ୍ଦର ମାଷ୍ଟ୍ରେ ଓ କୁଞ୍ଜକୋଠୀର ଅନାମ ବାରିକ ଘନିଷ୍ଠ ବନ୍ଧୁତାର ବନ୍ଧନରେ ବାନ୍ଧି ହୋଇଗଲେ । ଗ୍ରାମର ମୁଖ୍ୟ ଭାବରେ ଦାୟିତ୍ୱ ନେଇଥିଲେ ଭୋଳି ଦାସ, ସେ ଜଣେ କର୍ତ୍ତବ୍ୟନିଷ୍ଠ ମଣିଷ । ବର୍ଣ୍ଣମାଳାର କୌଣସି ଅକ୍ଷର ସହିତ ସେ ପରିଚିତ ନୁହଁନ୍ତି । କିନ୍ତୁ ନ୍ୟାୟ ନିଶାପରେ ଯେତେବଡ ନିଶାପି ହେଲେ ମଧ୍ୟ ମୁଣ୍ଡ ନୁଆଁଇ ଦେବ ତାଙ୍କ ବିଚାରଧାରା ନିକଟରେ । ସଂଗ୍ରାମୀ ଭୀମ ଚରଣଙ୍କ ନିକଟରୁ କେବଳ ଚାରୋଟି ଅକ୍ଷର ସେ ଶିଖିଥିଲେ । ତାଙ୍କ ନାଁ ଭୋଳି ଦାସ । ତାଙ୍କ ବୟସର ଅନେକ ଯୁବକଙ୍କୁ ଧରି ସେ ଏକ ସଂଗଠନ ଗଢ଼ିଲେ ଏବଂ କହିଲେ ନନା ଆମେ ଅଛୁ ତୁମ ସାଥିରେ କରିକି ଦେଖାଇବା, ନ ହେଲେ ମରିବା । ଏପରି ସବୁ ଦୃଢ଼ ସାଂଗଠନିକ କାର୍ଯ୍ୟକଳାପର ଖବର ଯାଇ ଏରସମା ଥାନା ଅଧିକାରୀଙ୍କୁ ଜଣାଇ ଦେଇଥିଲେ, ତାଙ୍କର ଗୁପ୍ତଚରମାନେ ଥାନା ଅଧିକରୀ ଏ ଖବର କଲେକ୍ଟରଙ୍କୁ ଜଣାଇ ବହୁ ସଂଖ୍ୟକ ଇଂରେଜ ସିପାହିଙ୍କର ଲମ୍ଭ ଲଗାଇ ଦେଲେ । ଶତାଧିକ ପୋଲିସ ଆସି ରହିବା ଫଳରେ ଗାଁ ଗଣ୍ଡାରେ ଝିଅ ବୋହୂମାନେ ଘରୁ ବାହାରି ପାରି ନଥିଲେ । ଅକଥନୀୟ ଅତ୍ୟାଚାରରେ ସମ୍ମୁଖୀନ ହେବାକୁ ପଡୁଥିଲା ତାଙ୍କୁ । ସେମାନେ ମଧ୍ୟ ପୁରୁଷଙ୍କ ପରି ଶାଢ଼ିକୁ ପଛରେ କଚ୍ଛା ମାରି ପିନ୍ଧିବା ଆରମ୍ଭ କଲେ । ଦୂରରୁ ଯେମିତି ସେମାନେ ତାଙ୍କୁ ସହଜରେ କେହି ଚିହ୍ନି ପାରିବେ ନାହିଁ ।

ଏସବୁର ପ୍ରତିକାର କଣ କରାଯାଇ ପାରିବ । ଏଥିପାଇଁ ଚିନ୍ତିତ ହୋଇ ଉଠିଲେ ସେଠାକାର ଚିନ୍ତା ନାୟକମାନେ । କିପରି ପୋଲିସ ଫୋର୍ସମାନଙ୍କୁ ଏଠାରୁ ହଟେଇ ଦିଆଯାଇପାରିବ । ସଂଗ୍ରାମୀ ଭୀମଚରଣ ଗୋଟିଏ ଉପାୟ ସ୍ଥିର କଲେ ଏବଂ ସେଥିପାଇଁ ତାଙ୍କର ବନ୍ଧୁମାନଙ୍କର ସାହାଯ୍ୟ ସହଯୋଗ ଲୋଡ଼ିଥିଲେ । ପଲ୍ଲୀକଣ୍ଡା ନିବାସୀ ଭାଗବତ ଦାଶ, ଭୋଳି ଦାସ, ଏରସମା ଆଗେଇ ଆସିଲେ ତାଙ୍କୁ ସହଯୋଗ ଓ ସାହାଯ୍ୟର ହାତ ବଢ଼ାଇ । ଜଣେ ଫିରିଙ୍ଗି ଚପରାସୀର ପୋଷାକ କୌଶଳ କ୍ରମେ ଯୋଗାଡ କରିପାରି ଥିଲେ ସେମାନେ । ସଂଗ୍ରାମୀ ଭୀମଚରଣ ସେ ପୋଷାକକୁ ନିଜେ ପିନ୍ଧି, ସାଥିରେ ଏକ ମଶାମରା ସିଞ୍ଚନ ଯନ୍ତ୍ରରେ କିରୋସିନ୍ ପୂରାଇ, ପୂରା ବୀର ସୈନିକ ପରି ଅନ୍ଧକାର ରାତିରେ ଲୁଚି ଲୁଚି ଥାନା ଭିତରକୁ ପ୍ରବେଶ କରିଥିଲେ । ନିଜର ଇଷ୍ଟଦେବଙ୍କୁ ସ୍ମରଣ କରି ମନେ ମନେ ବାପୁଜୀଙ୍କର ସେ ସ୍ଲୋଗାନ୍ ବାରମ୍ବାର ତାଙ୍କର ମନୋବଳକୁ ଦୃଢ଼ କରୁଥାଏ । 'କର ଅବା ମର' । ମଦ ମାଂସ ଖାଇ ତମ୍ବୁ ଭିତରେ ସମସ୍ତ ଫିରିଙ୍ଗି ସିପାହି ଆରାମରେ ନିଦ୍ରା ଯାଇଥାଆନ୍ତି । ଚପରାସୀ ରାତ୍ରିରେ ମଶା ତେଲ ସିଞ୍ଚନ କରେ, କିନ୍ତୁ ତା' ବଦଳରେ ସେଦିନ କିରୋସିନି ସିଞ୍ଚନ କରି ସଂଗ୍ରାମୀ ଭୀମ ଚରଣ ଖୁବ୍ ସତର୍କତାର ସହିତ ଅଗ୍ନି ସଂଯୋଗ କରି ସେଠାରୁ ଚାଲି ଆସିଥିଲେ । ସେଥିରେ ଅନେକ ସିପାହି ପୋଡି ମରିଗଲେ । ଏକଥା ମଧ୍ୟ ସେମାନେ ତାଙ୍କ ଗୁପ୍ତ ଖବରଦାତାଠାରୁ ଜାଣି ପାରିଥିଲେ ଏବଂ ସଂଗ୍ରାମୀ ଭୀମ ଚରଣଙ୍କୁ ଭାଗବତ ଦାଶଙ୍କ ଘରୁ ଗିରଫ କରି ନେଇ ଯାଇଥିଲେ । ସେଥିରେ ତାଙ୍କୁ ୭ ବର୍ଷ କାରାବରଣ କରିବାକୁ ପଡିଥିଲା । ତାଙ୍କୁ ସେଠାରେ ବହୁ ଅତ୍ୟାଚାରରେ ସମ୍ମୁଖୀନ ହେବାକୁ ପଡିଥିଲା । କୌଣସି କାରଣ ନଥାଇ ମଧ୍ୟ ଥରେ ଜଣେ ଅଫିସର ତାଙ୍କୁ ବଗିଚାରେ ତାଙ୍କ ଭାରି ବୁଟ୍‌ରେ ଗୋଇଠା ପରେ ଗୋଇଠା ମାରି ଚାଲିଲେ । ସେହି ଭାରି ବୁଟ୍‌ର ଏକ ଗୋଇଠା ତାଙ୍କ କାନ ମୁଣ୍ଡାରେ ବାଜିବା ଫଳରେ କାନମୁଣ୍ଡା ଫାଟି ରକ୍ତ ବାହାରି ପଡିଲା । ସେ ସେଠାରେ ବେହୋସ ହୋଇ ପଡିଗଲେ । ସେହି ଆଘାତରେ ତାଙ୍କ କାନର ଗିରିଟି ଫାଟି ଖସି ପଡିଥିଲା । ସାରା ଜୀବନ ସେ ସେହି ଯନ୍ତ୍ରଣାକୁ ଭୋଗି ଚାଲିଲେ । ସେ କାନକୁ କିଛି ଶୁଭିଲା ନାହିଁ । ସବୁବେଳେ କାନରୁ ପୂଜ ପାଣି ବୋହିଲା । ଜେଲ୍‌ରୁ ମୁକୁଳିବା ପରେ ସେ ପୁଣି ଜଗତସିଂହପୁରର କୁଞ୍ଜକୋଠୀ ଫେରି ଯାଇଥିଲେ । ତାଙ୍କର ଏତାଦୃଶ ବୀରତ୍ୱ ପ୍ରଦର୍ଶନରେ କୁଜଂଗ ରାଜକନ୍ୟା ରତ୍ନମାଳିନୀ ଦେବୀ ଏବଂ ବୀରବର ସାମନ୍ତ ଖୁସି ହୋଇ ତାଙ୍କୁ କନାଗୁଳି, ଖୁରାଣ୍ଟ ମଧ୍ୟଭାଗସ୍ଥିତ ନଳପାହିଠାରେ ୨୨ ମାଣ ସମ୍ପତ୍ତି ଦାନ

ସ୍ୱରୂପ ଦେଇଥିଲେ । ସବୁ ସଂଗ୍ରାମୀ ବନ୍ଧୁମାନଙ୍କର ଅନୁରୋଧକ୍ରମେ ୧୯୪୦ରେ ସେ ପଣ୍ଡୁଆ ଗ୍ରାମର ସଂଗ୍ରାମୀ ଉଛବ ଦାସଙ୍କ ସାନ ଭଉଣୀ କଲ୍ୟାଣୀ ଦେବୀଙ୍କୁ ବିବାହ କରିଥିଲେ । ସେହି ବିବାହ କର୍ମରେ ବହୁସଂଖ୍ୟକ ମହିଳା କଂଗ୍ରେସ କର୍ମୀ ସରଳା ଦେବୀ, ବେଲ ଦେଈ, ଜେମା ପ୍ରଭୃତି ଯୋଗ ଦେଇଥିଲେ । ଏରସମା ଗ୍ରାମର ଶେଷ ଭାଗରେ ଗୋଟିଏ ଆଶ୍ରମ ଘର କରି ସେ ସେଠାରେ ରହିଥିଲେ । କିଛି ଦିନ ପରେ ସେ କଲ୍ୟାଣୀ ଦେବୀଙ୍କୁ ତାଙ୍କ ନିଜ ଘର ବ୍ରାହ୍ମଣୀ ଗାଁରେ ମାଆଙ୍କ ପାଖରେ ଛାଡିବାକୁ ଆସି ଦେଖିଲେ ଘରର ପରିସ୍ଥିତି ବହୁତ ଖରାପ, ସାନ ଭାଇ ଗାନ୍ଧିଜୀଙ୍କ ଡାକରାରେ ଦେଶ ସ୍ୱାଧୀନ କରିବାର ପ୍ରତିଜ୍ଞା ନେଇ ଘର ଛାଡି ଚାଲି ଯାଇଛି । ବଡନନା ମଧ୍ୟ ସଂଗ୍ରାମୀ ଜୀବନକୁ ଆପଣେଇ ନେଇ ତାଙ୍କ ପରି ଦେଶ ମାତୃକାର ସେବାରେ କେଉଁଆଡେ ଚାଲିଯାଇଛନ୍ତି । ଘରେ ମାଆ, ବଡଭାଉଜ, ଲକ୍ଷ୍ମୀଦେବୀ ଏବଂ ଜଣେ ବାଲ୍ୟବିଧବା ମହିଳା ଗୁରୁବାରୀ ଦେଈ ଅଛନ୍ତି । ଏସବୁ ତାଙ୍କୁ ବହୁତ କଷ୍ଟ ଦେଉଥିଲା । ସେ ମା' ଙ୍କୁ ବୁଝାଇ ଶୁଝାଇ କଲ୍ୟାଣୀ ଦେବୀଙ୍କୁ ଘରେ ଛାଡି ଦେଇ ଚାଲି ଯାଇଥିଲେ ।

୧୯୪୨ ମସିହାରେ 'ଭାରତଛାଡ ଆନ୍ଦୋଳନ' ଖୁବ୍ ଜୋର୍‌ସୋର୍‌ରେ ତେଜି ଉଠିଥିଲା । ପ୍ରାୟତଃ ଭାରତବର୍ଷର ଆବାଳବୃଦ୍ଧବନିତା ଏଥିରେ ଯୋଗ ଦେଇଥିଲେ । ମହିଳାମାନେ ମଧ୍ୟ ପରଦା ପ୍ରଥାକୁ ଛାଡି ଦେଶକୁ ମୁକ୍ତି କରିବାର ଶପଥ ନେଇଥିଲେ । ୧୯୪୨ରେ ଭଦ୍ରକର ଇରମ ମେଲଣ ପଡିଆରେ ଇଂରେଜ ସିପାହିମାନଙ୍କର ଯେଉଁ ବର୍ବରୋଚିତ ଗୁଳିକାଣ୍ଡ, ସେଥିରେ ୨୯ ଜଣ ନିରୀହ ଜନତାଙ୍କର ମୃତ୍ୟୁ, ୫୭ ଜଣଙ୍କର ଜଖମ ହେବା, ନିରୀହା ପରି ବେଓ୍ୱା ଓ ଜଣେ ୧୨ ବର୍ଷର ବାଳକର ମୃତ୍ୟୁ ହେବା ଏସବୁ ତାଙ୍କୁ ବହୁତ ମର୍ମାହତ କରିଥିଲା । ମହାତ୍ମା ଗାନ୍ଧୀ ଓଡିଶାରେ ଯେଉଁ ପଦଯାତ୍ରା କରିଥିଲେ, ଅହିଂସାର ମନ୍ତ୍ର ମୁଖରେ ଏବଂ ବିଶ୍ୱାସର ବାଡି ହାତରେ ଧରି ସେଥିରେ ସଂଗ୍ରାମୀ ଭୀମ ଚରଣ ମଧ୍ୟ ଯୋଗ ଦେଇଥିଲେ । ୧୯୪୭ ମସିହା ଅଗଷ୍ଟ ୧୫ ପ୍ରାତଃରୁ ଦ୍ୱାରେ ଦ୍ୱାରେ ପୂର୍ଣ୍ଣକୁମ୍ଭ ବସାଇ ପତ୍ନୀ କଲ୍ୟାଣୀ ଦେବୀଙ୍କ ସହିତ ସେ ଦ୍ୱାର ଦ୍ୱାର ବୁଲି ସ୍ୱାଧୀନତାର ଖୁସି ମନାଇଁ ଥିଲେ । ସ୍ୱାଧୀନ ସୂର୍ଯ୍ୟର ଆଲୋକକୁ ଉପଲବ୍ଧି କରି ବନ୍ଧୁମାନଙ୍କୁ ସାଥିରେ ଧରି ଓଡିଶାର ପୁରପଲ୍ଲୀରେ ପାଦରେ ଚାଲି ଚାଲି ସ୍ନେହ ପ୍ରେମ ଓ ସୌହାର୍ଦ୍ଦ୍ୟର ବାର୍ତ୍ତାକୁ ସମସ୍ତଙ୍କୁ ବିତରଣ କରିଥିଲେ । ୧୯୫୧ ମସିହାରେ ସାନଭାଇ ବୈଦ୍ୟନାଥଙ୍କ ସହିତ ମିଶି ଭୂଦାନ ଯଜ୍ଞର ସଭ୍ୟ ହୋଇ ଭୂଦାନର ମହାନ୍ ସନ୍ଥ, ସନ୍ଥ ବିନୋବା ଭାବେଙ୍କୁ ଯାଜପୁରର ସହିଦପୁରକୁ ଆଣି ବୀରବର ସାମନ୍ତଙ୍କ ହାତରେ ଭୂମି ଦାନ କରାଇ ପ୍ରଥମ ଭୂଦାନ ଯଜ୍ଞର ସୂତ୍ରପାତ କରାଇଥିଲେ । କପା ଚାଷ କରି ତହିଁରୁ ସୂତା କାଟି ଚରଖା ମାଧ୍ୟମରେ ତନ୍ତରେ ଲୁଗାବୁଣି ନିଜେ ପିନ୍ଧୁଥିଲେ ଏବଂ ଅନ୍ୟମାନଙ୍କୁ ମଧ୍ୟ ଶିକ୍ଷା ଦେଉଥିଲେ ।

୧୯୬୬–୬୭ ମସିହାରେ ଯେଉଁ ଲୁଣା ବାତ୍ୟା ହୋଇଥିଲା, ଜମ୍ଭୁ ପାରାଦ୍ୱୀପ, କେନ୍ଦ୍ରାପଡା ଆଦି ବାତ୍ୟାଗ୍ରସ୍ତ ଲୋକମାନଙ୍କୁ ମଧ୍ୟ ସେ ସେବା ଦେଇଥିଲେ । ସର୍ବୋଦୟ ମଣ୍ଡଳର ମଧ୍ୟ ସେ ଜଣେ ସକ୍ରିୟ କର୍ମୀ ଥିଲେ । ୧୯୭୧ ମସିହାରେ ଯେତେବେଳେ ପାକିସ୍ଥାନଠାରୁ ବାଂଲାଦେଶ ଅଲଗା ହେବା ପାଇଁ ସେଠାରେ ଘୋର ସଂଗ୍ରାମ ଚାଲିଲା । ସେତେବେଳେ ସର୍ବୋଦୟ କର୍ମୀମାନେ ଏକ ଶାନ୍ତି ସେନା ମଣ୍ଡଳୀ ଗଠନ କରି ଶାନ୍ତିର ବାର୍ତ୍ତା ନେଇ ସେଠାକୁ ଯାଇଥିଲେ । ସଂଗ୍ରାମୀ ବୈଦ୍ୟନାଥ ଦାଶ, (ଭୀମ ଚରଣଙ୍କ ସାନଭାଇ) ସେ ମଧ୍ୟ ଯାଇଥିଲେ, ମା' ରମାଦେବୀ ଚୌଧୁରୀଙ୍କ ସହିତ । ଯେଉଁମାନେ ଥିଲେ ସେମାନେ ପଦ୍ମାନଦୀର ପୋଲ ପାରି ହୋଇ ଚାଲିଗଲେ । କିନ୍ତୁ ସଂଗ୍ରାମୀ ଭୀମ ଚରଣ ଦାଶ ବହୁ ପଛରେ ରହି ଯାଇଥିଲେ । ତାଙ୍କ ଗାଡିଟିର ଯାନ୍ତ୍ରିକ ତ୍ରୁଟି ହେତୁ ପରେ ପରେ ପଦ୍ମାନଦୀର ପୋଲଟିକୁ ବିସ୍ଫୋରଣ କରି ଉଡେଇ ଦିଆଯିବାରୁ ସଂଗ୍ରାମୀ ଭୀମ ଚରଣ ନଦୀ ପାରି ହୋଇ ଯାଇପାରିନଥିଲେ । ତଥାପି ସେ ନଦୀ ପହଁରି ଚାଲିଯିବା ପାଇଁ ନଦୀ କୂଳେ କୂଳେ ଅନେକ ଦୂର ପର୍ଯ୍ୟନ୍ତ ଯାଇଥିଲେ । କିନ୍ତୁ ବିଫଳ ହୋଇ ଗୋଟିଏ ମଟର ଚାଳିତ ନୌକା

ସାହାଯ୍ୟରେ ଓ ଓଡ଼ିଶାକୁ ଶରଣ ପାଇଁ ଆସୁଥିବା ଶରଣାର୍ଥୀମାନଙ୍କ ସହିତ ଆସି ପାରାଦ୍ୱୀପର ଷଣ୍ଢକୁଦ ନିକଟରେ ପହଞ୍ଚିଥିଲେ । ସେ ସେହି ଶରଣାର୍ଥୀମାନଙ୍କୁ ତାଙ୍କର ନଳପାହିସ୍ଥିତ ୨୨ ମାଣ ସମ୍ପତ୍ତି ଉପରେ ଥଇଥାନ କରି ସେମାନଙ୍କୁ ତାହା ଦାନସୂତ୍ରରେ ଦେଇଥିଲେ । ତାଙ୍କର କୌଣସି ସନ୍ତାନ ନହେବାରୁ ସେ ସାନ ଭାଇ ସଂଗ୍ରାମୀ ବୈଦ୍ୟନାଥ ଦାଶଙ୍କ ମଧ୍ୟମ ପୁତ୍ର ଶ୍ରୀମାନ ଶିବବ୍ରତ ଦାଶଙ୍କୁ ୧୯୬୬ ମସିହାରେ ପୋଷ୍ୟପୁତ୍ର ଭାବରେ ଗ୍ରହଣ କରିଥିଲେ । ଆଇନଗତ ଭାବରେ ୧୯୭୭ ଜାନୁଆରୀ ୨୭ ତାରିଖରେ ଭଦ୍ରକ ନିବାସୀ ସଂଗ୍ରାମୀ ବନ୍ଧୁ କୃପାସିନ୍ଧୁ ଦାଶଙ୍କର ମଧ୍ୟମ ପୁତ୍ର ଡା. ସଂଗ୍ରାମୀ ବ୍ରଜମୋହନ ଦାଶଙ୍କର ଜ୍ୟେଷ୍ଠ କନ୍ୟାଙ୍କୁ ବିନା ଯୌତୁକରେ ପୁତ୍ରବଧୂ ଭାବରେ ଗ୍ରହଣ କରିଥିଲେ । ତାଙ୍କର ମୂଳ ଲକ୍ଷ୍ୟ ଥିଲା ଦେଶରୁ ଯୌତୁକରୂପୀ ରାକ୍ଷସକୁ ହଟାଇବା, ନିଶା ନିବାରଣ ଓ ଅସ୍ପୃଶ୍ୟତା ନିବାରଣ । ସମସ୍ତେ ପାଠପଢ଼ି ଶିକ୍ଷିତ ହୁଅନ୍ତି । ଏସବୁକୁ ନେଇ ସେ ଆଦିବାସୀ ଅଞ୍ଚଳରେ ସଭା ବସାଇ ସେମାନଙ୍କୁ ବହୁ କୁସଂସ୍କାରରୁ ନିବୃତ୍ତ ମଧ୍ୟ କରାଉଥିଲେ । ପଶୁବଳି ପ୍ରଥାକୁ ମଧ୍ୟ ସେ ବିଭିନ୍ନ ସ୍ଥାନରେ ଅନଶନ କରି ବନ୍ଦ କରୁଥିଲେ ।

ଏଭଳି ଜଣେ ସ୍ୱାଧୀନତା ସଂଗ୍ରାମୀ ତଥା ଦେଶ ସେବକ ସାରା ଓଡ଼ିଶାର ଓଡ଼ିଆ ଜାତିର ଗର୍ବ ଗୌରବ କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ଇଂରେଜ ଅଫିସରର ସେହି ଗୋଇଠା ମାଡ ତାଙ୍କ ପାଇଁ କାଳ ହୋଇଥିଲା । କାନ ଫାଟି ଥିବା ସ୍ଥାନଟି ଧିରେ ଧିରେ କ୍ୟାନ୍‌ସର ଆଡକୁ ଗତି କଲା । କଟକ ବଡ ମେଡ଼ିକାଲ୍‌ରେ ଦୀର୍ଘ ୬ ମାସ କାଳ କ୍ୟାନ୍‌ସର ବିଭାଗରେ ଚିକିତ୍ସା ହୋଇ ମଧ୍ୟ ସେ ସୁସ୍ଥ ହୋଇ ପାରିନଥିଲେ । ଶେଷରେ ୧୯୭୮ ମସିହା ମାର୍ଚ୍ଚ ମାସ ୨୮ ତାରିଖରେ ସେ ଇହଧାମ ପରିତ୍ୟାଗ କରିଥିଲେ ।

ଆଜି ସେ ନାହାନ୍ତି ସତ, କିନ୍ତୁ ବଞ୍ଚିରହିଛନ୍ତି ଜଗତସିଂହପୁର ଜିଲ୍ଲାର ଏରସମା ଅଞ୍ଚଳର ସମସ୍ତ ଜନସାଧାରଣଙ୍କ ମନରେ । ସେ ଅଞ୍ଚଳର ପ୍ରିୟ ଭୀମ ନନା ଭାବରେ । ଏରସମାର ଗାନ୍ଧୀ ଛକଠାରେ ସ୍ମୃତି ସ୍ମାରକୀ ଭାବରେ ତାଙ୍କର ନାମ ଫଳକଟି ମହାତ୍ମା ଗାନ୍ଧୀଙ୍କ ମୂର୍ତ୍ତିତଳେ ରହିଯାଇଛି ଲିପିବଦ୍ଧ ହୋଇ । ଏରସମାର ମହାନାୟକ ସେ । ଇତିହାସ ପୃଷ୍ଠାରେ ନିଶ୍ଚିତ ତାଙ୍କୁ ଜାଣିବେ ଓଡ଼ିଶାର ଉତ୍ତର ପୁରୁଷମାନେ ।

ବ୍ରାହ୍ମଣୀ ଗାଁ
ଜିଲ୍ଲା- ଯାଜପୁର



# ସେଇ ଦଶନ୍ଧିରେ ଜନ୍ମିତ ଦୁଃସାହସୀମାନେ...

**ପ୍ରତିଭାରାଣୀ ମହାନ୍ତି**



ସମଗ୍ର ଭାରତବର୍ଷରେ ଗୋଟିଏ ନାମରେ ଚିହ୍ନିତ ଲୋକପ୍ରିୟ ବ୍ୟକ୍ତି ହେଉଛନ୍ତି ବିଜୁ ପଟ୍ଟନାୟକ । ୫ ମାର୍ଚ୍ଚ ୧୯୧୬ରେ ଜନ୍ମିତ ଏହି ବ୍ୟକ୍ତିଙ୍କର ପରବର୍ତ୍ତୀ କାର୍ଯ୍ୟ କଳାପ ଏବଂ କର୍ତ୍ତବ୍ୟ, ନିଷ୍ଠା, ସାହସୀ କର୍ମଗୁଡ଼ିକ, ସାରା ବିଶ୍ୱକୁ ଚକିତ କରିଦେଇଥିଲା । ଓଡ଼ିଶାରେ ନୁହେଁ, ଭାରତବର୍ଷରେ ନୁହେଁ, ସାରା ବିଶ୍ୱରେ ନିଜର ଦକ୍ଷତା ପ୍ରତିପାଦନ କରିପାରିଥିବା ଏହି ବ୍ୟକ୍ତି ଏକାଧାରରେ ସମାଜସେବା, ରାଜନୀତି, ଦେଶସେବାକୁ ନିଜ ଜୀବନର ବ୍ରତ କରିନେଇଥିଲେ । ଦକ୍ଷ ପାଇଲଟ୍ ଏବଂ ଦୁଃସାହସିକ ଉଡ଼ାଜାହାଜ ଚାଳନା ତାଙ୍କୁ ପଣ୍ଡିତ ଜବାହରଲାଲ ନେହେରୁଙ୍କ ପ୍ରିୟ ଭାଜନ କରାଇପାରିଥିଲା, ଯାହାର ଫଳାଫଳ ଏଇଆ ଥିଲା ଯେ, ସମସ୍ତ ପ୍ରକାର ସ୍ୱାଧୀନତା ଆନ୍ଦୋଳନରେ ଭାରତବର୍ଷରେ ହେଉ ବା ଇଣ୍ଡୋନେସିଆରେ ହେଉ, କାଶ୍ମୀରକୁ ଭାରତବର୍ଷ ସହ ରଖିବା ପାଇଁ, ସୈନ୍ୟ ତଥା ନେତୃବୃନ୍ଦଙ୍କୁ ପଠାଇବା ପାଇଁ ହେଉ ପଣ୍ଡିତ ନେହେରୁ ସବୁବେଳେ ବିଜୁ ପଟ୍ଟନାୟକଙ୍କୁ ଭରସା କରି ବିମାନ ପଠାଉଥିଲେ । ବିଜୁବାବୁ ମଧ୍ୟ ନିଜର ବଳ, ବୁଦ୍ଧି ପ୍ରୟାଗ ପୂର୍ବକ ଏସବୁ, ସୁସମ୍ପାଦନ କରିପାରୁଥିଲେ । ଚିରସହଚର ଡାକୋଟା ବିମାନ ନେଇ ବିଜୁବାବୁ କେତେ ଯେ କର୍ତ୍ତବ୍ୟ ସମ୍ପାଦନ କରିଅଛନ୍ତି, ତାହାର ହିସାବ ନାହିଁ । ଡଚ୍‌ମାନଙ୍କ ଦ୍ୱାରା କବଳିତ, ଇଣ୍ଡୋନେସିଆର ସ୍ୱାଧୀନତା ପାଇଁ ଡଚ୍‌ମାନଙ୍କ ବିରୋଧରେ ଆନ୍ତର୍ଜାତିକ ଚାପ ପ୍ରୟୋଗ ପାଇଁ ନେହେରୁ ନୂଆଦିଲ୍ଲୀରେ ଡାକିଥିବା ସମ୍ମିଳନୀରେ, ଇଣ୍ଡୋନେସିଆର ରାଷ୍ଟ୍ରପତି ସୁକର୍ଣ୍ଣୋ ଏବଂ ପ୍ରଧାନମନ୍ତ୍ରୀ ଜାହାରିୟର ଖାଁ ଯୋଗ ଦେବାର ଆବଶ୍ୟକ ଥିଲା । ଡଚ୍‌ମାନଙ୍କ ଦ୍ୱାରା କବଳିତ Air port ଏବଂ Sea route ଦେଇ ଏମାନେ

ଦିଲ୍ଲୀ ପହଞ୍ଚିବା ଅସମ୍ଭବ ଥିଲା, ଏଣୁ ନେହେରୁଙ୍କ ଡାକରାରେ ବିଜୁ ପଟ୍ଟନାୟକ ଡାକୋଟା ବିମାନ ନେଇ ସାଙ୍ଗରେ ପତ୍ନୀ ଜ୍ଞାନଦେବୀଙ୍କୁ ନେଇ ଜାକର୍ତ୍ତା ଯାତ୍ରା କଲେ । ଡଚ୍‌ମାନଙ୍କ ଗୁଳିକୁ ଖାତିର ନ କରି ଉଡ଼ାଜାହାଜ ନେଇ ଜାକର୍ତ୍ତାରେ ପହଞ୍ଚିଲେ । ସେଠାରେ ଜାପାନୀମାନେ ଛାଡ଼ିଥିବା ବିମାନ ଇନ୍ଧନକୁ ନିଜର ବିମାନରେ ପକାଇ, ସୁକର୍ଣ୍ଣୋ ଏବଂ ଜାହାରିୟରଙ୍କୁ ଉଠାଇ ଆଣି ସିଙ୍ଗାପୁର ବାଟଦେଇ ନୂଆଦିଲ୍ଲୀ ପ୍ରବେଶ କରିଥିଲେ । ଜୁଲାଇ ୨୪ ତାରିଖ ୧୯୪୭ ମସିହା । ଏହି ଦିନଟି ଇତିହାସରେ ଏକ ସ୍ମରଣୀୟ ଦିନ । ଏହିଦିନ ନେହେରୁ ଏବଂ ଡଚ୍ ବିରୋଧୀ ଆନ୍ତର୍ଜାତିକ ସମ୍ମିଳନୀର ସଫଳତାର ଦିନ । ଏହାର ପ୍ରତିଦାନରେ ଇଣ୍ଡୋନେସିଆର ସର୍ବୋଚ୍ଚ ସମ୍ମାନ ''ଭୂମିପୁତ୍ର'' ବିଜୁବାବୁଙ୍କୁ ମିଳିଥିଲା । କୌଣସି ବିଦେଶୀଙ୍କୁ ଏହା ଇଣ୍ଡୋନେସିଆର ପ୍ରଥମ ସର୍ବୋଚ୍ଚ ସମ୍ମାନ ଥିଲା । ବିଜୁବାବୁ ମଧ୍ୟ ରାଷ୍ଟ୍ରପତି ସୁକର୍ଣ୍ଣୋଙ୍କ କନ୍ୟାର ନାମ ''ମେଘାବତୀ'' ରଖିଥିଲେ, (ମେଘ ରାଜାର ଝିଅ) ପରେ ମେଘାବତୀ ଇଣ୍ଡୋନେସିଆର ପ୍ରଥମ ମହିଳା ରାଷ୍ଟ୍ରପତି ହେଲେ । ୧୯୯୫ରେ ଇଣ୍ଡୋନେସିଆ ତା'ର ସ୍ୱାଧୀନତାର ୫୦ ବର୍ଷ ପୂର୍ତ୍ତି ପାଳନ କରୁଥିଲା ବେଳେ, ବିଜୁବାବୁଙ୍କୁ ସର୍ବୋଚ୍ଚ ଜାତୀୟ ସମ୍ମାନ ''BINTANG JASA UTAMA'' ପ୍ରଦାନ କରିଥିଲା । ଏବେ ଇଣ୍ଡୋନେସିଆ ସରକାର ଦିଲ୍ଲୀ ଦୂତାବାସରେ ବିଜୁବାବୁଙ୍କର ଏକ ବିରଳ ଫଟୋଚିତ୍ର ସଂଗ୍ରହାଳୟ କରିଛନ୍ତି ।

କାଶ୍ମୀର ରକ୍ଷା କରିବାରେ ନେହେରୁ ବିଜୁବାବୁଙ୍କର ସହଯୋଗ ନେଇଥିଲେ । ୨୭ ଅକ୍ଟୋବର ୧୯୪୭ରେ ଯଦି ଡାକୋଟା ବିମାନରେ ଶିଖ୍ ରେଜିମେଣ୍ଟ ନେଇ ବିଜୁବାବୁ ଶ୍ରୀନଗର ଏୟାରପୋର୍ଟ ଯାଇନଥାନ୍ତେ, ହୁଏତ ଆଜି କାଶ୍ମୀର ପଡ଼ୋଶୀ ପାଖରେ ଥାଆନ୍ତା, କାରଣ ବିମାନ ଘାଟି ଦଖଲ କରି ପଡ଼ୋଶୀ ସବୁକିଛି ହାସଲ କରିପାରି ଥାଆନ୍ତେ । ବାରମୂଳା ଘାଟିରେ ଯୁଦ୍ଧ ପାଇଁ ସମସ୍ତ ଯୋଗାଯୋଗ ଏହି ଶ୍ରୀନଗର ଏୟାରପୋର୍ଟରୁ ହିଁ ହୋଇଥିଲା । ବିମାନ ଚାଳନାରେ ଏତେ ଖୁସି ତାଙ୍କୁ ଲାଗୁଥିଲା ଯେ, ୭୯ତମ ଜନ୍ମଦିବସରେ ଜଣେ ବ୍ୟକ୍ତିଙ୍କର ପ୍ରଶ୍ନରେ, ଆପଣ କିପରି ମୃତ୍ୟୁ ଚାହାନ୍ତିର ଉତ୍ତର ସେ ଦେଇଥିଲେ, ଯେ, ମୁଁ ଲମ୍ବା ସମୟ ଅସୁସ୍ଥତା ରହିବା ଅପେକ୍ଷା ବିମାନ ଦୁର୍ଘଟଣାରେ ମୃତ୍ୟୁକୁ ଶ୍ରେୟସ୍କର ମନେ କରିବି । ଦେଶର ସ୍ୱାଧୀନତା ସଂଗ୍ରାମଠାରୁ ନେଇ ଦେଶର ସୁରକ୍ଷା ପର୍ଯ୍ୟନ୍ତ ସବୁକିଛି କରିବା ପାଇଁ ସବୁବେଳେ ବିଜୁବାବୁ ପ୍ରସ୍ତୁତ ରହୁଥିଲେ ।

ଦୃଢ଼ ମନୋବଳ ଥିବା ଜଣେ ବ୍ୟକ୍ତି ଭାବରେ ଓଡ଼ିଶାକୁ ଆଗକୁ ନେବାପାଇଁ ଅନେକ ଚେଷ୍ଟା କରିଥିଲେ । କଳିଙ୍ଗ ଟ୍ୟୁବ୍‌ସ, କଳିଙ୍ଗ ଏୟାରଲାଇନ୍ସ, କଳିଙ୍ଗ ଆଇରନ୍, କଳିଙ୍ଗ ରିଫାକ୍ଟରିଜ୍, କଳିଙ୍ଗ ଦୈନିକ ଖବରକାଗଜ, ଆର୍ନ୍ତଜାତିକ କଳିଙ୍ଗ ପୁରସ୍କାର, ପାରାଦ୍ୱୀପ ବନ୍ଦର, ଭୁବନେଶ୍ୱର ବିମାନବନ୍ଦର, ରିଜିଓନାଲ ଇଞ୍ଜିନିୟରିଂ କଲେଜ, ସୈନିକ ସ୍କୁଲ୍, ଭୁବନେଶ୍ୱର, OUAT, NALCO, Talcher Thermal, Balimela Hydro Project, ସୁନାବେଡ଼ା ମିଗ୍ ବିମାନ କାରଖାନା, ଓଟିଏମ୍ ଚୌଦ୍ୱାର, ବଡ଼ବିଲ୍ ଶିଳ୍ପ ସମୂହର ସ୍ଥାପନ କରିଥିଲେ ଓ କ୍ରୀଡ଼ାର ବିକାଶ ପାଇଁ କଳିଙ୍ଗ କପ୍ ଫୁଟବଲ୍ ପୁରସ୍କାର ଇତ୍ୟାଦି ଇତ୍ୟାଦି ।

ଇତିହାସ ମଧ୍ୟ କୁହେ ୧୯୧୦ରୁ ୧୯୨୦ ମସିହା ମଧ୍ୟରେ ଜନ୍ମିତ ଅନେକ ବ୍ୟକ୍ତିବିଶେଷ, ଦୁଃସାହସୀ ଥିଲେ । ଗଡ଼ଜାତ ଆନ୍ଦୋଳନ ହେଉ, ସ୍ୱାଧୀନତା ସଂଗ୍ରାମ ତଥା ପ୍ରଜାମେଳି, ସବୁ କ୍ଷେତ୍ରରେ ଏହି ସମୟରେ ଜନ୍ମିତ ଅନେକ ବ୍ୟକ୍ତି ଝାସ ଦେଇ ମୃତ୍ୟୁ ପର୍ଯ୍ୟନ୍ତ ଲଢ଼ିଥିଲେ । ରଣପୁରର ଶହୀଦ ରଘୁନାଥ ମହାନ୍ତି ଏବଂ ଶହୀଦ ଦିବାକର ପରିଡ଼ା ମଧ୍ୟ ଅତ୍ୟାଚାରୀ ଇଂରେଜ ସାହେବ ''ବେଜେଲ୍‌ଗେଟ୍''କୁ ପିଟିପିଟି ମାରି ଫାଶିଖୁଣ୍ଟରେ ଚଢ଼ାଇଥିଲେ । ଏଥିରୁ ଅନୁମାନ, ଏମାନେ କେଉଁ ପ୍ରକାରର ଦୁଃସାହସୀ ଥିଲେ । ଯେପରି ପଣ୍ଡିତ ଗୋପବନ୍ଧୁ ଦାସଙ୍କ କବିତାର, ସତ୍ୟତାର ଏମାନେ ଗୋଟିଏ ଗୋଟିଏ ଉଦାହରଣ ।

''ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।''

ସମାଜବାଦରେ ବିଶ୍ୱାସୀ ଦୃଢମନା ବିଜୁବାବୁ ବିଭିନ୍ନ ସମୟରେ ଓଡ଼ିଶାର ବିଧାନସଭା ଓ ଲୋକସଭା ଆସନରୁ ଅନେକଥର ନିର୍ବାଚିତ ହୋଇଥିଲେ । ଲୋକପ୍ରିୟତାର ଶୀର୍ଷରେ ଥିବା ଏହି ବ୍ୟକ୍ତିଙ୍କର ମହାପ୍ରୟାଣ ୧୭ ଅପ୍ରେଲ ୧୯୯୭ରେ ହୋଇଥିଲା । କେତେ ଲୋକପ୍ରିୟ ଥିଲେ ବିଜୁବାବୁ, ତାହା ତାଙ୍କର ମର ଶରୀର ଯେତେବେଳେ ଶୋଭାଯାତ୍ରାରେ ଯାଉଥିଲା ଭୁବନେଶ୍ୱରରୁ ପୁରୀ ପର୍ଯ୍ୟନ୍ତ ସେତେବେଳେ କାନ୍ଦୁଥିବା ଅସଂଖ୍ୟ ଜନତାଙ୍କ ମୁହଁରୁ ଏବଂ ସମାଗମରୁ ଜଣାପଡ଼ିଥିଲା । ଏପରି ବିରଳ ରାଷ୍ଟ୍ରନାୟକ ଯାହାଙ୍କର ମୃତ ଶରୀର ଉପରେ ତିନୋଟି ଦେଶର ଜାତୀୟ ପତାକା ସମ୍ମାନସୂଚକ ଢାଙ୍କି ଦିଆଯାଇଥିଲା ଭାରତ, ଋଷ, ଇଣ୍ଡୋନେସିଆ ଏହି ତିନୋଟି ଦେଶର ଜାତୀୟ ପତାକା । କେତେ ବଡ଼ ସମ୍ମାନ । ତାଙ୍କର ସୁପୁତ୍ର ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଆଜି ପିତାଙ୍କର ସମସ୍ତ ସ୍ୱପ୍ନକୁ ସାକାର କରି ଓଡ଼ିଶାକୁ ଆଗକୁ ନେଇ ଚାଲିଛନ୍ତି । ଜନତାଙ୍କ ଆଶୀର୍ବାଦ ସର୍ବଦା ତାଙ୍କ ସହ ରହିଛି ।

କେତେ ଲୋକପ୍ରିୟ ନେତା ବିଜୁବାବୁ ଥିଲେ, ତା'ର ଏକ ପ୍ରମାଣ ମୁଁ ନିଜେ ଅଙ୍ଗେ ନିଭେଇଛି । ୧୯୯୧ ମସିହାରେ ମୁଁ ଓ ମୋର ସାଙ୍ଗମାନେ କଲିକତା ମାଆ କାଳୀଙ୍କୁ ଦର୍ଶନ କରିବା ପାଇଁ ଜିପ୍ ଖଣ୍ଡିଏ ନେଇ ଯାଇଥିଲୁ । ସେଠାରେ ସେମାନେ ପଚାରନ୍ତି କେଉଁଠୁ ଆସିଛ । ଆମେ କହୁ ଓଡ଼ିଶା । ସେମାନଙ୍କ ମଧ୍ୟରୁ ଅନେକ କୁହନ୍ତି, ଓଡ଼ିଶା ! ଓହୋ ପୁରୀ ଜଗନ୍ନାଥ । କିଛି କୁହନ୍ତି ବିଜୁ ପଟ୍ଟନାୟକ, ଆମେ ଆଶ୍ଚର୍ଯ୍ୟ ହେଲୁ । ସେତେବେଳେ ବାହାରେ ଆମ ପରିଚୟ ଥିଲା ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପରେ ବିଜୁ ପଟ୍ଟନାୟକ । ଗାଡ଼ିକୁ ଆସିଲୁ, ଫେରିଲା ବେଳେ ଡ୍ରାଇଭରକୁ କହିଲୁ ଆଜ୍ଞା ଗୀତ ବଜାନ୍ତୁ ରଙ୍ଗବତୀ ଗୀତ । ସିଏ ମହାଶୟ କହିଲେ ଆଜ୍ଞା ବଙ୍ଗାଳୀ ଡ୍ରାଇଭରମାନେ ମୋ'ଠାରୁ ରଙ୍ଗବତୀ କ୍ୟାସେଟ୍ ଅନୁରୋଧ କରି ମାଗି ନେଇଗଲେ । ସେତେବେଳେ ଆମେ ତୃତୀୟ ପରିଚୟ ପାଇଥିଲୁ । ଏହାପରେ କେନ୍ଦ୍ର ସରକାର ଓ ରାଜ୍ୟ ସରକାର ଅନେକ ଅନୁଷ୍ଠାନକୁ ବିଜୁବାବୁଙ୍କ ନାମରେ ନାମିତ କରିଅଛନ୍ତି, ଯଥା– ବିଜୁ ପଟ୍ଟନାୟକ ଅନ୍ତର୍ଜାତୀୟ ବିମାନ ବନ୍ଦର, B.P.U.T., ଷ୍ଟାଡ଼ିୟମ ଅନୁଗୋଳ, ପଞ୍ଚାୟତିରାଜ ଦିବସ ଇତ୍ୟାଦି... । ଯାହାହେଲେ ବି 'ବିଜୁ ପଟ୍ଟନାୟକ' ନାମ ହିଁ ଓଡ଼ିଶାବାସୀଙ୍କ ପାଇଁ ଯଥେଷ୍ଟ ।

୨୦୮, ଧର୍ମ ବିହାର
ଭୁବନେଶ୍ୱର



# ଅଦ୍ୱିତୀୟ ଚିତ୍ରଶିଳ୍ପୀ ଚନ୍ଦ୍ରଶେଖର ରାଓ

**ଗୁରୁକଲ୍ୟାଣ ମହାପାତ୍ର**



ସେ ଆମ ଗହଣରୁ ବିଦାୟ ନେଲେଣି ସତର ବର୍ଷ ତଳୁ । ଆମେମାନେ ତାଙ୍କୁ ଜନ୍ମ ବା ଶ୍ରାଦ୍ଧ ଦିବସରେ ହୁଏତ ସ୍ମରଣ କରିପାରୁନାହୁଁ । ପରିବାର ଲୋକେ ତ ବର୍ଷକୁ ଥରେ ବା ଦୁଇଥର ତାଙ୍କୁ ମନେ ପକାଉ ଥିବେ । ଏତେ ବଡ ଚିତ୍ରଶିଳ୍ପୀ, ଜଣେ ବିଶିଷ୍ଟ କଳାକାରଙ୍କୁ ପ୍ରତିବର୍ଷ ମନେ ପକାଇ ତାଙ୍କର ଗୁଣ କୀର୍ତ୍ତନ କରିବାରେ ଆମେ ଆନନ୍ଦ ଲାଭ କରିପାରନ୍ତେ ।

କେବଳ ଗଞ୍ଜାମ ଜିଲ୍ଲାର ନୁହେଁ, ସାରା ଓଡ଼ିଶାର ସେହି ବରପୁତ୍ର ଚନ୍ଦ୍ରଶେଖର ରାଓଙ୍କ ବିଷୟରେ ଉଲ୍ଲେଖ କରାଯାଉ । ସେ ଜନ୍ମ ହୋଇଥିଲେ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ପୋଲସରାରେ ୧୬ ସେପ୍ଟେମ୍ବର ୧୯୪୦ରେ । ତାଙ୍କର ଦେହାନ୍ତ ହୋଇଥିଲା ୩ ଫେବୃଆରୀ ୨୦୦୪ରେ ଭୁବନେଶ୍ୱରରେ । ତାଙ୍କୁ ଭେଟିଛି, କଥା ହୋଇଛି, ଅଳ୍ପ ସମ୍ପର୍କରେ ଆସିଛି । ମାତ୍ର ତାଙ୍କୁ ଦେଖିଲେ ମନେହେବ ସତେଯେପରି ସେ ଜନ୍ମରୁ କଳାକାର । ମୋର ପିତୃବ୍ୟ ନିତ୍ୟାନନ୍ଦ ମହାପାତ୍ର ସଂସ୍କୃତି ବିଭାଗର ମନ୍ତ୍ରୀ ଥିବାବେଳେ ତାଙ୍କୁ ଦେଖିଛି ତାଙ୍କର ଘରେ ଓ ଦପ୍ତରରେ । ସ୍ୱର୍ଗୀୟ ବିଜୁ ପଟ୍ଟନାୟକଙ୍କ ପରିକଳ୍ପନାରେ ଦୁଇଟି ହାୟର ସେକେଣ୍ଡାରୀ ସ୍କୁଲ ଅଫ୍ ସାଇନ୍ସ ଓ ଟେକ୍ନୋଲୋଜି ସ୍କୁଲ ଓଡ଼ିଶାରେ ଗଢା ଯାଇଥିଲା । ଗୋଟିଏ ଥିଲା ଚଉଦ୍ୱାରରେ ଓ ଅନ୍ୟଟି ଥିଲା ଆସିକାରେ । ମୋର ସୌଭାଗ୍ୟ ଯେ ଚଉଦ୍ୱାର ହାୟର ସେକେଣ୍ଡାରୀ ସ୍କୁଲ ଅଫ୍ ସାଇନ୍ସ୍ ଓ ଟେକ୍ନୋଲୋଜିରେ ମୁଁ ଥିଲି ଛାତ୍ର । ଆମର କଳା ଶିକ୍ଷକ ଥିଲେ ଚିତ୍ରଶିଳ୍ପୀ ସୀତାକାନ୍ତ ମହାପାତ୍ର ଆଉ ଆସିକା ସ୍କୁଲରେ କଳା ଶିକ୍ଷକ ଥିଲେ ଚନ୍ଦ୍ରଶେଖର ରାଓ । ସେ ଚନ୍ଦ୍ରଶେଖର ରାଓ ନାମରେ ପରିଚିତ ଥିଲେ ହେଁ ତାଙ୍କର ପୂରା ନାମ ଥିଲା ଏନ୍ (ନାରଲେଙ୍କା) ଚନ୍ଦ୍ର ଶେଖର ରାଓ ।

ତାଙ୍କ ଜୀବଦ୍ଦଶାରେ ସେ ରାଜ୍ୟରେ, ଭାରତରେ ଓ ଏପରିକି ବିଦେଶରେ ପ୍ରାୟ ପଚାଶରୁ ଅଧିକ ସ୍ଥାନରେ ଏକକ ଚିତ୍ରକଳା ପ୍ରଦର୍ଶନୀ କରି ଉଚ୍ଚ ପ୍ରଶଂସିତ ହୋଇଥିଲେ । ରାଜ୍ୟରେ ଓ ରାଜ୍ୟ ବାହାରେ ଅନେକ ଆଲୋଚନାଚକ୍ରରେ

ସେ ଅଂଶଗ୍ରହଣ କରିବାର ସୁଯୋଗ ପାଇଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟଙ୍କ ପକ୍ଷରୁ ୧୯୯୭ରେ ଭାରତ ସ୍ୱାଧୀନତା ପ୍ରାପ୍ତିର ୫୦ ବର୍ଷ ପୂର୍ତ୍ତି ଅବସରରେ ଜାତୀୟ ଚିତ୍ରଶିଳ୍ପୀ ଶିବିରର ଆୟୋଜନ କରି ସେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ୧୯୯୪ରେ ସେ ଲଳିତ କଳା ଏକାଡେମୀ, ନୂଆଦିଲ୍ଲୀ ପକ୍ଷରୁ ଜାତୀୟ ଗବେଷଣା ଫେଲୋସିପ୍ ପାଇଁ ବିଚାରକ ମଧ୍ୟ ନିଯୁକ୍ତ ହୋଇଥିଲେ ।

ସେହିପରି ୧୯୯୫ ମସିହାରେ ଲଳିତ କଳା ଏକାଡେମୀ, ନୂଆଦିଲ୍ଲୀଙ୍କ ଦ୍ୱାରା ବାଙ୍ଗାଲୋରଠାରେ ଆୟୋଜିତ ଜାତୀୟ କଳାମେଳାର ବିଚାରକ ଭାବେ ମନୋନୀତ ହୋଇଥିଲେ । ସେହିବର୍ଷ ମଧ୍ୟ ସେ କେନ୍ଦ୍ରୀୟ ଲଳିତ କଳା ଏକାଡେମୀ, ନୂଆଦିଲ୍ଲୀର ସାଧାରଣ ପରିଷଦ ଓ ଅନୁଦାନ କମିଟିର ସଦସ୍ୟ ମନୋନୀତ ହୋଇଥିଲେ ।

୧୯୯୫ରେ ନୂଆଦିଲ୍ଲୀର ଇଣ୍ଡିଆ ଇଣ୍ଟରନେସନାଲ ଟ୍ରେଡ୍ ଫେୟାରର ଓଡ଼ିଶା ମଣ୍ଡପ ଦାୟିତ୍ୱରେ ରହି ସେ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲେ ଏବଂ ସ୍ୱିଡେନ୍‌ରେ ଫେଷ୍ଟିଭାଲ୍ ଅଫ୍ ପପୁଲାର ଆର୍ଟ ଅଫ୍ ଇଣ୍ଡିଆ, ନାଗପୁରର କୃଷି ମେଳା, ଅହମ୍ମଦାବାଦର ଓଡ଼ିଶା ମେଳା ପ୍ରଭୃତିରେ ଭାଗ ନେଇ ନିଜର କଳା ପାଟବ ପ୍ରତିପାଦନ କରିଥିଲେ ।

ପ୍ରକୃତରେ ଜୟଦେବ କୃତ 'ଗୀତଗୋବିନ୍ଦ'କୁ ରଙ୍ଗ ଓ ଚିତ୍ରକଳାରେ ସେ ଯେପରି ବିମଣ୍ଡିତ କରିଥିଲେ, ତାହାର ତୁଳନା ନାହିଁ । ଗତ ଡିସେମ୍ବର ୩୦ (୨୦୨୦)ରେ ଦେହାବସାନ ଘଟିଥିଲା ବିଶିଷ୍ଟ ସଙ୍ଗୀତ ଶିଳ୍ପୀ ଶାନ୍ତନୁ ମହାପାତ୍ରଙ୍କର (ପୂର୍ବତନ ସଭାପତି, ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ) । ଚନ୍ଦ୍ର ରାଓଙ୍କ ବିୟୋଗରେ ସେ ଲେଖିଥିଲେ- 'ଭକ୍ତକବି ଜୟଦେବଙ୍କ ବିଶ୍ୱବିଖ୍ୟାତ 'ଗୀତଗୋବିନ୍ଦ'ର ବିଷୟବସ୍ତୁକୁ ଅପୂର୍ବ ରଙ୍ଗ ସମାରୋହରେ ତାଙ୍କର ଅମର ତୁଳୀ ଜରିଆରେ ସଜାଇ ଜୀବନ୍ତ କରିପାରିଥିଲେ ସେ ।' (ଦୁଃଖଦ ଅବସର, ଉତ୍ତରାୟଣ ପୁସ୍ତକ-୨୦୦୪)

ଆମ ସମୟର ଜଣେ ସୁପରିଚିତ ଓଡ଼ିଆ କବି ଶ୍ରୀ ସୂର୍ଯ୍ୟ ମିଶ୍ର ତାଙ୍କ ବିୟୋଗରେ ଏକ ସୁନ୍ଦର କବିତା 'ବିଦାୟୀ ଚିତ୍ରି' ଶୀର୍ଷକରେ ଲେଖିଥିଲେ । ତାହାର ଆରମ୍ଭ ଏହିପରି- 'ସ୍ୱର୍ଗଦ୍ୱାରରେ ଶେଷ ହୋଇଥିବ ପ୍ରେତକୃତ୍ୟ ।/ ସମୁଦ୍ର ବାଲିରେ ତିଆରି ଥିବ ଏକ ସଂକ୍ଷିପ୍ତ ଭୂଗୋଳ,/ ତମ ପ୍ରିୟ- ପରିଜନ-ସତୀର୍ଥଙ୍କ ଗହଳ ଚହଳ/ସବୁଥିରେ ଛାଇ ଯାଇଥିବ ମରଣର ମୌନ ଅଭିସାର ।'....

ସ୍ୱଶରୀରରେ ନଥିଲେ ହେଁ ସ୍ୱର୍ଗୀୟ ରାଓଙ୍କର କୃତି କିନ୍ତୁ ଅମଳିନ । ତାଙ୍କ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଘର ନଂ-ଭିଏ-୨୯/୩, ୟୁନିଟ୍-୨
ଭୁବନେଶ୍ୱର-୯



# ଓଡ଼ିଆ ପ୍ରବନ୍ଧରେ 'ଗାନ୍ଧୀ'

ଡକ୍ଟର ବିରଞ୍ଚି କୁମାର ସାହୁ

ମହାନ୍ ବୈଜ୍ଞାନିକ ଆଲବର୍ଟ ଆଇନ୍‌ଷ୍ଟାଇନ୍ ମହାତ୍ମା ଗାନ୍ଧୀଙ୍କ ସମ୍ପର୍କରେ ଲେଖିଥିଲେ, 'ଜଣେ ରକ୍ତମାଂସ ଦେହଧାରୀ ମାନବ ଏ ପୃଥିବୀ ପୃଷ୍ଠକୁ ଆସିଛନ୍ତି, ତାହା ବିଶ୍ୱାସ କରି ହେଉନି' । ଏ କଥା ହୁଏତ ସମ୍ପୂର୍ଣ୍ଣ ସତ୍ୟ । ବାସ୍ତବରେ ମହାତ୍ମା ଗାନ୍ଧୀ ଏବକୁ ଆହୁରି ବିସ୍ତାରିତ ହେବାରେ ଲାଗିଛନ୍ତି । ୧୫୦ ତମ ଜୟନ୍ତୀ ପାଳନ ଅବସରରେ ଏହା ସ୍ପଷ୍ଟ ପ୍ରମାଣିତ । କାରଣ ସାରା ପୃଥିବୀରେ ବୋଧେ ମହାତ୍ମା ଗାନ୍ଧୀଙ୍କୁ ଛାଡିଦେଲେ ଦ୍ୱିତୀୟ ବ୍ୟକ୍ତି ଏପରିଭାବେ ପ୍ରସାରିତ ଓ ବିସ୍ତାରିତ ହୋଇପାରି ନାହାନ୍ତି । ଗାନ୍ଧୀଙ୍କ ବ୍ୟକ୍ତିତ୍ୱ ଥିଲା ବହୁମୁଖୀ । ବହୁ ସୁଗୁଣର ଅଧିକାରୀ । ଅନ୍ୟକୁ ପ୍ରଭାବିତ କରିବା ଭଳି ଶକ୍ତି ଓ ସାମର୍ଥ୍ୟ ତାଙ୍କର ଥିଲା । ନଚେତ୍ ସାରା ଭାରତରେ ଗୋଟିଏ ନାଁ– 'ଗାନ୍ଧୀ' ! ସବୁ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ପାଲଟି ନଥାନ୍ତେ । ଜୀବନର ବହୁ ପ୍ରକାଶକୁ ନେଇ ସାହିତ୍ୟିକ (କବି, ଗାଳ୍ପିକ, ଔପନ୍ୟାସିକ, ନାଟ୍ୟକାର) ନୂତନ ସୃଷ୍ଟି କଳାପରି ଭାରତୀୟ ସଂସ୍କୃତିର ବହୁ ଚିନ୍ତାଧାରାକୁ ଗୋଟିଏ ସୂତାରେ ବାନ୍ଧି ପୃଥିବୀରେ ନୂଆ ବିପ୍ଳବର ଦିଗ୍‌ଦର୍ଶନ ଦେଇଥିଲେ ଗାନ୍ଧୀ । ଗାନ୍ଧୀ ମଣିଷ ଭାବେ ଜନ୍ମିଥିଲେ, ଗାନ୍ଧୀ ମନ୍ଦିର, ଗାନ୍ଧୀ ଗୀତା, ଗାନ୍ଧୀବାଣୀ, ଗାନ୍ଧୀ ସଂହିତା ପ୍ରଭୃତି ଏହାର ବଳିଷ୍ଠ ପ୍ରମାଣ ।

ଗାନ୍ଧୀଙ୍କୁ ନେଇ ବହୁ ବିତର୍କ, ଚର୍ଚ୍ଚା, ସଂପାନ, ଆଲୋଚନା, କର୍ମଶାଳା, କବିତା, ଗଳ୍ପ, ନାଟକ, ଉପନ୍ୟାସ ଆଦି ରଚନା କରାଯାଇ ତାଙ୍କୁ ବିଭିନ୍ନଭାବେ ମୂଲ୍ୟାୟନ କରିବାର ଚେଷ୍ଟା କରାଯିବା ସତ୍ତ୍ୱେ ଗାନ୍ଧୀଙ୍କୁ ଆଜିଯାଏଁ



ଠିକ୍‌ଭାବେ ଆକଳନ କରିବା ସମ୍ଭବ ହୋଇନାହିଁ ବୋଲି ଅନୁଭବଟିଏ ଆସେ । କାରଣ, ସବୁର ଊର୍ଦ୍ଧ୍ୱରେ ଗାନ୍ଧିଜୀ ଆହୁରି ମହାନ୍ ଲାଗନ୍ତି । ଓଡ଼ିଶାରେ ଗାନ୍ଧୀଙ୍କ ବିଚାରକୁ

ବୁଝିବା ପାଇଁ ତଥା ଗାନ୍ଧୀଙ୍କୁ ନେଇ ଅନେକ ଲେଖା ପ୍ରକାଶିତ ହୋଇଛି । ଅନେକ ପ୍ରାବନ୍ଧିକ ସେମାନଙ୍କ ପ୍ରସାରିତ ଦୃଷ୍ଟିଭଙ୍ଗୀ ନେଇ ଗାନ୍ଧୀଙ୍କୁ ସ୍ୱ ସ୍ୱ ବିଚାରଧାରାରେ ଆକଳନ କରିଛନ୍ତି । ଓଡ଼ିଶା ସହିତ ଗାନ୍ଧୀଙ୍କର ସମ୍ପର୍କ ଥିଲା ମଧୁର । ସେ ତାଙ୍କ ଜୀବଦ୍ଦଶାରେ ୮ଥର ଓଡ଼ିଶା ଆସିଥିଲେ । ଗାନ୍ଧୀଙ୍କ ଓଡ଼ିଶା ଗସ୍ତ ସମୟରେ ତାଙ୍କ ସହିତ ବିଭିନ୍ନ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିଥିବା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଗୋପବନ୍ଧୁ ଚୌଧୁରୀ, ହରେକୃଷ୍ଣ ମହତାବ, ନିତ୍ୟାନନ୍ଦ ମହାପାତ୍ର, ବିନୋଦ କାନୁନ୍‌ଗୋ, ଅନ୍ନପୂର୍ଣ୍ଣା ମହାରଣା, ବୀର କିଶୋର ଦାସ ପମୁଖ ବ୍ୟକ୍ତିମାନେ ଗାନ୍ଧୀଙ୍କ ପ୍ରସଙ୍ଗକୁ ନେଇ ପୁସ୍ତକ ରଚନା କରିଛନ୍ତି । ସେହିପରି ଗାନ୍ଧୀଙ୍କ ସମୟ ଓ ଜୀବନକୁ ନେଇ ସୂର୍ଯ୍ୟନାରାୟଣ ଦାସ, ଚିତ୍ତରଞ୍ଜନ ଦାସ, ସୂର୍ଯ୍ୟକାନ୍ତ ଦାସ, ଶରତ କୁମାର ମହାନ୍ତି, ଅନାଦି ନାୟକ, ପଦ୍ମଚରଣ ନାୟକ ବିଭିନ୍ନ ପୁସ୍ତକମାନ ରଚନା କରିଛନ୍ତି । ଏସବୁଥିରେ ଛାତ୍ର ସମାଜ, ଶିକ୍ଷା ବ୍ୟବସ୍ଥା, ଖଦୀ, ଗ୍ରାମ୍ୟଶିଳ୍ପ, ନାରୀ ସମାଜ ପ୍ରଭୃତି ବର୍ଣ୍ଣିତ ।

ଗାନ୍ଧୀଙ୍କୁ ଓଡ଼ିଶା ପରିପ୍ରେକ୍ଷୀରେ ଦେଖିଲେ ଓଡ଼ିଆରେ ଅନେକ ପ୍ରବନ୍ଧ, ଗଳ୍ପ, ଉପନ୍ୟାସ, ନାଟକ, କବିତା, କାବ୍ୟ ପ୍ରଭୃତି ରଚିତ ହୋଇଛି । ପୁଣି ଗାନ୍ଧୀଙ୍କ ଦ୍ୱାରା ଲେଖାଯାଇଥିବା କିଛି ପୁସ୍ତକକୁ ଅନୁବାଦ ମଧ୍ୟ କରାଯାଇଛି ଓଡ଼ିଆରେ । ପ୍ରସଙ୍ଗକ୍ରମେ ଗାନ୍ଧୀଙ୍କ ସମ୍ପର୍କରେ ଯେଉଁ କେତୋଟି ପ୍ରବନ୍ଧ (ପୁସ୍ତକ) ରଚନା କରାଯାଇଛି, ତା' ସମ୍ପର୍କରେ ଆଲୋଚନାଟି ପ୍ରସ୍ତୁତ ।

ଏହି ଦୃଷ୍ଟିରୁ ଗୋପବନ୍ଧୁ ଚୌଧୁରୀଙ୍କ ଦ୍ୱାରା ରଚିତ 'ଚାଷୀ ମୂଲିଆ – ଗାନ୍ଧୀ' ପ୍ରବନ୍ଧ ପୁସ୍ତକରେ ଗାନ୍ଧୀଙ୍କ ସମ୍ପର୍କରେ ସେ ଅନେକ ତଥ୍ୟ ପ୍ରଦାନ କରିଛନ୍ତି । ନିଜେ ଗୋପବନ୍ଧୁ ଚୌଧୁରୀ, ଏପରିକି ତାଙ୍କର ପରିବାର ମଧ୍ୟ ଗାନ୍ଧୀ ଚେତନା ଦ୍ୱାରା ଅନୁପ୍ରାଣିତ । ଗାନ୍ଧୀଙ୍କ ଜୀବନର ଅନେକ ଘଟଣାକୁ ସେ ପ୍ରସଙ୍ଗକ୍ରମେ ଉପସ୍ଥାପନ କରିଛନ୍ତି । ଗାନ୍ଧୀ ବାରିଷ୍ଟର ପଢିବା ପାଇଁ ବିଲାତ ଯାଇଥିବା ସମୟରେ ସେଠି ଯେଉଁସବୁ ଘଟଣା ଘଟିଥିଲା, ତା'ର ଗୋଟେ, ଦୁଇଟି ଉଦାହରଣ ପ୍ରଦାନ କରାଯାଇଛି । ଗାନ୍ଧୀ କିପରି ସଭ୍ୟ, ମାର୍ଜିତ ହେବେ, ଅଳ୍ପ ଖର୍ଚ୍ଚରେ ଚଳିବେ, ତା' ସମ୍ପର୍କରେ ସୂଚନା ଦିଆଯାଇଛି । ଅଳ୍ପ ଖର୍ଚ୍ଚରେ ଚଳିବା କିପରି ସମ୍ଭବ, ତାହା ଗାନ୍ଧୀ ନିଜେ କରି ଦେଖାଇ ଯାଇଛନ୍ତି, ଯାହା ଆଜିର ସମାଜ ପାଇଁ ଏକାନ୍ତ ଅନୁକରଣୀୟ । ଗାନ୍ଧୀଙ୍କ ଚିନ୍ତାଧାରା ଥିଲା, 'High thinking and simple living'.

ଡକ୍ଟର ହରେକୃଷ୍ଣ ମହତାବଙ୍କ 'ଗାନ୍ଧିଜୀ ଓ ଓଡ଼ିଶା' ପ୍ରବନ୍ଧରେ ଗଡଜାତ ଲୋକମାନଙ୍କର ଚଳଣି, ରାଜାମାନଙ୍କର ପ୍ରାଦୁର୍ଭାବ, ଲୋକମାନଙ୍କର ବିଶ୍ୱାସ ସମ୍ପର୍କରେ ଆଲୋଚନା କରାଯାଇଛି । ଗାନ୍ଧୀଙ୍କ ଦ୍ୱାରା ପ୍ରକାଶିତ 'ହରିଜନ' ପତ୍ରିକାରେ ଗାନ୍ଧୀ ଗଡଜାତ ଓ ଢେଙ୍କାନାଳର ପ୍ରଜା ଆନ୍ଦୋଳନ ସମ୍ପର୍କରେ ଯେଉଁ ମତାମତ ରଖିଥିଲେ, ସେ ସମ୍ପର୍କରେ ବିସ୍ତୃତ ଆଲୋଚନା ରହିଛି । ଗାନ୍ଧୀ ଦେଇଥିବା ମତାମତଗୁଡିକୁ ଉଦ୍ଧାର କରାଯାଇଛି ଏଥିରେ । ବିନୋଦ କାନୁନ୍‌ଗୋଙ୍କ ପ୍ରବନ୍ଧ 'ବାପୁଜୀଙ୍କର ଉତ୍କଳରେ ପଦଯାତ୍ରା ସମ୍ପର୍କରେ' । ଓଡ଼ିଶାକୁ ଗାନ୍ଧୀଙ୍କ ଆଗମନ ଏବଂ ଶ୍ରୀମନ୍ଦିର ସାମ୍ନାରେ ଯେଉଁ ବିରାଟ ସାଧାରଣ ସଭା ହୋଇଥିଲା ସେଥିରେ ଗାନ୍ଧୀ ଉଦ୍‌ବୋଧନ ଦେଇଥିଲେ । ଏହି ସଭାରେ ଦଶହଜାରରୁ ଉର୍ଦ୍ଧ୍ୱ ଲୋକଙ୍କର ସମାଗମ ହୋଇଥିଲା । ଗାନ୍ଧୀ ଆସିଥିଲେ ଗୋପବନ୍ଧୁଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ କରିବା ପାଇଁ । ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ଗାନ୍ଧୀଙ୍କୁ ମଧ୍ୟ ଆଚ୍ଛାଦିତ କରିଥିଲା । ଏଥିସହିତ ପଦଯାତ୍ରା କରି ଗାଁ ଗାଁ ବୁଲି ଗାନ୍ଧୀ ଲୋକମାନଙ୍କୁ ବୁଝାଇଥିଲେ ସ୍ୱାଧୀନତା କଥା, ଛୁଆଁ ଛୁଇଁର ଭେଦଭାବ କଥା । ଗାନ୍ଧୀଙ୍କ ସେହି ମର୍ମସ୍ପର୍ଶୀ ଭାଷଣକୁ ଲୋକେ ମନ୍ତ୍ରମୁଗ୍ଧ ହୋଇ ଶୁଣୁଥାନ୍ତି । ଏହିସବୁ କଥାହିଁ ବିନୋଦ ବାବୁଙ୍କ ପ୍ରବନ୍ଧରେ ପ୍ରକାଶିତ ।

ଗୋପବନ୍ଧୁ ସାହିତ୍ୟ ମନ୍ଦିରରୁ ପ୍ରକାଶିତ ଗୋପବନ୍ଧୁ ଚୌଧୁରୀଙ୍କ 'ଗାନ୍ଧୀ ଓ ଉତ୍କଳ' ପ୍ରବନ୍ଧରେ ଉତ୍କଳ ସହିତ ଗାନ୍ଧୀଙ୍କ ସମ୍ପର୍କ ଏବଂ ଓଡ଼ିଶାରେ ଯେଉଁ ଦୁର୍ଭିକ୍ଷ ପଡିଥିଲା ସେ ସମ୍ପର୍କରେ ସୂଚନା ଦିଆଯାଇଛି । ୧୯୨୧ ମସିହାରେ ପ୍ରଥମେ ଗାନ୍ଧୀ ଓଡ଼ିଶାକୁ ଆସିଥିଲେ । ଓଡ଼ିଶାର ଅଗଣିତ

ଲୋକ ଗାନ୍ଧୀଙ୍କ ଉପରେ ଭରସା କରିଥିଲେ । ସତ୍ୟାଗ୍ରହୀ ହେବା, ଦେଶପାଇଁ କାମ କରିବା ପ୍ରଭୃତି ଗାନ୍ଧୀଙ୍କ ଦ୍ୱାରା ପ୍ରଭାବିତ ହୋଇ ସେମାନେ କରୁଥିଲେ । ବିଦେଶୀ ବର୍ଜନ କରି ଅଳ୍ପ ଲୁଗାରେ ଚଳି ହେବ କିପରି, ସେ ସମ୍ପର୍କରେ ଲୋକମାନଙ୍କୁ ବୁଝାଇଥିଲେ । 'ଗାନ୍ଧୀ ବିଚାର' ପ୍ରସଙ୍ଗରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶରତଚନ୍ଦ୍ର ମହାରଣା ଓ ଫକୀର ମିଶ୍ର ଦ୍ୱୟ ଏକ ପ୍ରବନ୍ଧ ରଚନା କରିଥିଲେ, 'ଗାନ୍ଧିଜୀଙ୍କ ମୌଳିକ ଶିକ୍ଷା' ସମ୍ପର୍କରେ । ଗାନ୍ଧୀଙ୍କ ବିଚାରରେ ମୌଳିକ ଶିକ୍ଷା କ'ଣ, ମୌଳିକ ଶିକ୍ଷାର ଆବଶ୍ୟକତା ଏବଂ ମୌଳିକ ଶିକ୍ଷାର ପ୍ରୟୋଗ କିପରି କରାଯାଇପାରିବ ସେ ସମ୍ପର୍କରେ ଏ ପ୍ରବନ୍ଧରେ ବର୍ଣ୍ଣନା କରାଯାଇଛି ।

ଏହି ଚିନ୍ତାଧାରା ଗାନ୍ଧୀଙ୍କ ମୌଳିକ ଓ ଚିନ୍ତା ପ୍ରସୂତ । ଏହାକୁ କାର୍ଯ୍ୟକାରୀ କରାଯାଇଥିଲା ୧୯୩୮ ମସିହାଠାରୁ । ପିଲାମାନେ ଏହି ଶିକ୍ଷା ପାଇଲେ ଭବିଷ୍ୟତରେ ସ୍ୱାବଲମ୍ବୀ ହୋଇପାରିବେ । କୃଷି, ଫଳଚାଷ, ବଢେଇ କାମ, ଚମଡା ଶିଳ୍ପ ପ୍ରଭୃତି ଏହି ଶିକ୍ଷା ଗୋଟିଏ ଗୋଟିଏ ଅଂଶ । ସତ୍ୟ ଓ ଅହିଂସାର ପୂର୍ଣ୍ଣ ସ୍ୱରାଜ୍ୟ ଲାଭ ପାଇଁ ଗାନ୍ଧୀଙ୍କ ଦୃଷ୍ଟିଭଙ୍ଗୀ ଥିଲା ଏହିପରି । ସାଂପ୍ରଦାୟିକ ଏକତା, ଅସ୍ପୃଶ୍ୟତା ନିବାରଣ, ନିଶା ନିବାରଣ, ଖଦୀ, ଗ୍ରାମୋଦ୍ୟୋଗ, ମୌଳିକ ଶିକ୍ଷା, ପ୍ରୌଢଶିକ୍ଷା, ନାରୀ ଜାତିର ଉନ୍ନତି, ସଫେଇ, ରାଷ୍ଟ୍ର ଭାଷା ପ୍ରଚାର, ସ୍ୱ–ଭାଷା ପ୍ରେମ, ଆର୍ଥିକ ସମାନତା, କୃଷକ, ଶ୍ରମିକ, ବିଦ୍ୟାର୍ଥୀମାନଙ୍କ ମଧ୍ୟରେ ସଂଗଠନ ଆଦିବାସୀମାନଙ୍କର ସେବା ପ୍ରଭୃତି ପ୍ରତି ଗାନ୍ଧୀଙ୍କ ଦୃଷ୍ଟିଭଙ୍ଗୀ ଥିଲା ସ୍ୱତନ୍ତ୍ର । ଏହାକୁ ନେଇ ସୁନ୍ଦର ଓ ଯୁଗୋପଯୋଗୀ ପ୍ରବନ୍ଧଟିଏ ରଚନା କରିଛନ୍ତି, ଯେଉଁଥିରେ ଗାନ୍ଧୀଙ୍କ ଚିନ୍ତାଧାରା ସମ୍ପୂର୍ଣ୍ଣ ପ୍ରତିଫଳିତ ।

'ମହାମାନବ ଗାନ୍ଧିଜୀ' ପ୍ରବନ୍ଧରେ ପଣ୍ଡିତ ବିନାୟକ ମିଶ୍ର ଗାନ୍ଧୀଙ୍କ ଛାତ୍ର ଜୀବନ ସଂପର୍କରେ ଆଲୋକପାତ କରିଛନ୍ତି । ସ୍କୁଲ ଶିକ୍ଷା, କଲେଜ ଶିକ୍ଷା ଓ ପରେ ବିଲାତରେ ଓକିଲାତି ଶିକ୍ଷା କରିବା ସମୟରେ ଯେଉଁ କେତେଗୁଡ଼ିଏ ଘଟଣା ଘଟିଥିଲା, ତାକୁ ବର୍ଣ୍ଣନା କରିଛନ୍ତି । ସେତେବେଳେ ବିଲାତ ଗଲେ ଜାତିରୁ ବାସନ୍ଦ ହେବାକୁ ପଡୁଥିଲା । ମାତ୍ର ଗାନ୍ଧୀ ଖାତିର ନକରି ଗଲେ । ମା'ଙ୍କୁ ରାଜି କରାଇ ସେ ଗଲେ । ମା'ଙ୍କ ପାଖରେ ପ୍ରତିଜ୍ଞା କରିଥିଲେ । 'ମଦ ମାଂସ' ଖାଇବେ ନାହିଁ । ପରେ ମା' ତାଙ୍କୁ ଅନୁମତି ଦେଇଥିଲେ ବିଲାତ ଯିବା ପାଇଁ, ବିଲାତରେ ନିଜ ପ୍ରତିଜ୍ଞାକୁ ଗାନ୍ଧୀ ଭୁଲିନଥିଲେ । ଏ ସଂପର୍କରେ ପ୍ରାବନ୍ଧିକ ଲେଖିଛନ୍ତି, ''ବାପୁଜୀ ବିଲାତରେ ଥିବାବେଳେ ତାଙ୍କର ମା' ପାଖରେ ନଥିଲେ । ସେ ମଦମାଂସ ଖାଇଥିଲେ ମା' ଜାଣିପାରି ନଥାନ୍ତେ । ତାଙ୍କର କିଛିବି କ୍ଷତି ଘଟିନଥାନ୍ତା । କିନ୍ତୁ ସତ୍ୟରକ୍ଷା କରିବା ସାର ଧର୍ମ ବୋଲି ବିଶ୍ୱାସ ଜନ୍ମିଥିବାରୁ ସେ ସତ୍ୟଭ୍ରଷ୍ଟ ହୋଇନଥିଲେ'' । ଏଥିରୁ ଗାନ୍ଧୀଙ୍କର ମହାନ୍‌ତା ସଂପର୍କରେ ଧାରଣା କରିହୁଏ । ପାଠ ପଢିବା ସମୟରେ ସେ ଆଦୌ ସୁଖୀ ଜୀବନଯାପନ କରିବାକୁ ଚାହୁଁନଥିଲେ । ତାଙ୍କ ମନରେ ଥିଲା 'ଦେଶରେ ମାଆ ଭାଇ କଷ୍ଟରେ ଦିନ କାଟୁଥିବାବେଳେ ହୋଟେଲରେ ବା କାହା ଗୃହରେ ରହି ଲଣ୍ଡନ ସହରରେ ଆରାମ ଉପଭୋଗ କରିବା ଶ୍ରେୟସ୍କର ନୁହେଁ' । ଏଣୁ ବିଶ୍ୱର ଆତ୍ମା ସଙ୍ଗେ ନିଜ ଆତ୍ମାକୁ ମିଳାଇବାରେ ସମର୍ଥ ହୋଇ ମହାମାନବରେ ପରିଣତ ହୋଇଥିଲେ । ଅତି ଉପାଦେୟ, ଯୁଗୋପଯୋଗୀ ପ୍ରବନ୍ଧ ମାଧ୍ୟମରେ ସେ ଗାନ୍ଧୀ କଥାମୃତକୁ ଆକଣ୍ଠପାନ କରାଇବାର ବ୍ୟବସ୍ଥା କରିଛନ୍ତି । ଫକୀର ମିଶ୍ରଙ୍କ 'ଡେଲାଙ୍ଗରେ ଗାନ୍ଧୀ' ପ୍ରବନ୍ଧ ମାଧ୍ୟମରେ 'ସେ ବାଡି ଆଉ ନାହିଁ' ପ୍ରସଙ୍ଗର ଅବତାରଣା କରିଛନ୍ତି । ଡେଲାଙ୍ଗରେ ଗାନ୍ଧୀ ୭ଦିନ ଥିଲେ । ସେଠି ବିଭିନ୍ନ କାର୍ଯ୍ୟକ୍ରମ ଆୟୋଜନ କରାଯାଉଥିଲା । ତାଙ୍କୁ ଗୋଟେ ବାଡି (ବାଉଁଶ) ଉପହାର ଦିଆଯାଇଥିଲା । ଯାହାକୁ ସେ ନିଜ ପାଖରେ ରଖୁଥିଲେ ମାତ୍ର ତାକୁ କିଏ ଚୋରାଇ ନେଲା, ଏଥିରେ ଗାନ୍ଧୀ ଦୁଃଖପ୍ରକାଶ କରିଥିଲେ । ଗାନ୍ଧୀ ଓଡ଼ିଶାକୁ କେତେ ଭଲ ପାଉଥିଲେ ଓ ଓଡ଼ିଶାରେ ତାଙ୍କର ଅନେକ କାର୍ଯ୍ୟ କରିଥିଲେ, ତା'ର ବିବରଣୀ ଏ ପ୍ରବନ୍ଧରେ ରହିଛି । ସାରା ଦେଶ ଓ ବିଦେଶରେ ମଧ୍ୟ ଗାନ୍ଧୀ ଅସଂଖ୍ୟ ମଣିଷଙ୍କର ଜୀବନକୁ ପ୍ରଭାବିତ କରିଛନ୍ତି । ଜୀବନର ଧାରା ଓ ଆଦର୍ଶକୁ ବଦଳାଇଛନ୍ତି, ମାନବ ଚିନ୍ତାର ଦିଗ୍‌ଦର୍ଶନ ଦେଇଛନ୍ତି ।

ସେହିପରି ତେଲାଙ୍ଗ ସମ୍ମିଳନୀ ଗାନ୍ଧୀଙ୍କୁ ନେଇ ସ୍ମରଣୀୟ ହୋଇ ରହିଛି । ତାହା ପ୍ରାବନ୍ଧିକଙ୍କ ରଚନାରେ ବଳିଷ୍ଠଭାବେ ପ୍ରତିଫଳିତ ।

ନିତ୍ୟାନନ୍ଦ ମହାପାତ୍ରଙ୍କ 'କାଳରଡି'ରେ କଥା କୁହ ! କଥାକୁହ ମାଧ୍ୟମରେ ଗାନ୍ଧୀଙ୍କ ଦେହାନ୍ତ ସଂପର୍କରେ ସୂଚନା ରହିଛି । ବିରଳା ଭବନରେ ଗାନ୍ଧୀଙ୍କୁ ଯେପରି ଗୁଳିକରି ହତ୍ୟା କରାଗଲା, ସେଥିପାଇଁ ସମଗ୍ର ପୃଥିବୀ ସ୍ତବ୍ଧ ଚକିତ ହେଲା ସେ କଥାର ବର୍ଣ୍ଣନା, ସଙ୍ଗୀତ ଓ ଗଦ୍ୟ ମାଧ୍ୟମରେ କରିଛନ୍ତି । ବାପୁଜୀ କିପରି ପ୍ରତ୍ୟେକଟି ଭାରତୀୟଙ୍କ ହୃଦୟରେ ବିରାଜମାନ ଥିଲେ, ଏ ପ୍ରବନ୍ଧ ତା'ର ଉଜ୍ଜ୍ୱଳ ନମୁନା । 'ଅହିଂସାର ଅର୍ଥନୀତି' ପ୍ରବନ୍ଧଟି କାଶୀନାଥ ଷଡ଼ଙ୍ଗୀଙ୍କ ଦ୍ୱାରା ରଚିତ । ଗାନ୍ଧୀ, ଅର୍ଥନୀତିର ସ୍ୱରୂପ ଥିଲେ, ଏହା ସୂଚନା ଦେବା ଏ ପ୍ରବନ୍ଧର ମୂଳ ଲକ୍ଷ୍ୟ । ଗାନ୍ଧୀ ସତ୍ୟ ଓ ଅହିଂସାର ମୂର୍ତ୍ତିମାନ ପ୍ରତୀକ । ମାତ୍ର ଅର୍ଥନୀତି ସତ୍ୟ ଓ ଅହିଂସାର ସୁଦୃଢ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ଏହାକୁ ସେ ଉପସ୍ଥାପନ କରିଛନ୍ତି । ଗାନ୍ଧୀଙ୍କ ଜୀବନରେ ହସର ଭୂମିକା ଥିଲା ଅନନ୍ୟ, ଏକଥା ବୋଧହୁଏ ଅନେକ ଜାଣି ନଥିବେ । ସମସ୍ତେ ହସ ଉପରେ ଗୁରୁତ୍ୱ ଦେବା ଉଚିତ । 'ମହାତ୍ମା ଗାନ୍ଧୀ' ପ୍ରବନ୍ଧରେ ଗାନ୍ଧୀଙ୍କ ହାସ୍ୟରସ ଉପରେ ଆଲୋକପାତ କରି ପ୍ରବନ୍ଧ ରଚନା କରିଛନ୍ତି, ସୂର୍ଯକାନ୍ତ ଦାସ । ସେ ଲେଖିଛନ୍ତି, 'କୌତୁକ କରିବା, ରସିକତା କରିବା, ହାସ୍ୟରସ ସୃଷ୍ଟି କରିବା ଥିଲା ଗାନ୍ଧୀଙ୍କର ଏକାନ୍ତ ସ୍ୱଭାବ ସୁଲଭ ଗୁଣ । ଗାନ୍ଧୀ ଯେପରି ପରିହାସ ପ୍ରିୟ ଥିଲେ, ତାହା ଅନନ୍ୟ ସାଧାରଣ । ଗାନ୍ଧୀ ଅନେକ ସମୟରେ କହୁଥିଲେ, 'ଯଦି ହାସ୍ୟରସ ଉପଭୋଗ କରିବା ଗୁଣ ତାଙ୍କଠାରେ ନଥାନ୍ତା, ଭଗବାନ ଯଦି ତାଙ୍କୁ ସେଥିରୁ ବଞ୍ଚିତ କରିଥାନ୍ତେ, ତେବେ ହୁଏ ତ ସେ ପାଗଳ ହୋଇଯାଇଥାନ୍ତେ କିମ୍ବା ଆତ୍ମହତ୍ୟା କରିଥାନ୍ତେ ।' ସାନବଡ଼ ନିର୍ବିଶେଷରେ ଗାନ୍ଧୀ ସମସ୍ତଙ୍କ ସହିତ ଆଳାପ ଆଲୋଚନା କାଳରେ ହାସ୍ୟରସର ଅବତାରଣା କରୁଥିଲେ, ସେଥିରେ ସେ ଥିଲେ ସିଦ୍ଧହସ୍ତ । ଏଥିରୁ ଅନୁମିତ ହୁଏ ଗାନ୍ଧୀ କିପରି ମହାନୁଭବ ଥିଲେ । ତାଙ୍କ ବ୍ୟକ୍ତିତ୍ୱ ଆକଳନର ଏ ଅନ୍ୟ ଏକ ଦିଗ । ଏତଦ୍‌ଭିନ୍ନ ଗାନ୍ଧୀଙ୍କ ଜୀବନର ବିଭିନ୍ନ ଦିଗକୁ ନେଇ ଉଚ୍ଚକୋଟୀର ପ୍ରବନ୍ଧମାନ (ଗ୍ରନ୍ଥ) ରଚନା କରାଯାଇଛି । ଗୋଲୋକ ବିହାରୀ ଧଳଙ୍କ 'ଗାନ୍ଧିଜୀ ଓ ଭାଷା ସମସ୍ୟା', ବଳରାମ ମହାନ୍ତିଙ୍କ 'ଗାନ୍ଧୀ ବିଚାର ଗ୍ରନ୍ଥମାଳା', ଅନାଦି ନାୟକଙ୍କ 'ଗାନ୍ଧିଜୀ', ନାରାୟଣ ବୀରବର ସାମନ୍ତଙ୍କ 'ମହାନୁଭୂତିରେ ମହାତ୍ମା', ଶରତ କୁମାର ମହାନ୍ତିଙ୍କ 'ଗାନ୍ଧୀ ମଣିଷ (ଗାନ୍ଧୀ ପରବାର)', ପଦ୍ମ ଚରଣ ନାୟକଙ୍କ 'ଗାନ୍ଧିଜୀ ଓ ଓଡ଼ିଶା', ଅନନ୍ତ ଚରଣ ସାହୁଙ୍କ 'ଜାତିରଜନକ ମହାତ୍ମା', ସୌରୀବନ୍ଧୁ କରଙ୍କ 'ଅଦ୍ୱିତୀୟ ଗାନ୍ଧୀ: ଅଲୌକିକ ସଂଗ୍ରାମ' ଭଳି ୯୦ ପୃଷ୍ଠା ସମ୍ବଳିତ ଦୀର୍ଘ ପ୍ରବନ୍ଧ ମଧ୍ୟ ରଚିତ ହୋଇଛି ।

ମୋଟାମୋଟି ଭାବେ ଗାନ୍ଧୀଙ୍କୁ ନେଇ ଓଡ଼ିଆ ସାହିତ୍ୟରେ ବିବିଧ ଉପାଦେୟ ଲେଖାମାନ ପ୍ରକାଶିତ । ଉପରୋକ୍ତ କେତୋଟି ଲେଖାକୁ ଛାଡ଼ିଦେଲେ ବିଭିନ୍ନ ପତ୍ରପତ୍ରିକା, ସମ୍ବାଦପତ୍ର, ସଂପାନ ଆଦିରେ ଗାନ୍ଧୀଙ୍କ ଜୀବନର ବହୁ ମୁଖ୍ୟ ଦିଗ ପ୍ରତି ଆଲୋକପାତ କରାଯାଇ ରଚନାମାନ ପ୍ରକାଶ ପାଇଛି । ଏସବୁ ସତ୍ତ୍ୱେ ଗାନ୍ଧୀଙ୍କ ଭଳି ମହାମାନବଙ୍କୁ ଆକଳନ କରିବା ଧୃଷ୍ଟତା ମାତ୍ର । ଓଡ଼ିଆରେ ପ୍ରାବନ୍ଧିକମାନେ ଗାନ୍ଧୀଙ୍କ ସଂପର୍କରେ ଆଲୋଚନା କରି ଗାନ୍ଧୀଙ୍କୁ ପରବର୍ତ୍ତୀ ପିଢିମାନଙ୍କୁ ସୂଚେଇ ଦେବା ପାଇଁ ଚେଷ୍ଟା କରିଛନ୍ତି ।

**ସହାୟକ ପୁସ୍ତକ -** ନିଶାନ୍ତ (ଗାନ୍ଧୀଗ୍ରନ୍ଥ), ସଂପାଦନା- ଡକ୍ଟର ସଂଗ୍ରାମ ଜେନା ।

ଅଧ୍ୟାପକ, ଓଡ଼ିଆ ବିଭାଗ
ଉଦୟନାଥ ସ୍ୱୟଂଶାସିତ ମହାବିଦ୍ୟାଳୟ
ଅଡ଼ଶପୁର, କଟକ, ପିନ୍-୭୫୪୦୧୧



# ମାଘ ମାସର ମାହାତ୍ମ୍ୟ

ଜୟଶ୍ରୀ ପଟ୍ଟନାୟକ

ଜ୍ୟୋତିଷ ଶାସ୍ତ୍ର ଅନୁଯାୟୀ ମାଘ ମାସରେ ମଘା ନକ୍ଷତ୍ର ଯୁକ୍ତ ପୂର୍ଣ୍ଣିମା ପଡୁଥିବାରୁ ମାସର ନାମ ମାଘ ହୋଇଛି । କୁହାଯାଏ ଯେ, ଏହି ମାସରେ ପବିତ୍ର ନଦୀରେ ସ୍ନାନ କରିବା ଦ୍ୱାରା ପାପମୁକ୍ତ ହୋଇ ସ୍ୱର୍ଗଲୋକକୁ ଯାଆନ୍ତି । ପଦ୍ମପୁରାଣର ଉତ୍ତରାଖଣ୍ଡରେ ମାଘମାସର ମାହାତ୍ମ୍ୟ ବର୍ଣ୍ଣନା କରାଯାଇଛି । ମାଘ ପୂର୍ଣ୍ଣିମାରେ ସ୍ୱୟଂ ବିଷ୍ଣୁ ଗଙ୍ଗାଜଳରେ ବାସ କରନ୍ତି, ତେଣୁ ଏହା ପୁଣ୍ୟର ସମୟ । ଗଙ୍ଗାଜଳ ସ୍ପର୍ଶ ମାତ୍ରକେ ପାପ ଖଣ୍ଡନ ହୁଏ ବୋଲି ବିଶ୍ୱାସ ରହିଛି । ଏଣୁ ସ୍ୱର୍ଗଲାଭ, ପାପମୁକ୍ତି ଏବଂ ଭଗବାନ ବାସୁଦେବଙ୍କ କୃପା ଲାଭ କରିବାକୁ ଚାହିଁଥିବା ମନୁଷ୍ୟ ମାଘସ୍ନାନ କରିବା ଉଚିତ । ଏହି ସମୟରେ ବିଭିନ୍ନ ଆଡୁ ଆସିଥିବା ସାଧୁସନ୍ଥମାନଙ୍କର ମେଳା ଲାଗିଥାଏ । ଏହା ଏକ ବାର୍ଷିକ ପର୍ବ । ନଦୀକୂଳରେ ହିନ୍ଦୁ ମନ୍ଦିରମାନଙ୍କ ପବିତ୍ର ସ୍ଥାନରେ ଅନୁଷ୍ଠିତ ହୁଏ । ମାଘ ମାସରେ ଭଗବାନ ମାଧବଙ୍କୁ ପୂଜାକରି ନଦୀରେ ସ୍ନାନ କରିବା ଦ୍ୱାରା ସ୍ୱର୍ଗଲୋକ ପ୍ରାପ୍ତ ହୋଇଥାଏ । ଅନନ୍ତକାଳ ସ୍ୱର୍ଗଲୋକରେ ରହିବାକୁ ଇଚ୍ଛା କରୁଥିବା ବ୍ୟକ୍ତି ମାଘମାସରେ ସୂର୍ଯ୍ୟ ମକର ରାଶିରେ ଥିବା ସମୟରେ ପବିତ୍ର ନଦୀରେ ପ୍ରାତଃ ସ୍ନାନ କରିବା ବିଧେୟ । ମାଘ ପୂର୍ଣ୍ଣିମାର ପବିତ୍ର ତିଥିରେ କୁମ୍ଭମେଳା ମଧ୍ୟ ଅନୁଷ୍ଠିତ ହୁଏ । ଏହି ମେଳା ୧୨ ବର୍ଷରେ ଥରେ ଅନୁଷ୍ଠିତ ହୋଇଥାଏ । ଜ୍ୟୋତିଷ ଶାସ୍ତ୍ର ଅନୁଯାୟୀ ଯେତେବେଳେ ସୂର୍ଯ୍ୟ, ଚନ୍ଦ୍ର ଓ ବୃହସ୍ପତିଙ୍କର ପବିତ୍ର ଅବସ୍ଥାନ ହୁଏ ସେତେବେଳେ କୁମ୍ଭମେଳା ଅନୁଷ୍ଠିତ ହୁଏ । ଏହି କୁମ୍ଭମେଳା ଆଲାହାବାଦ, ଦକ୍ଷିଣରେ ମହାମହିମ ନଦୀ ନିକଟସ୍ଥ କୁମ୍ଭକୋଣମ, ପୂର୍ବରେ ପଶ୍ଚିମବଙ୍ଗର ସାଗର ଦ୍ୱୀପରେ ଏବଂ କୋଣାର୍କ ନିକଟସ୍ଥ ଚନ୍ଦ୍ରଭାଗାରେ ଅନୁଷ୍ଠିତ ହୁଏ । ଏହିଦିନ ଚନ୍ଦ୍ରମାର ପ୍ରଭାବ ବୃକ୍ଷ, ନଦୀ, ଜଳାଶୟ ଏବଂ ବନସ୍ପତିରେ ପଡି ଆରୋଗ୍ୟଦାୟକ ଗୁଣ ଉତ୍ପନ୍ନ ହୁଏ । ଧାର୍ମିକ ମତାନୁସାରେ ମାଘ ପୂର୍ଣ୍ଣିମାରେ ଦାନଧର୍ମ ସ୍ନାନ କରିବା ଦ୍ୱାରା ସୂର୍ଯ୍ୟ ଓ ଚନ୍ଦ୍ର ଦୋଷରୁ ମୁକ୍ତି ମିଳେ ।



ମକର ରାଶିରେ ସୂର୍ଯ୍ୟଙ୍କର ପ୍ରବେଶ ଏବଂ କର୍କଟରେ ଚନ୍ଦ୍ରଙ୍କର ପ୍ରବେଶ ସମୟକୁ ମାଘ ପୂର୍ଣ୍ଣିମାର ପୂର୍ଣ୍ଣଯୋଗ ହୁଏ । ଏହିଦିନ ସବୁ ତୀର୍ଥର ଦେବତାମାନେ ପ୍ରୟାଗ ତଥା ଅନ୍ୟ ତୀର୍ଥମାନଙ୍କରେ ପ୍ରତୀୟମାନ ହୁଅନ୍ତି । ତେଣୁ ଆଲାହାବାଦର ପ୍ରୟାଗ ସଙ୍ଗମରେ ମାଘପୂର୍ଣ୍ଣିମା ଦିନ ବୁଡ଼ ପକାଇବା ଦ୍ୱାରା ପୁଣ୍ୟ ଅର୍ଜନ ହୁଏ ବୋଲି କଥିତ ଅଛି ।

ମାଘମାସରେ ପ୍ରତ୍ୟେକ ମନୁଷ୍ୟ ଗୋଟିଏ ଥର ପବିତ୍ର ନଦୀରେ ସ୍ନାନ କରିବା ଦ୍ୱାରା ପାପ କ୍ଷୟ ହୋଇ ପୁଣ୍ୟ ଅର୍ଜନ ହୁଏ । କୁହାଯାଏ ଯେ, ଏହି ମାସରେ ନଦୀମାନଙ୍କରେ ସ୍ନାନ କରିବା ଦ୍ୱାରା ଶରୀରକୁ ବିଭିନ୍ନ ରୋଗ ଦାଉରୁ ବଂଚେଇ ହୁଏ । ସୂର୍ଯ୍ୟପୂଜା ଦ୍ୱାରା ଅନେକ ସମସ୍ୟାରୁ ମୁକ୍ତି ମିଳେ । ଏହା ଅତୀତର ଭୁଲପାଇଁ ପ୍ରାୟଶ୍ଚିତ ବା ଅନୁତାପ କରିବାର ଏକ ପ୍ରକୃଷ୍ଟ ମାଧ୍ୟମ ଏବଂ ପୁନର୍ଜନ୍ମରୁ ମୁକ୍ତି ମିଳେ ବୋଲି ବିଶ୍ୱାସ ରହିଛି । ମାଘରେ ଶୀତଋତୁ ସରିଥାଏ ଏବଂ ବସନ୍ତ ଋତୁର ପ୍ରାରମ୍ଭ ହୋଇଥାଏ । ଋତୁ ପରିବର୍ତ୍ତନ ସ୍ୱାସ୍ଥ୍ୟ ପ୍ରତି ଅନୁକୂଳ ହୋଇଥାଏ । ସକାଳୁ ପ୍ରତିଦିନ ସ୍ନାନଦ୍ୱାରା ଶରୀର ସୁସ୍ଥ ରହେ । ବ୍ରହ୍ମବୈବର୍ତ୍ତ ପୁରାଣରେ ଉଲ୍ଲେଖ ରହିଛି କି ମାଘ ପୂର୍ଣ୍ଣିମାରେ ଭଗବାନ ବିଷ୍ଣୁ ଗଙ୍ଗାଜଳରେ ନିବାସ କରନ୍ତି । ତେଣୁ ଏହି ସମୟରେ ଗଙ୍ଗାଜଳ ସ୍ପର୍ଶ ମାତ୍ରକେ ସ୍ୱର୍ଗପ୍ରାପ୍ତି ହୁଏ । ପଦ୍ମ ପୁରାଣ ଅନୁସାରେ ଭଗବାନ ବିଷ୍ଣୁ ବ୍ରତ, ଉପବାସ, ଦାନ ଧର୍ମ ଦ୍ୱାରା ଯେତିକି ପ୍ରସନ୍ନ ହୁଅନ୍ତିନି ସେତିକି ପ୍ରସନ୍ନ ହୁଅନ୍ତି ମାଘସ୍ନାନ କରିବା ଦ୍ୱାରା ।

ମହାଭାରତରେ କୁହାଯାଇଛି ଯେ ଏହିଦିନ ଅନେକ ତୀର୍ଥର ସମାଗମ ହୁଏ । ଏହା ଏକ ମହାନ୍ ସାଂସ୍କୃତିକ ମେଳା । ମାଘମେଳା ହେଉଛି ନଦୀପର୍ବର ଏକ ଅଂଶ । ବୃହସ୍ପତି ବର୍ଷସାରା ବିଭିନ୍ନ ରାଶିକୁ ଚଳନ କରେ । ନଦୀଗୁଡିକ ବିଭିନ୍ନ ସମୟରେ ଭାରତର ପ୍ରମୁଖ ନଦୀ କୂଳରେ ଘାଟ ଏବଂ ମନ୍ଦିରକୁ ଘୂର୍ଣ୍ଣନ କରିଥାନ୍ତି । ନଦୀକୁ ତୀର୍ଥସ୍ଥଳୀ ବୋଲି ମଧ୍ୟ ବିବେଚନା କରାଯାଏ । ତେଣୁ ବାର୍ଷିକ ମାଘ ମେଳା ବା ସାଂସ୍କୃତିକ ମେଳାରେ ନାରାୟଣଙ୍କୁ ପ୍ରାପ୍ତି ପାଇଁ ମାଘ ପୂର୍ଣ୍ଣିମାରେ ନଦୀର ସଙ୍ଗମ ସ୍ଥଳୀରେ ସ୍ନାନକୁ ପୁଣ୍ୟରେ ଯୋଡାଯାଇଛି । ଭୃଗୁ ଋଷିଙ୍କ କଥାନୁସାରେ ବ୍ୟାଘ୍ରମୁଖୀ ବିଦ୍ୟାଧର ଓ ଗୌତମ ଋଷିଙ୍କ ଦ୍ୱାରା ଅଭିଶପ୍ତ ଇନ୍ଦ୍ର ମାଘ ସ୍ନାନ ଦ୍ୱାରା ଶାପମୁକ୍ତ ହୋଇଥିଲେ ।

ଏହିଦିନ ଯଜ୍ଞ ତପ ଓ ଦାନର ବିଶେଷ ମହତ୍ତ୍ୱ ରହିଛି । । ମାଘ ପୂର୍ଣ୍ଣିମାର ସକାଳେ ସୂର୍ଯୋଦୟ ପୂର୍ବରୁ ପବିତ୍ର ନଦୀରେ ସ୍ନାନପୂର୍ବକ ଭଗବାନ ମଧୁସୂଦନଙ୍କ ପୂଜା କରିବା ବିଧେୟ । ଏହି ମାସରେ ପୂର୍ବପୁରୁଷଙ୍କୁ ତିଳଦାନ କରିବାର ବିଶେଷ ମହତ୍ତ୍ୱ ରହିଛି । ମାଘ ମାସରେ କଳା ରାଶିରେ ଯଜ୍ଞ ଓ ପିତୃ ତର୍ପଣ କରିବା ଦ୍ୱାରା ପାପକ୍ଷୟ ହୁଏ ବୋଲି ବିଶ୍ୱାସ ରହିଛି ।

ମତ୍ସ୍ୟପୁରାଣ ଅନୁସାରେ ମାଘମାସ ପୂର୍ଣ୍ଣିମା ଦିନ ଯେଉଁ ବ୍ୟକ୍ତି ବ୍ରାହ୍ମଣଙ୍କୁ ଦାନ କରେ, ତା'ର ବ୍ରହ୍ମଲୋକ ପ୍ରାପ୍ତି ହୁଏ । ଏହିଦିନ ଜପ, ତପ, ଦାନ ଧର୍ମ ସହିତ ଗରିବଙ୍କୁ ଭୋଜନ ଶୀତବସ୍ତ୍ର ଆଦି ଦାନ କରିବା ଦ୍ୱାରା ପୁଣ୍ୟ ହୋଇଥାଏ । ଏହା କରିବା ଦ୍ୱାରା ଦେବୀ ଦେବତା ମାନେ ଆଶୀର୍ବାଦ ପ୍ରଦାନ କରନ୍ତି । ମାଘ ମାସରେ ଗଙ୍ଗା ସ୍ନାନର ବଡ଼ ମହତ୍ତ୍ୱ ରହିଛି । ହରିଦ୍ୱାରରେ ଅନୁଷ୍ଠିତ ହୁଏ ୧୨ ବର୍ଷରେ ଥରେ କୁମ୍ଭମେଳା । ଏହିଦିନ ସ୍ନାନକରି ଗଙ୍ଗାଜଳ ମିଶାଇ ଗଙ୍ଗାମାତା ଧାନ କରିବା ଏବଂ ଦାନ ଧର୍ମ କରିବା ଦ୍ୱାରା ପୁଣ୍ୟ ମିଳିଥାଏ ।

ମାଘମାସରେ ଅନୁଷ୍ଠିତ ହୁଏ ବିଭିନ୍ନ ପ୍ରକାର ପର୍ବ ଯଥା : ସଂକଷ୍ଟୀ ଚତୁର୍ଥୀ – ସନ୍ତାନ ପ୍ରାପ୍ତି ଆଶାରେ ଏବଂ ସନ୍ତାନମାନଙ୍କ ମଙ୍ଗଳ ସକାଶେ ଏହା କରାଯାଏ ।

ମାଘ କୃଷ୍ଣ ବା ଷଟ୍‌ତିଳା ଏକାଦଶୀ – ଭଗବାନ ବିଷ୍ଣୁ ଏକାଦଶୀ ତିଥିର ଦେବତା । ବିଷ୍ଣୁଙ୍କ ଆଶୀର୍ବାଦ ପ୍ରାପ୍ତି ନିମନ୍ତେ ପାଳନ କରାଯାଏ ଏକାଦଶୀ ବ୍ରତ । ଏହି ଏକାଦଶୀରେ ରାଶିର ପ୍ରୟୋଗ କରାଯାଏ । ଯଜ୍ଞ, ସ୍ନାନ, ମିଷ୍ଟାନ୍ନ, ପିତୃ ତର୍ପଣରେ, ସ୍ୱାସ୍ଥ୍ୟ ଓ ସମୃଦ୍ଧି ପାଇଁ ଏହିଦିନ କଟକ, ଯାଜପୁର, କେନ୍ଦ୍ରାପଡ଼ା ଜିଲ୍ଲାର କେନ୍ଦ୍ରସ୍ଥଳୀ ସ୍ଥିତ ଓଳାସୁଣୀ ପର୍ବତ ଗୁମ୍ଫାରେ ପ୍ରସିଦ୍ଧ ଓଳାସୁଣୀ ଯାତ୍ରା ଆରମ୍ଭ ହୁଏ ।

ମୌନୀ ଅମାବାସ୍ୟା- ମୌନ ରହି ପାପ ନାଶ ଏବଂ ଆତ୍ମଶୁଦ୍ଧି ପାଇଁ ଏହି ସାଧନା କରାଯାଏ । ଏହିଦିନ ପ୍ରୟାଗରେ ବହୁତ ଭିଡ ହୋଇଥାଏ । ଗଙ୍ଗା ଯମୁନା ସରସ୍ୱତୀର ସଙ୍ଗମସ୍ଥଳୀରେ ମଧ୍ୟ ଶ୍ରଦ୍ଧାଳୁମାନେ ସ୍ନାନ କରିଥାନ୍ତି ।

ବସନ୍ତ ପଂଚମୀ- ମାଘ ଶୁକ୍ଳ ପଂଚମୀରେ ବିଦ୍ୟା ବୁଦ୍ଧି ଜ୍ଞାନ ଓ ବାଣୀର ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀଙ୍କ ପୂଜା କରାଯାଏ । ଋକ୍ ବେଦରେ ତାଙ୍କର ମହିମା ଗୁଣ ଗାନ କରାଯାଇଛି । ଏହିଦିନ ତାଙ୍କର ଆବିର୍ଭାବ ଦିବସ ।

ଶୁକ୍ଳପକ୍ଷରେ ପଡ଼େ ମାଘ ସପ୍ତମୀ, ରଥ ସପ୍ତମୀ ବା ତିଳ ସପ୍ତମୀ – ଏହାର ମାହାତ୍ମ୍ୟ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ବୁଝାଇଥିଲେ ଯେ ଏହିଦିନ ସ୍ନାନ, ଦାନ, ପିତୃ ତର୍ପଣ ଦ୍ୱାରା, ସୂର୍ଯ୍ୟପୂଜା କରିବା ଦ୍ୱାରା ଏବଂ ବସ୍ତ୍ରଦାନ, ଭୋଜନ ଦାନ କରିବା ଦ୍ୱାରା ବୈକୁଣ୍ଠ ପ୍ରାପ୍ତି ହୁଏ । ଏହି ବ୍ରତ କରିଲେ ବର୍ଷସାରା ରବିବାର ବ୍ରତର ପୁଣ୍ୟଫଳ ମିଳେ ।

ଓଡ଼ିଶା ପ୍ରସିଦ୍ଧ ଚନ୍ଦ୍ରଭାଗା ମେଳା- ଏହା ମାଘମାସର ଶୁକ୍ଳପକ୍ଷ ସପ୍ତମୀ ଦିନରେ ପଡ଼େ । ତେଣୁ ଏହାକୁ ମାଘ ସପ୍ତମୀ କୁହାଯାଏ । ଏହିଦିନ ହଜାର ହଜାର ଲୋକ କୋଣାର୍କରେ ଏକତ୍ରିତ ହୁଅନ୍ତି । କୋଣାର୍କରେ ପ୍ରବାହିତ ଚନ୍ଦ୍ରଭାଗାରେ ତୀର୍ଥଯାତ୍ରୀମାନେ ବୁଡ଼ ପକାନ୍ତି । କୋଣାର୍କଠାରୁ ୩ କି.ମି ଦୂରରେ ଅବସ୍ଥିତ ସମୁଦ୍ରରେ ମଧ୍ୟ ପବିତ୍ର ସ୍ନାନ ପରେ ସେମାନେ ବାଳସୂର୍ଯ୍ୟଙ୍କୁ ସ୍ୱାଗତ ଜଣାଇ, ନୈବେଦ୍ୟ ଦେଇ କୋଣାର୍କ ମନ୍ଦିରକୁ ଯାଆନ୍ତି । ସେଠାରେ ସକଳ ଶକ୍ତିର ଆଧାର ସୂର୍ଯ୍ୟ ଭଗବାନଙ୍କୁ ପୂଜା କରନ୍ତି । କିମ୍ବଦନ୍ତୀ ଅନୁସାରେ ଭଗବାନ କୃଷ୍ଣ ତାଙ୍କ ପୁତ୍ର ଶାମ୍ବଙ୍କୁ ଦ୍ୱାର ଦେଶରେ ଜଗାଇ ସତ୍ୟଭାମାଙ୍କ ସହିତ ପ୍ରେମାଳାପରେ ମଜ୍ଜିଥିଲେ । ସେତେବେଳେ ଦୁର୍ବାସା ଋଷି କୃଷ୍ଣଙ୍କୁ ସାକ୍ଷାତ୍ କରିବାର ଅଭିପ୍ରାୟ ରଖିଲେ ଏବଂ ଦୁର୍ବାସାଙ୍କ କ୍ରୋଧରୁ ମୁକ୍ତି ପାଇବା ପାଇଁ ଶାମ୍ବ କୃଷ୍ଣଙ୍କର କକ୍ଷକୁ ପ୍ରବେଶ କଲେ । ସେତେବେଳେ କୃଷ୍ଣ କିଛି ନ ବୁଝି କୋଧିତ ହେଲେ ଏବଂ ଶାମ୍ବ ନିଜ ପୁତ୍ର ହୋଇଥିଲେ ମଧ୍ୟ ତାଙ୍କୁ ଅଭିଶାପ ଦେଇଥିଲେ କୁଷ୍ଠ ପରି ଦୁରାରୋଗ୍ୟ ବ୍ୟାଧିରେ ପୀଡ଼ିତ ହେବାପାଇଁ । ଶାମ୍ବଙ୍କର ଏ ଅନିଚ୍ଛାକୃତ ଅପରାଧ ପାଇଁ ପରବର୍ତ୍ତୀ ସମୟରେ କୃଷ୍ଣ ଅନୁତାପ କରିଥିଲେ । ଏହାର ବିହିତ ପ୍ରତିକାର ନିମନ୍ତେ ନାରଦ ଶାମ୍ବଙ୍କୁ ଚନ୍ଦ୍ରଭାଗା କୂଳରେ ୧୨ ବର୍ଷ ତପସ୍ୟାକରି ସୂର୍ଯ୍ୟ ଉପାସନା କରି ଆରୋଗ୍ୟ ଲାଭ କରିବାକୁ ପରାମର୍ଶ ଦେଇଥିଲେ । ଶାମ୍ବ ତଦନୁରୂପ କଥା ଅନୁସରଣ କରି ସୂର୍ଯ୍ୟ ଉପାସନା କରି ଆରୋଗ୍ୟ ଲାଭ କରିଥିଲେ । ସେ ଯେଉଁ ସ୍ଥାନରେ ସୂର୍ଯ୍ୟପୂଜା କରିଥିଲେ ତାହା ଏକ ପବିତ୍ର ସ୍ଥାନ ହୋଇଗଲା । ସେହି ବିଶ୍ୱାସ ଅନୁଯାୟୀ ଲୋକମାନେ ଚର୍ମ ରୋଗରୁ ମୁକ୍ତି ପାଇବା ଆଶା ରଖି ସେଠାକୁ ଯାଆନ୍ତି ଏବଂ ସେଠାରେ ସୂର୍ଯ୍ୟଙ୍କର ଉପାସନା କରନ୍ତି । କୋଣାର୍କ ବିଶ୍ୱର ଏକ ଐତିହ୍ୟସ୍ଥଳୀ ହୋଇଥିବାରୁ ବହୁ ସଂଖ୍ୟକ ତୀର୍ଥଯାତ୍ରୀ ଚନ୍ଦ୍ରଭାଗାରେ ବୁଡ଼ ପକାଇବାକୁ ଆସିଥାନ୍ତି ଏହି ଚନ୍ଦ୍ରଭାଗା ମେଳାକୁ ।

ଖଣ୍ଡଗିରି ମେଳା- ଖଣ୍ଡଗିରି ମେଳା ମଧ୍ୟ ଅନୁଷ୍ଠିତ ହୁଏ ମାଘସପ୍ତମୀଠାରୁ । ଖଣ୍ଡଗିରି ଉଦୟଗିରି ପାଦଦେଶରେ ରାଜ୍ୟ ବାହାରୁ ସାଧୁମାନେ ଆସନ୍ତି । ଖଣ୍ଡଗିରି ଗୁମ୍ଫା ଅଭ୍ୟନ୍ତରରେ ଥିବା ଗୁପ୍ତଗଙ୍ଗାରୁ ଜଳ ଆଣି କୁମ୍ଭ ସ୍ଥାପନା କରି ଏଠାରେ ଆୟୋଜନ ହୁଏ ଖଣ୍ଡଗିରି ମେଳାର ଯଜ୍ଞ । ଏଠାରେ ୯ ଦିନ ବ୍ୟାପୀ ଚାଲେ ମେଳା ଏବଂ ଏହି ମେଳାକୁ ପରିଦର୍ଶନ କରିବାକୁ ଅନେକ ସ୍ଥାନରୁ ଆସିଥାନ୍ତି ଲୋକମାନେ ।

ମାଘ ମାସରେ ଢେଙ୍କାନାଳର ଯୋରନ୍ଦାଠାରେ ଅନୁଷ୍ଠିତ ହୁଏ ପବିତ୍ର ଯୋରନ୍ଦା ମେଳା । ଏହା ମହିମା ଧର୍ମର ମେଳା । ଜଗତର କଲ୍ୟାଣ ପାଇଁ ମାଘ ମେଳା ଏକ ପ୍ରାର୍ଥନା ଯାହା ପ୍ରେମ ଓ ମାନବିକତାର ସନ୍ଦେଶ ଦିଏ । ମହିମା ଧର୍ମର ପ୍ରତିଷ୍ଠାତା ମହିମା ଗୋସାଇଁଙ୍କ ମାଘ ମେଳା ପୁନେଇଁଠାରୁ ୩ଦିନ ବ୍ୟାପୀ ଅନୁଷ୍ଠିତ ହୁଏ । ଯୋରନ୍ଦାରେ ଅଖଣ୍ଡ ଯଜ୍ଞ ହୁଏ । ହଜାର ହଜାର ଶ୍ରଦ୍ଧାଳୁ ଆସନ୍ତି ଏହି ତିନିଦିନ ମେଳାରେ ସାମିଲ ହେବାପାଇଁ । ମାଟିରୁ ଅକାଶ ସଂଚରି ଯାଏ ବିଶ୍ୱକଲ୍ୟାଣର ଗୋଟିଏ ଭାବ, ଗୋଟିଏ ମନ ଓ ପ୍ରାଣ ।

ମାଘ ଶୁକ୍ଳପକ୍ଷ ଅଷ୍ଟମୀ ଭୀଷ୍ମାଷ୍ଟମୀ ନାମରେ ପ୍ରସିଦ୍ଧ । ଏହି ତିଥିରେ ପିତାମହ ଭୀଷ୍ମ ସୂର୍ଯ୍ୟଙ୍କର ଉତ୍ତରାୟଣ ହେବାପରେ ନିଜର ନଶ୍ୱର ଶରୀର ତ୍ୟାଗ କରିଥିଲେ । ତାଙ୍କର ପବିତ୍ର ସ୍ମୃତିରେ ଏହିପର୍ବ ପାଳନ କରାଯାଏ ବୋଲି କୁହାଯାଏ ।

ମାଘ ପୂର୍ଣ୍ଣିମା–ଯେଉଁ ଶ୍ରଦ୍ଧାଳୁ ପ୍ରୟାଗରେ ମାଘରେ ଏକ ମାସ ଧରି କଳ୍ପବାସ କରନ୍ତି ମାଘପୂର୍ଣ୍ଣିମା ଦିନ ସେହି କଳ୍ପବାସର ସମାପନ ହୁଏ । ଏହିଦିନ ସତ୍ୟନାରାୟଣ କଥା ଶୁଣିବା ସହ କଳ୍ପବାସଧାରୀ ଗଙ୍ଗାମାତାଙ୍କ ପୂଜାର୍ଚ୍ଚନା କରି ସାଧୁସନ୍ଥମାନଙ୍କୁ ଦାନ ଧର୍ମ କଲେ ପୁଣ୍ୟ ମିଳେ । ମାଘ ମାସରେ ସ୍ନାନ, ଦାନ, ଧର୍ମ କର୍ମର ବିଶେଷ ମହତ୍ୱ ରହିଛି । ମାଘ ପୂର୍ଣ୍ଣିମା ଦିନ ଗଙ୍ଗାସ୍ନାନ କରିବା ଦ୍ୱାରା ସବୁ ପାପ ଧୋଇ ହୋଇଯାଏ । ମାଘ ପୂର୍ଣ୍ଣିମାରେ ଆଲାହାବାଦ ସଙ୍ଗମରେ ଆୟୋଜିତ ହୁଏ ଗଙ୍ଗାସ୍ନାନ । ପୂର୍ବ ପୁରୁଷଙ୍କୁ ତିଳ ଅର୍ପଣ କରାଯାଏ । ଏହି ଦିନ ପୁଣ୍ୟ ତୀର୍ଥମାନଙ୍କରେ ଶ୍ରଦ୍ଧାଳୁମାନଙ୍କର ଜନ ସମାଗମ ହୁଏ । ପ୍ରୟାଗର ସଙ୍ଗମଠାରେ, କାବେରୀ, କୃଷ୍ଣା, ଚନ୍ଦ୍ରଭାଗା ନଦୀକୂଳରେ ମଧ୍ୟ ବୁଡ଼ ପକାଯାଏ, ପୂଜା କରାଯାଏ । ଏହିଦିନ ଶୈବମାନେ ଭଗବାନ ଶିବଙ୍କର ପୂଜା କରନ୍ତି । ଶିବଙ୍କୁ ବିଶେଷ ମନ୍ତ୍ରରେ ଆରାଧନା କରି ସ୍ନାନ କରିଥା'ନ୍ତି । ଧର୍ମାନୁସାରେ ୨୭ ନକ୍ଷତ୍ରରୁ ଗୋଟିଏ ନକ୍ଷତ୍ର ହେଉଛି ମଘା । ତହିଁରୁ ମାଘ ପୂର୍ଣ୍ଣିମାର ନାମକରଣ ହୋଇଛି । ମାଘ ପୂର୍ଣ୍ଣିମା ଦିନ ଭୋରୁ ସ୍ନାନ ପରେ ଭଗବାନ ବିଷ୍ଣୁଙ୍କୁ ପୂଜା କରି ସାରିବା ପରେ ପିତୃପୁରୁଷଙ୍କୁ ତିଳ ତର୍ପଣ କରାଯାଏ । ଗରିବଙ୍କୁ ଭୋଜନ ଶୀତବସ୍ତ୍ର, ଫଳ, ଅନ୍ନ ଦାନ କରାଯାଏ । ଏହି ଦିନ ରୁପା ଦାନକୁ ଶୁଭ ବା ମଙ୍ଗଳ ବୋଲି ଧରିଥା'ନ୍ତି । କେହି କେହି ଗୋଦାନ ମଧ୍ୟ କରନ୍ତି । ଦିନସାରା ଉପବାସ ରହି ସନ୍ଧ୍ୟାରେ ଫଳାହାର କରନ୍ତି । ପୌରାଣିକ ମତାନୁସାରେ ଦେବତାମାନେ ଏହିଦିନ ବେଶ ବଦଳାଇ ଗଙ୍ଗା ସ୍ନାନ କରିବାକୁ ପ୍ରୟାଗ ଆସନ୍ତି ।

ମାଘସ୍ନାନ – ପୌରାଣିକ କଥାନୁସାରେ ପ୍ରାଚୀନ କାଳରେ ନର୍ମଦା ନଦୀ କୂଳରେ ସୁବ୍ରତ ନାମକ ଜଣେ ବ୍ରାହ୍ମଣ ରହୁଥିଲେ । ସେ ସମସ୍ତ ଧର୍ମଶାସ୍ତ୍ର ଓ ପୁରାଣରେ ଜ୍ଞାତ ଥିଲେ । ସେ ଅନେକ ରାଷ୍ଟ୍ରର ଭାଷା ଓ ଲିପି ଜାଣିଥିଲେ । ଏତେ ବିଦ୍ୱାନ୍ ହୋଇଥିଲେ ବି ସେ ନିଜର ଜ୍ଞାନର ଉପଯୋଗ ଧର୍ମକାର୍ଯ୍ୟ ପାଇଁ କରି ନ ଥିଲେ । ସାରା ଜୀବନ କେବଳ ଧନ ଉପାର୍ଜନରେ ଲାଗି ପଡିଥିଲେ । ପରେ ସେ ଭାବିଲେ ମୁଁ ବହୁତ ଧନ ଅର୍ଜନ କଲି, କିନ୍ତୁ ପରଲୋକରେ ଶାନ୍ତି ପାଇବା ପାଇଁ କିଛି କାର୍ଯ୍ୟ କଲିନାହିଁ । ଏହି ପଶ୍ଚାତ୍ତାପରେ ଥିଲାବେଳେ ତାଙ୍କର ସବୁ ଧନ ଚୋରି ହୋଇଗଲା । ଏଥିପାଇଁ ଅନୁତାପ ନ କରି ସେ ପରମାତ୍ମାଙ୍କୁ ପ୍ରାପ୍ତ କରିବାଲାଗି ଉପାୟ ଖୋଜୁଥିଲେ । ସେ ମାଘସ୍ନାନ ପାଇଁ ସଂକଳ୍ପ ନେଇ ୯ ଦିନ ପର୍ଯ୍ୟନ୍ତ ନର୍ମଦା ଜଳରେ ସ୍ନାନ କଲେ ଏବଂ ଦଶମ ଦିନ ପ୍ରାଣତ୍ୟାଗ କଲେ । ସାରା ଜୀବନ କୌଣସି ଧର୍ମ କାର୍ଯ୍ୟ କରି ନଥିଲେ ମଧ୍ୟ ମାଘସ୍ନାନ କରିବା ପରେ ତାଙ୍କ ଆତ୍ମା ସ୍ୱର୍ଗଲୋକରେ ସ୍ଥାନ ପାଇଲା ।

ମାଘ ମାସ ମାଧବଙ୍କ ମାସ । ଶ୍ରୀକୃଷ୍ଣଙ୍କ ଅନ୍ୟ ନାମ ମାଧବ । ଏହି ମାସଟି ଅତ୍ୟନ୍ତ ପବିତ୍ର ମାସ । ଧାର୍ମିକ ଅନୁଷ୍ଠାନମାନଙ୍କରେ ଯଜ୍ଞ, ଆହୂତି ହୁଏ । ବୈଜ୍ଞାନିକ ଦୃଷ୍ଟିକୋଣରୁ ସକାଳେ ଡେରି ଯାଏଁ ଶୋଇବା, ସ୍ନାନ ନ କରିବା ଶରୀର ପକ୍ଷେ ଅହିତକର । ଭାରି ଭୋଜନ ଛାଡ଼ି ହାଲ୍‌କା ଭୋଜନ କରିବା ଦ୍ୱାରା ଶରୀର ଆରୋଗ୍ୟ ହୁଏ, ମନରେ ଏକାଗ୍ରତା ବଢେ । ମାନସିକ ଶାନ୍ତି ମିଳେ । ମନ ଭିତରର ନକାରାତ୍ମକ ପ୍ରଭାବ ଦୂର ହୋଇଥାଏ । ତେଣୁ ଏହି ଧାର୍ମିକ ମାସଟିକୁ ସ୍ନାନ କରିବା ପୂର୍ବକ ଦାନ ଧର୍ମରେ ପାଳନ କରିବା ଦ୍ୱାରା ମନୁଷ୍ୟ ପୁଣ୍ୟ ଭାଜନ ହୋଇଥାଏ ବୋଲି ବିଶ୍ୱାସ ରହିଛି ।

ଗଙ୍ଗ ନଗର, ଭୁବନେଶ୍ୱର



# ବୃକ୍ଷ : ସଜୀବ ଓ ନିର୍ଜୀବଙ୍କ ପାଇଁ ହିତକାରକ

ଡକ୍ଟର ବିଷ୍ଣୁ ଚରଣ ଜେନା

ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ରାଜ ଦରବାରରେ ଯେତେଜଣ ପଣ୍ଡିତ ଥିଲେ ତାଙ୍କ ମଧ୍ୟରେ ଚାଣକ୍ୟ ଅତି ବୁଦ୍ଧିମାନ୍ ଥିଲେ । ସେ ବିଚକ୍ଷଣ ଅର୍ଥଶାସ୍ତ୍ରୀ ଥିବା ସତ୍ତ୍ୱେ ଗଣିତ



ଶାସ୍ତ୍ରରେ ତାଙ୍କର ପାରଦର୍ଶିତା ଉଚ୍ଚକୋଟୀର ଥିଲା । ଏହା ସହିତ ସେ କୂଟନୀତିରେ ନୈପୁଣ୍ୟତା ଅର୍ଜନ କରିଥିଲେ । ବୃକ୍ଷମାନଙ୍କର ଉପକାରିତା ବିଷୟରେ ବର୍ଣ୍ଣନା କରି ତାଙ୍କ ରଚିତ ନୀତିଶାସ୍ତ୍ରରେ ଲେଖିଛନ୍ତି: 'ସେବିତବ୍ୟୋ ମହାବୃକ୍ଷଃ ଫଳ ଛାୟା ସମନ୍ୱିତଃ ଯଦି ଦୈବାତ ଫଳଂନାସ୍ତି ଛାୟାକେନ ନିବ୍ୟର୍ଯ୍ୟତେ' । ଫଳପୁଷ୍ପ ପାଇବା ପାଇଁ ମନୁଷ୍ୟ ବୃକ୍ଷ ରୋପଣ କରିଥାଏ । ଯଦି କୌଣସି କାରଣ ବଶତଃ ବୃକ୍ଷ ଫଳପୁଷ୍ପ ଧାରଣ କରିପାରେ ନାହିଁ । ତେବେ ପଥିକମାନଙ୍କୁ ଛାଇତ ଦେଇପାରିବ । ସେହିପରି ବୃକ୍ଷର ମାହାତ୍ମ୍ୟ ଦ୍ୱାପର ଯୁଗରେ ବର୍ଣ୍ଣନା କରାଯାଇଛି । ଭଗବାନ ଶ୍ରୀକୃଷ୍ଣ, ସଖା ଅର୍ଜୁନଙ୍କୁ ମହାଭାରତ ଯୁଦ୍ଧ ସମୟରେ ନିଜର ସ୍ଥିତି ସମ୍ବନ୍ଧରେ ନିଜର ସୂଚନାର ବୈଶିଷ୍ଟ୍ୟତା 'ଗୀତା' ମାଧ୍ୟମରେ ଶୁଣାଇଛନ୍ତି । ସେ କହିଛନ୍ତି, 'ଅଶ୍ୱତ୍ଥଃ ସର୍ବବୃକ୍ଷାଣାଂ ଦେବର୍ଷୀଣାଂ ଚ ନାରଦଃ । ଗନ୍ଧର୍ବାଣାଂ ଚିତ୍ରରଥଃ ସିଦ୍ଧାନାଂ କପିଳୋ ମୁନିଃ' । ସେ କହିଛନ୍ତି, 'ମୁଁ ବୃକ୍ଷମାନଙ୍କ ମଧ୍ୟରେ ଅଶ୍ୱତ୍ଥ ବୃକ୍ଷ । ସେହି ସମୟଠାରୁ ଆଜି ପର୍ଯ୍ୟନ୍ତ ଅଶ୍ୱତ୍ଥ ବୃକ୍ଷକୁ ହିନ୍ଦୁମାନେ କୃଷ୍ଣ ରୂପରେ ପୂଜା କରି ଆସୁଛନ୍ତି । ତେଣୁ ବୃକ୍ଷର ମାହାତ୍ମ୍ୟ ସାମାଜିକ ଓ ଧାର୍ମିକ ଚିନ୍ତାଧାରାରେ ସନ୍ନିହିତ ହୋଇଛି ।

ତୁଳସୀ ଏକ ଛୋଟ ବୃକ୍ଷ । କିନ୍ତୁ ଆଧ୍ୟାତ୍ମିକ ବାତାବରଣରେ ତୁଳସୀର ସ୍ଥାନ ଅତି ଉଚ୍ଚରେ । ପ୍ରାତଃ କାଳରେ ହିନ୍ଦୁମାନେ ସ୍ନାନ କରିବା ପରେ ତୁଳସୀ ମୂଳରେ ଜଳ ଦେଇ ଏହାର ମୂଳରେ ଥିବା ମାଟିକୁ ଜଳ ସହିତ ପାନ କରନ୍ତି ଏବଂ ବୃନ୍ଦାବତୀଙ୍କୁ ସ୍ମରଣ କରନ୍ତି । ତୁଳସୀ କୃଷ୍ଣଙ୍କର ଅତିପ୍ରିୟ ହୋଇଥିବାରୁ କରମଳା ଆଶ୍ରମର ପ୍ରତିଷ୍ଠାତା ଅଭିରାମ ପରମହଂସ କବିତା ମାଧ୍ୟମରେ ଲେଖିଛନ୍ତି, 'କୃଷ୍ଣଙ୍କୁ ଦିଅ ତୁ ତୁଳସୀରେ ମଦାଳସୀ ହୃଷ୍ଟ ହୋଇବେ ବ୍ରହ୍ମରାଶୀ । ତୁଳସୀ ମାଳାକୁ ନେଇ ଗଳାରେ ଦିଅ ଲମ୍ବାଇ ଆନନ୍ଦେ ପୁହାଇବେ ନିଶିରେ ମଦାଳସୀ ।'

ବୃକ୍ଷରେ ପ୍ରସ୍ଫୁଟିତ ହେଉଥିବା ବିଭିନ୍ନ ରଙ୍ଗର ଫୁଲ ଦେବାଦେବୀଙ୍କ ପୂଜା କାର୍ଯ୍ୟରେ ଲାଗେ । ଯେକୌଣସି ମାଙ୍ଗଳିକ କାର୍ଯ୍ୟ ଯଥା ବିବାହ, ବ୍ରତ, ମେଳା ଓ ମହୋତ୍ସବାଦିରେ ଫୁଲର ଆବଶ୍ୟକତା ରହିଛି । ଚାଷୀ ଓ ମାଳୀମାନେ ଫୁଲଚାଷ କରି ଫୁଲ ବିକ୍ରି କରି ଅର୍ଥ ରୋଜଗାର କରନ୍ତି । ବୃକ୍ଷ ମନୁଷ୍ୟମାନଙ୍କୁ ବାସଗୃହ, ଖାଦ୍ୟ ଓ ବସ୍ତ୍ର ଯୋଗାଇ ଥାଆନ୍ତି । ଗୃହର ଆସବାବପତ୍ର ଯଥା ଖଟ, ପଲଙ୍କ, ଆଲମିରା, ବେଞ୍ଚ, ଡେସ୍କ, ଚେୟାର ଓ ଟେବୁଲ ଆଦି ନିର୍ମାଣ କାର୍ଯ୍ୟରେ ଶାଳ, ପିଆଶାଳ, ସାଗୁଆନ,



ପଣସ, ଆମ୍ବ, ଶିମିଳି ଓ ତେନ୍ତୁଳି ବ୍ୟବହୃତ ହେଉଛି । ବେଲ ଗଛର ଫଳରୁ ପ୍ରସ୍ତୁତ ପଣା ଅତି ସ୍ୱାଦିଷ୍ଟ ଖାଦ୍ୟ ଓ ଏହା ପାଚନ କ୍ରିୟାରେ ସହାୟକ ହୋଇଥିବାରୁ ମନୁଷ୍ୟର କୋଷ୍ଠକାଠିନ୍ୟକୁ ଦୂର କରେ । ସେହିପରି ଆମ୍ବ, ପଣସ, ନଡିଆ, କଦଳୀ, ପିଜୁଳି, ସପେଟା, ତାଳ ଓ ବରକୋଳି ଗଛ ଆଦିରୁ ସୁସ୍ୱାଦୁ ଫଳ ମିଳିଥାଏ । ମନୁଷ୍ୟ ଶରୀରକୁ ସୁସ୍ଥ ଓ ସବଳ ରଖିବା ପାଇଁ ଏହିସବୁ ଫଳଗୁଡିକ ଅତି ଉପକାରୀ । ଅନେକ ବୃକ୍ଷ ଔଷଧଗୁଣ ଯୁକ୍ତ ହେତୁ ସେଗୁଡିକ ସ୍ୱାସ୍ଥ୍ୟ ପାଇଁ ନିହାତି ଆବଶ୍ୟକ । ନିମ୍ବ ଗଛର ଭିନ୍ନ ଭିନ୍ନ ଅଂଶ ଯଥା- ଫୁଲ, ଫଳ, ପତ୍ର ଓ ବଲ୍‌କଳରୁ ଅନେକ ଔଷଧ ପ୍ରସ୍ତୁତ ହେଉଛି । ଏହା ବ୍ୟତୀତ ଅନେକ ବୃକ୍ଷ କୀଟନାଶକାରୀ । ନିମ୍ବର ପତ୍ର, ଫଳ, ଫୁଲରୁ କୀଟନାଶକ ପ୍ରସ୍ତୁତ ହୋଇ ଫସଲକୁ ଆକ୍ରମଣ କରୁଥିବା ରୋଗପୋକମାନଙ୍କର ଦୌରାତ୍ମ୍ୟରୁ ରକ୍ଷା କରାଯାଉଛି । ସେହିପରି କରଞ୍ଜ, ନାଗଅଇରି, ସୀତାଫଳ ଓ ବେଗୁନିଆ ଗଛରେ କୀଟନାଶକ ଗୁଣ ଭରପୂର ହୋଇ ରହିଛି । ନିମ୍ବ ପିଡିଆ ଫସଲର ଅମଳ ବୃଦ୍ଧି କରେ ।

ନବକଳେବର ସମୟରେ ଜଗତର ନାଥ ଶ୍ରୀଜଗନ୍ନାଥ, ଦେବୀ ସୁଭଦ୍ରା, ବଳଭଦ୍ର ଓ ସୁଦର୍ଶନଙ୍କ ମୂର୍ତ୍ତି ନିର୍ମାଣ କରିବା ପାଇଁ ପୁରୁଣା ଓ ଚନ୍ଦନ ଗନ୍ଧଯୁକ୍ତ ଏବଂ ଶଙ୍ଖ, ଚକ୍ର ଥିବା ନିମ୍ବଗଛ ଲୋଡାହୁଏ । ଏହି ନିମ୍ବ ଗଛକୁ ବିଧିବିଧାନାନୁସାରେ ପୂଜା କରି ନାମ କୀର୍ତ୍ତନ ସହିତ ପୂଜକମାନେ ପୁରୀକୁ ଆଣନ୍ତି । ଚନ୍ଦନ କାଠ ଦେବକାର୍ଯ୍ୟ ପାଇଁ ଅତି ଜରୁରୀ ।

ତ୍ରେତୟା ଯୁଗରେ ପ୍ରଭୁ ଶ୍ରୀରାମଚନ୍ଦ୍ର ଲଙ୍କା ଅଭିଯାନ ସମୟରେ ରାବଣକୁ ବଧ କରିବା ପାଇଁ ଯୁଦ୍ଧ କରିଥିଲେ । ଯୁଦ୍ଧ କରିବା ସମୟରେ ଲକ୍ଷ୍ମଣ ରାବଣର ପୁଅ ଇନ୍ଦ୍ରଜିତ ଦ୍ୱାରା ପରାସ୍ତ ହୋଇ ଶକ୍ତିଭେଦ ଅବସ୍ଥାରେ ପଡି ରହିଲେ । ଲକ୍ଷ୍ମଣଙ୍କୁ ଶକ୍ତିଭେଦରୁ ମୁକ୍ତ କରିବା ପାଇଁ ହନୁମାନ ହିମାଳୟ ପର୍ବତକୁ ଉପାଡି ଏହାକୁ ମୁଣ୍ଡେଇ ଉଡି ଉଡି ଆସି ଶ୍ରୀରାମଙ୍କ ନିକଟରେ ପହଞ୍ଚିଥିଲେ । ମୃତ୍ୟୁ ସଂଜୀବନୀ ବୃକ୍ଷରୁ ଔଷଧ ପ୍ରସ୍ତୁତି ହେଲା ଓ ଏହାକୁ ଲକ୍ଷ୍ମଣଙ୍କୁ ସେବନ କରାଇ ଶକ୍ତି ଭେଦରୁ ମୁକ୍ତ କରାଗଲା ।

ପ୍ରାଣୀ ଜଗତ ପାଇଁ ବୃକ୍ଷର ଉପାଦେୟତା ଅତୁଳନୀୟ । ବୃକ୍ଷ ଯୋଗୁଁ ବର୍ଷା ହୁଏ । ବୃକ୍ଷମାନଙ୍କର ଉପସ୍ଥିତି ଯୋଗୁଁ ପୃଥିବୀ ଥଣ୍ଡା ରହେ । ମନୁଷ୍ୟ ରୌଦ୍ରତାପରୁ ଆଶ୍ୱସ୍ତି ପାଏ । ତେଣୁ ବୃକ୍ଷ ହିଁ ପାଣିପାଗ ନିୟନ୍ତ୍ରକ । ମନୁଷ୍ୟ ବଞ୍ଚି ରହିବା ପାଇଁ ଅମ୍ଳଜାନ ଆବଶ୍ୟକ କରେ । ଅମ୍ଳଜାନ କମିଲେ ମନୁଷ୍ୟ ଶ୍ୱାସରୁଦ୍ଧ ହୋଇ ମୃତ୍ୟୁବରଣ କରେ । ବୃକ୍ଷମାନେ ବାୟୁମଣ୍ଡଳକୁ ପ୍ରଚୁର ପରିମାଣର ଅମ୍ଳଜାନ ପ୍ରଦାନ କରନ୍ତି ।

ବୃକ୍ଷମାନେ ମଧ୍ୟ ନିର୍ଜୀବମାନଙ୍କ ଉପକାରରେ ଲାଗନ୍ତି ଯଥା ଡଙ୍ଗା, ବୋଇତ ଓ ବୁଡ଼ା ଜାହାଜ ନିର୍ମାଣ କାର୍ଯ୍ୟରେ କାଠର ଆବଶ୍ୟକତା ରହିଛି ।

ଏଗୁଡିକ ମନୁଷ୍ୟମାନଙ୍କର ଗମନାଗମନ, ବ୍ୟବସାୟ ଓ ବାଣିଜ୍ୟ କାର୍ଯ୍ୟରେ ସହାୟକ ହୁଅନ୍ତି । ମନୁଷ୍ୟ ଜୀବନ ଥିବା ସମୟରେ ସେ ସର୍ବଦା ବୃକ୍ଷମାନଙ୍କ ଉପରେ ନିର୍ଭର କରେ । ମୃତ୍ୟୁ ପରେ ମଧ୍ୟ ବୃକ୍ଷର ଆବଶ୍ୟକତା ପଡେ । ମୃତ ମନୁଷ୍ୟର ଶବ ସଂସ୍କାର ପାଇଁ ଶୁଖିଲା କାଠ ଓ ବାଉଁଶ ଦରକାର ହୁଏ । ଚନ୍ଦନ କାଠ ବି ଦରକାର ହୁଏ । ସନ୍ତାନ ପ୍ରସବ କରିବା ପରେ ମା'ମାନେ ଥଣ୍ଡା ଅନୁଭବ କରନ୍ତି । ଜନ୍ମ ହୋଇଥିବା ସନ୍ତାନମାନେ ମଧ୍ୟ ଥଣ୍ଡା ଅନୁଭବ କରନ୍ତି । ତେଣୁ ସେମାନଙ୍କୁ ଉତ୍ତାପ ଯୋଗେଇବା ପାଇଁ କାଠ ଜାଳି ଅନ୍ତୁଡିଶାଳକୁ ଉଷୁମ ରଖାଯାଏ । ବୃକ୍ଷର ଏସବୁ ଉପାଦେୟ ଗୁଣ ଜାଣିଲା ପରେ ମଧ୍ୟ ମନୁଷ୍ୟ ଜ୍ଞାନଶୂନ୍ୟ ହୋଇ ବୃକ୍ଷମାନଙ୍କୁ କାଟି ଚାଲିଛି । ରାଜ୍ୟ ସରକାର ମଧ୍ୟ ଶିଳ୍ପାୟନ ବୃଦ୍ଧି କରିବା, ନୂଆ ନୂଆ ରାସ୍ତା ଘାଟ ନିର୍ମାଣ କରିବା, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ନିର୍ମାଣ କରିବା ଓ ସର୍ବୋପରି ଚିକିତ୍ସା ମହାବିଦ୍ୟାଳୟ ପ୍ରତିଷ୍ଠା କରିବା କାର୍ଯ୍ୟ ପାଇଁ ବୃକ୍ଷମାନଙ୍କୁ ଛେଦନ କରୁଛନ୍ତି । ଅବଶ୍ୟ ରାଜ୍ୟ ସରକାର ଉନ୍ନୟନମୂଳକ କାର୍ଯ୍ୟତ ଚାଲୁ ରଖିବେ । କିନ୍ତୁ ଆବଶ୍ୟକଠାରୁ ଅଧିକ ବୃକ୍ଷ କାଟିବା ଠିକ୍ ନୁହେଁ । ମାନବ ସମାଜ ପ୍ରତି ବୃକ୍ଷର ଉପାଦେୟତାକୁ ବିଚାର କରି ଭାରତ ସରକାର ୧୯୫୦ ମସିହା ଜୁଲାଇ ମାସରୁ 'ବନ ମହୋତ୍ସବ' କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି । ଏହି ବନ ମହୋତ୍ସବ କାର୍ଯ୍ୟକ୍ରମରେ ଭାରତର ସମସ୍ତ ରାଜ୍ୟମାନଙ୍କ ସରକାରୀ ଓ ବେସରକାରୀ ଅନୁଷ୍ଠାନଗୁଡିକରେ ଏହା ପାଳନ କରାଯାଉଛି । ଏତଦ୍‌ବ୍ୟତୀତ ନୂତନ ଜଙ୍ଗଲ ସୃଷ୍ଟି କରିବାର କାର୍ଯ୍ୟକ୍ରମ ମଧ୍ୟ ଓଡ଼ିଶା ସରକାର ଜାରି ରଖିଛନ୍ତି । ବନ ମହୋତ୍ସବ ଉପଲକ୍ଷେ ଜନ ସଚେତନତା କାର୍ଯ୍ୟ କରାଯାଉଛି । ଶିକ୍ଷାନୁଷ୍ଠାନମାନଙ୍କରେ ଛାତ୍ରଛାତ୍ରୀମାନଙ୍କୁ ବିଭିନ୍ନ ପ୍ରକାର ବକ୍ତୃତା ଓ ପ୍ରବନ୍ଧ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରାଇ ସେମାନଙ୍କୁ ପୁରସ୍କାର ପ୍ରଦାନ କରାଯାଉଛି । ବିଶ୍ୱସ୍ତରରେ ମଧ୍ୟ ଏହି ପ୍ରକାର କାର୍ଯ୍ୟକ୍ରମ କରାଯାଉଛି ।

ବୃକ୍ଷ ଛେଦନ ଯୋଗୁଁ ବାୟୁ ମଣ୍ଡଳର ଉତ୍ତାପ ବୃଦ୍ଧି ହେଉଛି । ଜଳବାୟୁର ସ୍ଥିତିରେ ପରିବର୍ତ୍ତନ ଦେଖାଦେଉଛି । ଯାହା ଫଳରେ ଅସମୟରେ ପ୍ରଚୁର ବୃଷ୍ଟିପାତ ହେଉଛି । ହିମାଳୟର ବରଫ ତରଳିବା ଯୋଗୁଁ ଏହାର ପାଦଦେଶରେ ଥିବା ନଦୀମାନଙ୍କର ଜଳସ୍ରୋତ ବୃଦ୍ଧି ପାଉଛି । ବନ୍ୟା ଓ ବାତ୍ୟା ଯୋଗୁଁ ଫସଲ ନଷ୍ଟ ହେଉଛି । ବାୟୁମଣ୍ଡଳର ଉତ୍ତାପ ବୃଦ୍ଧି ଯୋଗୁଁ ସୂର୍ଯ୍ୟୋତାପ ଅସହ୍ୟ ହେଉଛି । ଅକାଳରେ ମନୁଷ୍ୟମାନଙ୍କର ଜୀବନ ହାନି ହେଉଛି । ଜଳବାୟୁର ପରିବର୍ତ୍ତନକୁ ସୁଧାରିବା ପାଇଁ ପୃଥିବୀର ନେତୃବୃନ୍ଦ ଏକାଠି ହୋଇ ବିଭିନ୍ନ ଆଲୋଚନା ମାଧ୍ୟମରେ ଫଳପ୍ରଦ ପଦକ୍ଷେପ ନେଉଛନ୍ତି । ଏହି ବିହିତ ପ୍ରଚେଷ୍ଟା ବିଶ୍ୱ ଦରବାରର ସମସ୍ତ ମାନବ ସମାଜ ପ୍ରତି ମଙ୍ଗଳଦାୟକ । ତେଣୁ ସଂସ୍କୃତ ଶ୍ଳୋକ ମାଧ୍ୟମରେ କୁହାଯାଇଛି –

ସର୍ବେ ଭବନ୍ତୁ ସୁଖୀନଃ<br>
ସର୍ବେ ସନ୍ତୁ ନିରାମୟଃ<br>
ସର୍ବେ ଭଦ୍ରାଣି ପଶ୍ୟନ୍ତୁ<br>
ମା' କଶ୍ଚିତ ଦୁଃଖ ଭାଗ ଭବେତ ।

---

ପୂର୍ବତନ ପ୍ରଫେସର ଓ ବିଭାଗୀୟ ମୁଖ୍ୟ<br>
କୀଟତତ୍ତ୍ୱ ବିଭାଗ, କୃଷି ମହାବିଦ୍ୟାଳୟ<br>
ଭୁବନେଶ୍ୱର



# ପ୍ରମୋଦ ପତି : ଅଭିନବ ଭାରତୀୟ ଚଳଚ୍ଚିତ୍ରର ଜନକ

**ଗୋଲକ ବିହାରୀ ସିଂହ**

ଯିବା ଆସିବାର ନାଟକ ମଧ୍ୟରେ ମଣିଷ ବଞ୍ଚେ । ଜୀବନ ପୃଷ୍ଠାରୁ ଦିନ ସରିଗଲେ ତା'ର ଶରୀର ମାଟିରେ ମିଶିଯାଏ, ମାତ୍ର କାଳଜୟୀ ତଥା ଯଶସ୍ୱୀ ବ୍ୟକ୍ତି ମରି



ମଧ୍ୟ ଚିରକାଳ ପାଇଁ ଜୀବନ୍ତ ହୋଇ ରହନ୍ତି । ସେହି କ୍ରମରେ ଅଭିନବ ଭାରତୀୟ ଚଳଚ୍ଚିତ୍ରର ଜନକ ପ୍ରମୋଦ ପତିଙ୍କର ଦେହାନ୍ତର ଘଟିଥିଲେ ମଧ୍ୟ ସେ ଆଜି ଅମର । ନିଜର ନିଷ୍ଠା, ସାଧନା ଓ ଅଧ୍ୟବସାୟ ପାଇଁ, ଅସାଧାରଣ ବ୍ୟକ୍ତିତ୍ୱର ଅଧିକାରୀ ହୋଇ ପାରିଥିବା ପତିଙ୍କ ପାଇଁ ଆମେ ସଭିଏଁ ଗର୍ବିତ ।

୧୫ ଜାନୁଆରୀ ୧୯୩୨ରେ ଓଡ଼ିଶାର ବିଶିଷ୍ଟ ଗଣିତଜ୍ଞ ନାରାୟଣ ପତି ତଥା ମା' କ୍ଷେତ୍ରମଣି ପତିଙ୍କର କୋଳ ମଣ୍ଡନ କରି ସମ୍ବଲପୁରରେ ଭୂମିଷ୍ଠ ହୋଇଥିଲେ ତାଙ୍କ ଜ୍ୟେଷ୍ଠପୁତ୍ର ପ୍ରମୋଦ । ଛାତ୍ରାବସ୍ଥାରୁ ଫଟୋଗ୍ରାଫି ପ୍ରତି ବେଶ୍ ଅନୁରାଗୀ ଥିବା ପ୍ରମୋଦ ରେଭେନ୍‌ସା ମହାବିଦ୍ୟାଳୟରୁ ୧୯୫୦ରେ ବିଜ୍ଞାନରେ ସ୍ନାତକ ଡିଗ୍ରୀ ହାସଲ କରିବାପରେ ଚଳଚ୍ଚିତ୍ର ବିଦ୍ୟା ଅଧ୍ୟୟନର ଭାରତର ସର୍ବପ୍ରଥମ ଅନୁଷ୍ଠାନ ଶ୍ରୀ ଜୟଚମରାଜେନ୍ଦ୍ର ଅକୁପେସନାଲ ଇନ୍‌ଷ୍ଟିଚ୍ୟୁଟ୍, ବାଙ୍ଗାଲୋରରେ ଅଧ୍ୟୟନ କରିଥିଲେ । ସେଠାରୁ ଚଳଚ୍ଚିତ୍ରକଳା (ସିନେମାଟୋଗ୍ରାଫି)ରେ ଆନୁଷ୍ଠାନିକ ଡିପ୍ଲୋମା, ଉପାଧିପତ୍ର ହାସଲ କରିବା ସହ ସ୍ୱର୍ଣ୍ଣପଦକ ଲାଭ କରିଥିଲେ ଏହି ଅବିସ୍ମରଣୀୟ ପ୍ରତିଭା ।

ଆନୁଷ୍ଠାନିକ ବୃତ୍ତିଗତ ଶିକ୍ଷା ଲାଭ ପରେ ୧୯୫୨ରେ ସେ ଓଡ଼ିଶା ସରକାରଙ୍କ ଗୃହ ବିଭାଗ (ଜନସମ୍ପର୍କ ଅନୁବିଭାଗ)ରେ ଚଳଚ୍ଚିତ୍ର ଅଧିକାରୀ ଭାବେ ନିଯୁକ୍ତ ହୋଇଥିଲେ । ଦାୟିତ୍ୱ ଥିଲା – ପ୍ରାମାଣିକ ଚଳଚ୍ଚିତ୍ର ପ୍ରସ୍ତୁତି ଓ ପ୍ରସାରଣ କରିବା । ସେସମୟରେ ଫଟୋଗ୍ରାଫି ସମ୍ବନ୍ଧୀୟ ଯନ୍ତ୍ରପାତି, କାରିଗରୀ କୌଶଳ ଅବିକଶିତ ଥିଲେ ମଧ୍ୟ ସେ ନିଜର ପ୍ରଗାଢ଼ ନିଷ୍ଠା, ଦୃଢ଼ ଅଧ୍ୟବସାୟ ସୃଜନଶୀଳତା, ନବଚିନ୍ତନ ସହ ଉପଲବ୍ଧ ସାଧନ ଉପଯୋଗ କରି ଚଉଦଟି ପ୍ରାମାଣିକ ଚଳଚ୍ଚିତ୍ର ନିର୍ମାଣ କରିବାରେ ସଫଳ ହୋଇଥିଲେ । ତନ୍ମଧ୍ୟରୁ 'ଆଦିବାସୀସ୍ ଅଫ୍ ଓଡ଼ିଶା', 'କାର୍ ଫେଷ୍ଟିଭାଲ୍',

'ଫୋକ୍ ଡିଲାଇଟ', 'ବିନୋବାଜୀ ଇନ୍ ଓଡ଼ିଶା' ଆଦି ଚଳଚ୍ଚିତ୍ର ବହୁଧା ଦର୍ଶକୀୟ ଆଦୃତି ଲାଭ କରିଥିଲା ।

ସେତେବେଳକୁ ଆମେରିକୀୟ ବିଶେଷଜ୍ଞ ଜିନ୍ ଭୌଙ୍ଗାରୀଙ୍କ ତତ୍ତ୍ୱାବଧାନରେ ଭାରତରେ ନୂଆକରି ଗପ ପ୍ରକାଶ କରୁଥିବା ଧାରାବାହିକ ଚିତ୍ର ବା ଚିତ୍ରାଙ୍କନ ମାଧ୍ୟମରେ ଚଳଚ୍ଚିତ୍ର ନିର୍ମାଣର ଶୁଭାରମ୍ଭ ହୋଇଥାଏ । ସେଥିପାଇଁ ଜଣେ ଭାରତୀୟଙ୍କୁ ବିଶ୍ୱସ୍ତରୀୟ ଅନୁଷ୍ଠାନରେ ପ୍ରଶିକ୍ଷିତ କରି ଚଳଚ୍ଚିତ୍ର ବିଭାଗରେ ଅବସ୍ଥାପିତ କରିବା ପାଇଁ ପ୍ରଧାନମନ୍ତ୍ରୀ ନେହେରୁ ଇଚ୍ଛା ବ୍ୟକ୍ତ କରିଥିଲେ । ତଦନୁଯାୟୀ ବିଦ୍ୟାର୍ଥୀ ବିନିମୟ ଯୋଜନାରେ ଜାତୀୟ ବୃତ୍ତି ପ୍ରଦାନ ପୂର୍ବକ ଓଡ଼ିଶା ସରକାରଙ୍କ ଚଳଚ୍ଚିତ୍ର ଅଧିକାରୀ ପ୍ରମୋଦ ପତିଙ୍କୁ ଚେକୋସ୍ଲୋଭାକିଆର ପ୍ରେଗ ସହରର ବିଶ୍ୱପ୍ରସିଦ୍ଧ ପପେଟ୍ ଆନିମେସନ ଅନୁଷ୍ଠାନ୍ 'ଫାମୁ'କୁ ଅଧ୍ୟୟନ ପାଇଁ ପଠାଗଲା ।

ସେଠାରେ ସେ ଜିରି ଟ୍ରିଙ୍କା ଓ ଏଡ୍‌ୱାର୍ଡ ହେଫ୍‌ମ୍ୟାନ୍‌ଙ୍କ ପରି ପ୍ରତିଷ୍ଠିତ ବିଶେଷଜ୍ଞଙ୍କ ଅଧୀନରେ ଯଥାକ୍ରମେ ପପେଟ୍ ଓ କାର୍ଟୁନ୍ ଚଳଚ୍ଚିତ୍ର ସମ୍ବନ୍ଧରେ ଅଧ୍ୟୟନ ଓ ଜ୍ଞାନାର୍ଜନ କରି ବିଶ୍ୱସ୍ତରୀୟ କୌଶଳ ହାସଲ କରିବାକୁ ସମର୍ଥ ହୋଇଥିଲେ । ସେହି ପ୍ରଶିକ୍ଷଣ ସମୟରେ ସେ ସଂଖ୍ୟାଧିକ ଆନ୍ତର୍ଜାତୀୟ ସ୍ତରର ବିଶେଷଜ୍ଞମାନଙ୍କ ସମ୍ପର୍କରେ ଆସି ଉପଯୋଗୀ କଳା-କୌଶଳ ଆହରଣ କରିଥିଲେ । ଶିକ୍ଷାଗତ ଯୋଗ୍ୟତା, ଚଳଚ୍ଚିତ୍ର ପ୍ରସ୍ତୁତିର ଅଭିଜ୍ଞତା, ଦକ୍ଷତା ଓ ପ୍ରୟୋଗାତ୍ମକ ଜ୍ଞାନକୁ ଆକଳନ କରି ଭାରତ ସରକାର ୧୯୬୦ରେ ଏହି କୃତିବିଦ୍ୟଙ୍କୁ ଫିଲ୍ମ ଡିଭିଜନ୍ କାର୍ଟୁନ୍ ଫିଲ୍ମ ୟୁନିଟ୍‌ର ମୁଖ୍ୟରୂପେ ନିୟୋଜିତ କରିଥିଲେ ।

ସେ ଥିଲେ ଅମଡ଼ା ବାଟର ପଥିକ । ଗଭୀର ଆତ୍ମପ୍ରତ୍ୟୟଯୁକ୍ତ ନିଷ୍ଠାପର ପ୍ରତି ସଦା ସର୍ବଦା ନୂତନତ୍ୱର ଅନୁସନ୍ଧାନରେ ସେ ନିମଗ୍ନ ରହୁଥିଲେ । ଫିଲ୍ମ ଡିଭିଜନ୍‌ରେ ପ୍ରବିଧିବିଜ୍ଞାନ, ପ୍ରଯୁକ୍ତି ବିଦ୍ୟା ସହ ପ୍ରୟୋଗାତ୍ମକ ବୈଷୟିକ ଜ୍ଞାନ କୌଶଳ ପ୍ରୟୋଗ କରି ସେ ସଂଖ୍ୟାଧିକ ନୂତନ ସ୍ୱାଦର ପ୍ରାମାଣିକ ଚଳଚ୍ଚିତ୍ର ନିର୍ମାଣ କରିବାରେ ସଫଳ ହୋଇଥିଲେ । ତାଙ୍କର ଅଣପାରମ୍ପରିକ ପ୍ରତିବେଦନ ଥିଲା ଏକାନ୍ତ ବସ୍ତୁନିଷ୍ଠ ଓ ବିଜ୍ଞାନସମ୍ମତ । ଗତାନୁଗତ ଢାଞ୍ଚାକୁ ଭାଙ୍ଗି ସେ ପ୍ରାମାଣିକ ଚଳଚ୍ଚିତ୍ରକୁ ଗଳ୍ପ ପରିସରର ବାହାରକୁ ନେଇଯାଇଥିଲେ । ତାଙ୍କର ପ୍ରୟୋଗାତ୍ମକ ଭଙ୍ଗୀ, ପ୍ରବହମାନ ସମସାମୟିକ ଭାରତୀୟ ଚଳଚ୍ଚିତ୍ର ଧାରାଠାରୁ ଢେର ଆଗରେ ଥିଲା ।

ପ୍ରଥମ ଭାରତୀୟ ଭାବେ ସେ ଆମ ଦେଶରେ ପିକ୍‌ସିଲେସନ୍ କୌଶଳ ପ୍ରୟୋଗ ପୂର୍ବକ ନୂତନ ଶୈଳୀର ଆନିମେସନ୍ ଚଳଚ୍ଚିତ୍ର ପ୍ରସ୍ତୁତ କରି ଅଭୂତପୂର୍ବ ସଫଳତା ହାସଲ କରିଥିଲେ । ପ୍ରଥମ ଥରପାଇଁ ନବ ଉନ୍ମେଷିତ ଷ୍ଟପ୍ ମୋସନ୍ ପ୍ରବିଧି ପ୍ରୟୋଗ କରି ସେ ଚଳଚ୍ଚିତ୍ରକୁ ନୂତନ ଢଙ୍ଗରେ ଉପସ୍ଥାପିତ କରି ଭାରତୀୟ ଚଳଚ୍ଚିତ୍ରକୁ ନୂତନ ରୂପରେଖ ଦେଇଥିଲେ । ଭାରତୀୟ ପ୍ରାମାଣିକ ଚଳଚ୍ଚିତ୍ର ପରମ୍ପରାର ସ୍ୱାଦ ପରିବର୍ତ୍ତନ ସହ ବିକାଶମୁଖୀ ବିବର୍ତ୍ତନ ଆଣି ଏକ ନୂତନ ଧାରା ପ୍ରଚଳନ କରାଇବାରେ ସେ ସମର୍ଥ ହୋଇଥିଲେ ।

ପିକ୍‌ସିଲେସନ୍ ପ୍ରଯୁକ୍ତି ବିଦ୍ୟା ପ୍ରୟୋଗ ପୂର୍ବକ ତାଙ୍କ ଦ୍ୱାରା ନିର୍ମିତ 'ଟ୍ରିପ୍' ଫିଲ୍ମରେ ସୂର୍ଯ୍ୟଙ୍କର ସକାଳରୁ ସନ୍ଧ୍ୟା ପର୍ଯ୍ୟନ୍ତ ଯାତ୍ରା ସହ ମଣିଷର ଦୈନନ୍ଦିନ ଜୀବନ ଓ ତାର ପାରିପାର୍ଶ୍ୱିକ ଅବସ୍ଥାକୁ ପ୍ରତୀକାତ୍ମକ ଭାବେ ପ୍ରଦର୍ଶିତ କରାଯାଇଛି । ସାରା ବିଶ୍ୱରେ ଚହଳ ପକାଇଥିବା ଏହି ଫିଲ୍ମ ବିଶେଷ ପ୍ରଶସ୍ତି ଲାଭ କରିବା ସହ ଦେଶ ପାଇଁ ଆଣିଦେଇଥିଲା ବହୁ ପ୍ରଶଂସା ଓ ସମ୍ମାନ ।

ତାଙ୍କ ନିର୍ମିତ ୫୦ ସେକେଣ୍ଡ ଅବଧିର 'ପର୍ସପେକ୍ଟିଭସ୍' ଚଳଚ୍ଚିତ୍ରଟି ଆନ୍ତର୍ଜାତୀୟ ମଣ୍ଟ୍ରିଲ୍ ଏକ୍ସପୋ-୬୭ରେ ରୌପ୍ୟ ପଦକ ହାସଲ କରି ବିଶ୍ୱ ଦରବାରରେ ଭାରତକୁ ଗୌରବାନ୍ୱିତ କରିଥିଲା । ଏହା ସାରା ବିଶ୍ୱବାସୀଙ୍କୁ ଆହ୍ଲାଦିତ କରବା ସହ ନବ ଜାଗରଣ ସୃଷ୍ଟି କରିଥିଲା । ୧୯୬୮ ମସିହାରେ ନିର୍ମିତ ସାତ ମିନିଟ୍‌ର ବୃତ୍ତଚିତ୍ର, 'ଏକ୍ସପ୍ଲୋର୍‌ର' ୧୯ତମ ମେକ୍ସିକୋ, ଏକାଦଶତମ ଆକୁପୁଲ୍‌କୋ, ଷଷ୍ଠତମ କାରକୋ, ଦ୍ୱାବିଂଶତମ ଲୁକାର୍ନୋ ପ୍ରତିଯୋଗିତା, ଭିଏନା -୬୯ ତଥା ଫିଲ୍ମଫେୟାର୍-୬୮

ଚଳଚ୍ଚିତ୍ର ପ୍ରତିଯୋଗିତା ସମାରୋହରେ ଶ୍ରେଷ୍ଠ ପ୍ରାମାଣିକ ଚଳଚ୍ଚିତ୍ର ରୂପେ ସମ୍ମାନ ଲାଭ କରିଥିଲା । ତାଙ୍କ ଦ୍ୱାରା ୧୯୭୧ ମସିହାରେ ନିର୍ମିତ 'ଟ୍ରିପ୍' ଚିତ୍ରଟି କାଲିଫର୍ଣ୍ଣିଆ, ଜର୍ମାନୀ ତଥା ଅଷ୍ଟ୍ରେଲିଆ ଚଳଚ୍ଚିତ୍ର ଉତ୍ସବରେ ଉଚ୍ଚ ପ୍ରଶଂସିତ ହେବା ସହ ବହୁ ସମ୍ମାନ ଲାଭ କରିଥିଲା । 'ଅଲିମ୍ପିକ୍ ଗେମ୍ସ, ମେକ୍ସିକୋ' ଚଳଚ୍ଚିତ୍ର ତାଙ୍କୁ ସୁନାମ ମଣ୍ଡିତ କରିଥିଲା । ୧୯୭୪ରେ ନିର୍ମିତ ଶୈକ୍ଷଣୀୟ ଚଳଚ୍ଚିତ୍ର 'ଅଟମ୍' ଅନ୍ତର୍ଜାତୀୟ ରୋମ୍ ଆୱାର୍ଡ଼ ପାଇବା ସହ ଜାତୀୟ ପୁରସ୍କାର ମଧ୍ୟ ଲାଭ କରିଥିଲା ।

ଯୋଗ୍ୟତା, ସାମର୍ଥ୍ୟ ଓ ଦକ୍ଷତା ଆଧାରରେ ତାଙ୍କୁ ବହୁ ଚଳଚ୍ଚିତ୍ର ପ୍ରତିଯୋଗିତାର ବିଚାରକ ମଣ୍ଡଳୀରେ ଅନ୍ତର୍ଭୁକ୍ତ କରାଯାଉଥିଲା । ଏପରିକି ୧୯୭୨ ବର୍ଲିନ୍ ଆନ୍ତର୍ଜାତିକ ଚଳଚ୍ଚିତ୍ରର ଅନ୍ୟତମ ଜୁରୀ ରୁପେ ତାଙ୍କୁ ଆମନ୍ତ୍ରିତ କରାଯାଇ ପ୍ରତିଭା ନିରୂପଣ ଦାୟିତ୍ୱ ଅର୍ପଣ କରାଯାଇଥିଲା ।

ପ୍ରାମାଣିକ ଚଳଚ୍ଚିତ୍ର ଦ୍ୱାରା ମାନବୀୟ ରୁଚି, ସାମାଜିକ ଆଭିମୁଖ୍ୟ ତଥା ଅବବୋଧର ପରିବର୍ତ୍ତନ ଧାରାକୁ ଉପସ୍ଥାପିତ କରିବା ସହ ବାସ୍ତବାଶ୍ରିତ ଉପଯୋଗିତାକୁ ସେ ପ୍ରତିପାଦିତ କରି ପାରିଥିଲେ । ତାଙ୍କ ସ୍ୱଳ୍ପ ଅବଧିର ଚିତ୍ରକଥାରେ ଅନାଟକୀୟତାର ଗତି ସହ ସାମାଜିକ ପ୍ରଗତିର ଆବେଗ ବେଶ୍ ପ୍ରତିଫଳିତ ହୋଇଥାଏ । ବ୍ୟଙ୍ଗାତ୍ମକ ଚିତ୍ରକଳ୍ପ ମାଧ୍ୟମରେ ସାମାଜିକ, ଆର୍ଥନୀତିକ, ରାଜନୈତିକ ସତ୍ୟ ଓ ବାସ୍ତବତାକୁ ପ୍ରତିଫଳିତ କରିବାରେ ସେ ବେଶ୍ ସଫଳ । ସାମାଜିକ ଅଙ୍ଗୀକାରବଦ୍ଧତା, ମୌଳିକ ଚିନ୍ତନର ବାର୍ତ୍ତାବହ ମହିମାରେ ସେ ମହିମାନ୍ୱିତ ।

ଏକାନ୍ତ କର୍ମବାଦୀ ପ୍ରମୋଦବାବୁ ବୃତ୍ତିଗତ ନିଷ୍ଠା, ଆନ୍ତରିକତା ସହ ନିଜର କର୍ତ୍ତବ୍ୟ ସମ୍ପାଦନ କରୁଥିଲେ । ଆବଶ୍ୟକ ସ୍ଥଳେ ସେ ନିର୍ଭୀକ ମନୋଭାବ ମଧ୍ୟ ପୋଷଣ କରୁଥିଲେ । ଅର୍ଥ ବା କ୍ଷମତାର ଲୋଭ ତାଙ୍କୁ ଗ୍ରାସ କରିନଥିଲା । ନିଜର ପ୍ରତିଭାକୁ ଭଡ଼ା ସୂତ୍ରରେ ଲଗାଇ ତଥା ନିଜ ବିବେକକୁ ଜଳାଞ୍ଜଳି ଦେଇ କୌଣସି ବ୍ୟାବସାୟିକ ଚଳଚ୍ଚିତ୍ରରେ ସମ୍ପୃକ୍ତି ହେବାକୁ ସେ ଜଘନ୍ୟ ବ୍ୟାପାର ବୋଲି ବିଚାର କରୁଥିଲେ ।

ସେ ଥିଲେ ଅଫୁରନ୍ତ ପ୍ରେରଣାର ଉତ୍ସ । ଚଳଚ୍ଚିତ୍ରର ଗୁଣାତ୍ମକ ମାନ ବୃଦ୍ଧି ପାଇଁ ସେ ସହକର୍ମୀମାନଙ୍କୁ ଭାବୋଦ୍ଦୀପକ ଉପାଦାନ ଯୋଗାଇ ଦେଉଥିଲେ । ଫଳରେ ଯୁବ ସହକର୍ମୀମାନେ ମନଲାଖି ଜାତୀୟତାଭାବସମ୍ପନ୍ନ ଚଳଚ୍ଚିତ୍ର ପ୍ରସ୍ତୁତ କରିବାରେ ସମର୍ଥ ହେଉଥିଲେ । ତାଙ୍କର ପରାମର୍ଶ, ସହାୟତା ଓ ଉପଦେଶ ଗ୍ରହଣ କରି ବହୁ ପ୍ରତିଭାବାନ୍ ଆନିମେଟର, ସିନେମାଟୋଗ୍ରାଫର ଆଦି ବୃତ୍ତିଗତ ସଫଳତା ଲାଭ କରିବା ସହ ପ୍ରସିଦ୍ଧି ଲାଭ କରିଛନ୍ତି । ତାଙ୍କ ଅଧୀନରେ ଥିବା ରାମ ମୋହନ, ଭୀମସେନ ଖୁରାନା ଆଦି ଛ' ଜଣ ଖ୍ୟାତନାମା ଆନିମେଟରଙ୍କୁ ଦିଗ୍‌ଦର୍ଶନ ଦେଇ ନିଜେ ଏକ ମହାଦ୍ରୁମ ପାଲଟି ଯାଇଛନ୍ତି । ତାହା ତାଙ୍କର ସକ୍ରିୟ କର୍ମକୁଶଳତା, ନେତୃତ୍ୱ ଓ ଆତ୍ମବିଶ୍ୱାସର ପରିଚୟ ଦେଇଥାଏ ।

ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ଅବିଚଳିତ ଭାବରେ ଦାୟିତ୍ୱ ସମ୍ପାଦନ କରିବା ତାଙ୍କ କାର୍ଯ୍ୟଶୈଳୀର ଅନ୍ୟତମ ଦିଗ । ଏପରିକି ତାଙ୍କ ଜୀବନର ସର୍ବଶେଷ ଚଳଚ୍ଚିତ୍ର 'ଅଟମ୍' - ତାଙ୍କ ମୃତ୍ୟୁର ସାତ ଦିନ ପରେ ମୁକ୍ତିଲାଭ କରିଥିଲା ।

ସେ ସଦାସର୍ବଦା ନିଜକୁ ପ୍ରଫୁଲ୍ଲ ଓ ସତେଜ ରଖିବାକୁ ଯତ୍ନବାନ୍ ଥିଲେ । ନିଜେ ଖୁସି ରହିବା ସହ ଅନ୍ୟମାନଙ୍କୁ ଖୁସି ବାଣ୍ଟି ସେ ମାନସିକ ତୃପ୍ତି ଅନୁଭବ କରୁଥିଲେ । ସୌମ୍ୟ ଦର୍ଶନ ପ୍ରମୋଦଙ୍କର ବଚନ ଥିଲା ବଡ଼ ମଧୁର, ଆକର୍ଷଣୀୟ । ବ୍ୟକ୍ତିଗତ ସ୍ତରରେ ସେ ଥିଲେ ଅତ୍ୟନ୍ତ ଅମାୟିକ ତଥା ସମ୍ପର୍କପ୍ରିୟ । ସ୍ନେହସିକ୍ତ ମଣିଷ ଭାବେ ସେ ଥିଲେ ବେଶ୍ ଆଦରଣୀୟ ଓ ସମ୍ମାନନୀୟ । ବ୍ୟବହାରରେ ନଥିଲା ନିଜ ଓ ପରର ବିଚାର । ସବୁ ବର୍ଗର, ସବୁ ବୟସର ଲୋକ ତଥା ସହକର୍ମୀଙ୍କୁ ସମ୍ମାନ ଦେବା ସହ ଆତ୍ମୀୟତାର ପରଶରେ ବିମୁଗ୍ଧ କରିବା ଥିଲା ତାଙ୍କର ମହନୀୟ ଗୁଣ । ଯିଏ ତାଙ୍କ ସଂସ୍ପର୍ଶରେ ଥରେ ଆସିଛି, ତାଙ୍କୁ ଭୁଲିବାର ଅବକାଶ ପାଇନାହିଁ ।

ଜଣେ ପ୍ରୟୋଗବାଦୀ ଓ ସୃଜନାତ୍ମକ ପ୍ରାମାଣିକ ଚଳଚ୍ଚିତ୍ର ନିର୍ମାତା ଭାବେ ସେ କୃତବିଦ୍ୟ ଓ ତାଙ୍କର ଚଳଚ୍ଚିତ୍ରାତ୍ମକ ଅଭିବ୍ୟକ୍ତିରେ ରହିଅଛି ସାମାଜିକ ଅଙ୍ଗୀକାରବଦ୍ଧତା । ତାଙ୍କ ସୃଜନଶୀଳ ମାନସପଟରେ ଜାଗରିତ ହେଉଥିବା ନୂଆ ନୂଆ ଚିନ୍ତାଧାରା ସାମାଜିକ ଆବେଗକୁ ପ୍ରାମାଣିକ ଚଳଚ୍ଚିତ୍ର ମାଧ୍ୟମରେ ଲୋକାଭିମୁଖୀ ଢଙ୍ଗରେ ପ୍ରଦର୍ଶନ କରି ସେ ସଫଳତା ଲାଭ କରିଥିଲେ । ଭାରତୀୟ ସଂସ୍କୃତିର ମୂଳତତ୍ତ୍ୱ ତଥା ଭିତ୍ତିଭୂମି ଉପରେ ପାଶ୍ଚାତ୍ୟ ଦୃଷ୍ଟିକୋଣର ପ୍ରଲେପ ବୋଲି ସେ ତାଙ୍କ ନିର୍ମିତ ଚଳଚ୍ଚିତ୍ରର ବିଭିନ୍ନ ବିଭାବକୁ ଶୃଙ୍ଖଳିତ ଭାବେ ପରିପୁଷ୍ଟ କରିଛନ୍ତି । ସ୍ୱଳ୍ପକାଳୀନ ଚଳଚ୍ଚିତ୍ର ହେଲେ ମଧ୍ୟ ସେଥିରେ ପ୍ରତୀକାତ୍ମକ ଭାବେ ସନ୍ନିହିତ ହୋଇଥିବା କଥାବସ୍ତୁ ଓ ତା'ର ସାମାଜିକ ପ୍ରତିବଦ୍ଧତା ସ୍ପଷ୍ଟଭାବେ ପ୍ରତିଭାତ ହୋଇଥାଏ । ତାଙ୍କର ପ୍ରକାଶ ଓ ପ୍ରଦର୍ଶନ ଭଙ୍ଗୀ ବୌଦ୍ଧିକ ହେଲେ ମଧ୍ୟ ସୁବୋଧ୍ୟ ଓ ଶିକ୍ଷଣୀୟ । ସାମାଜିକ ଭାବବସ୍ତୁକୁ ନୂତନତାର ପୁଟ ସହ ନିଖୁଣ ଭାବରେ ପ୍ରଦର୍ଶିତ କରି ପରବର୍ତ୍ତୀ ପିଢ଼ି ପାଇଁ ସେ ଇତିହାସ ସୃଷ୍ଟି କରିଯାଇଛନ୍ତି ।

ବାଲ୍ୟକାଳରୁ ଫଟୋ ଉଠାଇବାକୁ ଏକ ବୌଦ୍ଧିକ ବିଳାସ ଭାବେ ବିଚାର କରୁଥିବା ଏହି ସ୍ରଷ୍ଟା ମାତ୍ର ତେୟାଳିଶ ବର୍ଷ ବୟସରେ ୨୦ ଜାନୁଆରୀ ୧୯୭୫ରେ ଧରାପୃଷ୍ଠରୁ ନିଜକୁ ଅପସାରିତ କରିନେଇଥିଲେ । ଅସମୟରେ କକ୍ଷଚ୍ୟୁତ ହୋଇଯାଇଥିଲା ଏକ ଜାଜ୍ୱଲ୍ୟମାନ ନିହାରିକା, ଅପ୍ରବହମାନ ହୋଇଯାଇଥିଲା ଏକ ଚଳଚଞ୍ଚଳ, ପ୍ରାଣବନ୍ତ, ସର୍ଜନାଶୀଳ ପ୍ରତିଭାଙ୍କର ଉଚ୍ଛଳିତ ଜୀବନସ୍ରୋତ । ଅନେକ ଗବେଷଣାମଣ୍ଡିତ ଆବେଗ, ଆକାଂକ୍ଷା ଛପି ରହିଗଲା ଆନ୍ତର୍ଜାତୀୟ ଖ୍ୟାତିସଂପନ୍ନ ଯଶସ୍ୱୀ ପ୍ରମୋଦଙ୍କ ଉଚ୍ଚ ଅଭିଳାଷର ଦୂର ଦିଗ୍‌ବଳୟରେ ।

ଦେହାବସାନର ଚାରି ଦଶନ୍ଧି ପରେ ୨୦୧୪ ମସିହାରେ ତାଙ୍କ ଅନବଦ୍ୟ କୃତିକୁ ସ୍ୱୀକୃତି ପ୍ରଦାନ ପୂର୍ବକ ଭାରତ ସରକାର ସର୍ବୋତ୍ତମ ଅଭିନବ ଚଳଚ୍ଚିତ୍ର ପାଇଁ **ଅନ୍ତର୍ଜାତୀୟ ପ୍ରମୋଦ ପତି ସ୍ୱତନ୍ତ୍ର ଜୁରୀ ପୁରସ୍କାର** ଘୋଷଣା କରିଛନ୍ତି । ତାହା ସହ ଓଡ଼ିଶା ସରକାର ସର୍ବଶ୍ରେଷ୍ଠ ଚଳଚ୍ଚିତ୍ର ଚିତ୍ରୋତ୍ତୋଳନକାରୀଙ୍କୁ 'ପ୍ରମୋଦ ପତି ସମ୍ମାନ'ରେ ମଧ୍ୟ ସମ୍ମାନିତ କରିଆସୁଛନ୍ତି । ତାଙ୍କ ସମେତ ହାତ ଗଣତି ଭାବେ ଅଳ୍ପ କେତେଜଣ ଭାରତୀୟ ଏହିପରି ଉଦାହରଣୀୟ ଗୌରବରେ ଗୌରବାନ୍ୱିତ ହୋଇଛନ୍ତି ।

ସେ ଜୀବିତ ଥିବାବେଳେ ଦେଶର ବହୁ ଅଗ୍ରଗାମୀ ତଥା ଅଭିଜ୍ଞ ଚଳଚ୍ଚିତ୍ର ନିର୍ମାତା, ନିର୍ଦ୍ଦେଶକମାନେ ତାଙ୍କୁ ଭେଟି ମାର୍ଗ ଦର୍ଶନ ତଥା ପରାମର୍ଶ ପାଇଁ ବିଚାର ଆଲୋଚନା କରୁଥିଲେ । ନୂତନ ପିଢ଼ିର ବହୁ ଚଳଚ୍ଚିତ୍ର ନିର୍ମାତା ତଥା ନିର୍ଦ୍ଦେଶକ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ତାଙ୍କର ସଫଳତା ଓ ସୁନାମରେ ଅନୁପ୍ରେରିତ ହୋଇ ବହୁ ଯୁବକ ଚଳଚ୍ଚିତ୍ର ବିଦ୍ୟାର ବିଭିନ୍ନ ପ୍ରଭାଗରେ ଡିଗ୍ରୀ, ଡିପ୍ଲୋମା ହାସଲକରି ତାହାକୁ ବୃତ୍ତିରୂପେ ଗ୍ରହଣ କରିବାକୁ ଆଗଭର ହୋଇଥିଲେ । ତାଙ୍କର କାର୍ଯ୍ୟଧାରା ଓ ଗୋଷ୍ଠୀ ସମ୍ପୃକ୍ତିକୁ ହୃଦୟଙ୍ଗମ କଲେ ଏବେକାର ବୃତ୍ତଚିତ୍ର ତଥା ପ୍ରାମାଣିକ ଚଳଚ୍ଚିତ୍ର ନିର୍ମାତାମାନେ ଅଶେଷ ପ୍ରେରଣାଭାବ ଓ ଦିଗ୍‌ଦର୍ଶନ ପାଇଥାଆନ୍ତି । ପ୍ରବୀଣ ଚଳଚ୍ଚିତ୍ର ନିର୍ମାତାମାନେ ଏବେବି ତାଙ୍କ ପ୍ରବର୍ତ୍ତିତ ପଦ୍ଧତିର ସ୍ୱାତନ୍ତ୍ର୍ୟକୁ ଉଚ୍ଚ ପ୍ରଶଂସା କରିଥାଆନ୍ତି । ତାଙ୍କ ଦ୍ୱାରା ନିର୍ମିତ ସ୍ୱଳ୍ପ ଅବଧି ଚଳଚ୍ଚିତ୍ରର କଳା କୌଶଳ ଉଣାଧିକେ ପରବର୍ତ୍ତୀ ନିର୍ମାତାମାନଙ୍କ ଦ୍ୱରା ଅନୁସୃତ ହେବାର ଦେଖାଯାଏ । ତାଙ୍କଦ୍ୱାରା ନିର୍ମିତ ବୃତ୍ତଚିତ୍ର, ପ୍ରାମାଣିକ ଚଳଚ୍ଚିତ୍ରଗୁଡ଼ିକର ମହତ୍ତ୍ୱ ଓ ଗୁରୁତ୍ୱ ଏବେ ମଧ୍ୟ ଉପଲବ୍‌ଧି କରିହୁଏ ।

ସାମାଜିକ ଦାୟିତ୍ୱବୋଧକୁ ସୁଚାରୁରୂପେ ନିର୍ବାହ କରୁଥିବା ସ୍ୱର୍ଗତ ପତିଙ୍କର ଅନନ୍ୟ କାର୍ଯ୍ୟଶୈଳୀ ଏବେବି ଅନ୍ୟମାନଙ୍କୁ ବିମୁଗ୍ଧ କରେ । ଚଳଚ୍ଚିତ୍ର ଡିଭିଜନ୍ ପକ୍ଷରୁ ବହୁ ବୃତ୍ତଚିତ୍ର ନିର୍ମିତ ହୋଇଥିଲେ ମଧ୍ୟ ଗଣି ହୋଇଯିବା ପରି ତାଙ୍କର କେତୋଟି ଚଳଚ୍ଚିତ୍ର ଦର୍ଶକମାନଙ୍କ ମନରେ ଏବେ ମଧ୍ୟ ଆସ୍ଥାନ ପାତି ବସିଛି । ସ୍ୱଳ୍ପ କାର୍ଯ୍ୟକାଳ ମଧ୍ୟରେ ସେ ଯେଉଁ ପ୍ରୟୋଗାତ୍ମକ, ପ୍ରଗତିଶୀଳ ଚଳଚ୍ଚିତ୍ର ନିର୍ମାଣ କରିଥିଲେ, ତା'ର ସନ୍ଦର୍ଶନରେ ଚଳଚ୍ଚିତ୍ରପ୍ରେମୀ ଜନମାନସ ଏବେ ମଧ୍ୟ ବିସ୍ମୟାଭିଭୂତ ହୋଇଥାଆନ୍ତି ।

ପ୍ରଚଣ୍ଡ ଧୀଶକ୍ତିସମ୍ପନ୍ନ ସ୍ୱର୍ଗତ ପତି ଥିଲେ ଅଲୌକିକ ପ୍ରତିଭାର ଉତ୍ସ, ଜଣେ ପ୍ରଭାଦୀପ୍ତ ବହୁମୁଖୀ ବ୍ୟକ୍ତିତ୍ୱ । ସେ ଏକାଧାରରେ ଥିଲେ–ନିଷ୍ଠାପର ନବ ପ୍ରବର୍ତ୍ତକ, ବିଜ୍ଞାନବାଦୀ ସାଧକ, ନବସୃଜନର ବାର୍ତ୍ତାବହ ତଥା ସର୍ଜନାତ୍ମକ ସଂଗଠକ । ତାଙ୍କର ନୂତନ ପ୍ରୟୋଗାତ୍ମକ ଚଳଚ୍ଚିତ୍ରମାନ ଏକାନ୍ତ ଯୁଗୋପଯୋଗୀ, ଜନପ୍ରିୟ ଓ ଜନସୁଲଭ ଆଙ୍ଗୀକତା ସହ ପ୍ରତିବେଦିତ । ତାଙ୍କ ନିର୍ମିତ ଚଳଚ୍ଚିତ୍ରର ଆବେଗ ଓ ସାମାଜିକ ପ୍ରୟୋଜନୀୟତା ଏକାନ୍ତ ଆକର୍ଷଣୀୟ ତଥା ଅନୁଭବ୍ୟ ।

ଅବସ୍ଥା ଭେଦରେ ପରିବର୍ତ୍ତନକୁ ପ୍ରୟୋଗରେ ପରିଣତ କରିବାରେ ସେ ଥିଲେ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା । ବୌଦ୍ଧିକତାର ସ୍ୱଷ୍ଟ ତଥା ଦୀର୍ଘସ୍ଥାୟୀ ମୁଦ୍ରାଙ୍କ ମଧ୍ୟ ତାଙ୍କ ନିର୍ମିତ ଚଳଚ୍ଚିତ୍ରରେ ବେଶ୍ ବାରି ହୋଇପଡ଼େ । ତାଙ୍କ ଅନ୍ତର୍ନିହିତ ପ୍ରତିଭାର ପ୍ରତିଫଳନ ଏବେବି ହୃଦୟରେ ଆଲୋଡ଼ନ ସୃଷ୍ଟି କରିବା ସହ ବୌଦ୍ଧିକଭାବ ଉଦ୍ରେକ କରିଥାଏ । ପ୍ରଗତିବାଦୀ ଚେତନାର ବାର୍ତ୍ତାବହ ଏହି ସୃଜନ ସ୍ରଷ୍ଟାଙ୍କ କୃତିରେ ବାସ୍ତବତାର ସ୍ୱର ଉପଲବ୍ଧ ହୋଇଥାଏ । ଉପସ୍ଥାପନରେ ନୂତନତା, ଚିତ୍ର ଗୁମ୍ଫନରେ ମୌଳିକତା ସହ ବିଜ୍ଞାନବାଦୀ ଦୃଷ୍ଟିଭଙ୍ଗୀର ଛାପ ତାଙ୍କ ନିର୍ମିତ ଚଳଚ୍ଚିତ୍ରକୁ ସ୍ୱତନ୍ତ୍ର ପରିଚୟ ଦେଇଥାଏ ।

ତାଙ୍କର ସ୍ୱଳ୍ପକାଳୀନ ସୃଷ୍ଟି ଭାରତୀୟ ଚଳଚ୍ଚିତ୍ର ଧାରାକୁ ନୂତନ ଦିଗନ୍ତର ଆହ୍ୱାନରେ ପ୍ରତିଧ୍ୱନିତ କରିଛି । ସୀମିତ ସାଧନକୁ ଉପଯୋଗ ପୂର୍ବକ ବିଶ୍ୱସ୍ତରୀୟ ପ୍ରାମାଣିକ, ସ୍ୱଳ୍ପ ଅବଧିର ଚଳଚ୍ଚିତ୍ର ନିର୍ମାଣ କରି ସେ ବହୁ ଅନ୍ତର୍ଜାତୀୟ ଉତ୍ସବରେ ଉଚ୍ଚ ପ୍ରଶଂସିତ ହୋଇଥିଲେ । ବିଶ୍ୱ ସମୁଦାୟଙ୍କ ନିକଟରେ ନୂତନ ଚିନ୍ତନ – ଚେତନା ପରିପୁଷ୍ଟିତ ଚଳଚ୍ଚିତ୍ର ଉପସ୍ଥାପିତ କରି ସକାରାତ୍ମକ ସ୍ତୁତି ଗୋଟାଇବା ଥିଲା ତାଙ୍କ ଜୀବନର ସାର୍ଥକତା ।

କେବଳ ଭାରତର ନୁହେଁ– ସମଗ୍ର ବିଶ୍ୱର ଆଧୁନିକ ଚଳଚ୍ଚିତ୍ର ପ୍ରଯୋଜନା କ୍ଷେତ୍ରରେ ନୂତନତାର ପ୍ରୟୋଗ, ପରୀକ୍ଷଣ କରି ସେ ପାଲଟିଯାଇଛନ୍ତି ସ୍ୱଳ୍ପ ଅବଧି ଚଳଚ୍ଚିତ୍ରର ଦିଗ୍‌ଦର୍ଶୀ ଅଗ୍ରନାୟକ । ସ୍ୱତନ୍ତ୍ର ତଥା ନୂତନ ଶୈଳୀର ଚଳଚ୍ଚିତ୍ର ନିର୍ମାଣ କରି ସେ ପାଲଟିଯାଇଛନ୍ତି ଅଭିନବ ଭାରତୀୟ ଚଳଚ୍ଚିତ୍ରର ଜନକ । ସେ ଏକକ, ନିଜସ୍ୱ ତାଙ୍କ ଶୈଳୀ । ସେ ନିଜେହିଁ ନିଜର ଟ୍ରେଡ୍ ମାର୍କ ।

ଦେହାବସାନ ପରେ ଆଜି ତାଙ୍କର ଭୌତିକ କାୟା ନ ଥିଲେବି, ଭାରତୀୟ ଚଳଚ୍ଚିତ୍ର ଇତିହାସରେ ତାଙ୍କ ପ୍ରୟୋଗାତ୍ମକ କୌଶଳ ଛାୟା ହୋଇ ରହିଛି । ଦେହୀ ପ୍ରମୋଦ ପତି ଏବେ ଆମ ଗହଣରେ ନାହାନ୍ତି ମାତ୍ର ବିଦେହ ଗୌରବଦୀପ୍ତ ଅଭିନବ ଭାରତୀୟ ପ୍ରାମାଣିକ ଚଳଚ୍ଚିତ୍ରର ଜନକ ପ୍ରମୋଦ ପତି ଆମ ସହ ସତତ ବିଦ୍ୟମାନ ।

ସଂସ୍କୃତି ଗବେଷକ
ଚଣ୍ଡିମାତା କଲୋନୀ
ଭୁବନେଶ୍ୱର–୧୦



# ଯଥାର୍ଥରେ ଏ ମାଟିର ଗର୍ବ : ବିଜୁ ପଟ୍ଟନାୟକ

ବିମଳା ସିଂହ

ପୃଥିବୀ ପୃଷ୍ଠରେ ଥିବା ଦେଶମାନଙ୍କ ଭିତରେ ଭାରତ ସର୍ବଶ୍ରେଷ୍ଠ ଦେଶ ଭାବରେ ଗଣା ଯାଉଥିବା ବେଳେ ଆମ ରାଜ୍ୟ ଉତ୍କଳ ତା' ମଧ୍ୟରେ ଏକ କମଳ ସଦୃଶ । ଏଭଳି ଉପମା ଦେବା ପଛରେ ରହିଛି ଏ ମାଟିର ଉନ୍ନତ କଳା, ସାହିତ୍ୟ, ଭାସ୍କର୍ଯ୍ୟ, ସଂସ୍କୃତି ଓ ଇତିହାସ । ଆଉ ଏସବୁ କ୍ଷେତ୍ରରେ ପାରଦର୍ଶିତା ଲାଭ କରିଥିବା ବ୍ୟକ୍ତିବିଶେଷଙ୍କର ବିଭିନ୍ନ କ୍ଷେତ୍ରରେ ଏ ମାଟି ପ୍ରତି ରହିଛି ନିଃସ୍ୱାର୍ଥପର ଭାବ, ତ୍ୟାଗ, ଭଲପାଇବା, ନିଷ୍ଠା ଆଉ ବଳିଦାନ । ସଂପ୍ରତି ଆମ ରାଜ୍ୟ ଓଡ଼ିଶା ପ୍ରାକୃତିକ ସଂପଦରେ ଭରପୂର । ଏ ମାଟିର ଆରାଧ୍ୟ ଦେବତା (ଶ୍ରୀଜଗନ୍ନାଥ)ଙ୍କୁ ନେଇ ଆମେ ଗର୍ବିତ ଥିଲାବେଳେ ଏ ମାଟି ମଧ୍ୟ ଗର୍ବ କରେ ତା'ର ଅନେକ ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ ତଥା ରାଜନୈତିକ କ୍ଷେତ୍ରରେ ପାରଦର୍ଶିତା ହାସଲ କରି ଓଡ଼ିଶାର ଯଶ ବାନା ବିଶ୍ୱ ଦୁଆରେ ଉଡ଼ାଇ ଏ ମାଟି ପାଇଁ ଗୌରବ ଆଣିଥିବା ବ୍ୟକ୍ତିବିଶେଷଙ୍କୁ ନେଇ । ସେମାନଙ୍କ ମଧ୍ୟରେ ସମସ୍ତଙ୍କର ଅତି ପ୍ରିୟ 'ବିଜୁବାବୁ' ଭାବରେ ସର୍ବତ୍ର ପରିଚିତ ଜନନେତା ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ, ଯାହାଙ୍କର ସ୍ୱପ୍ନ ଥିଲା ଏକ 'ସମୃଦ୍ଧ ଓଡ଼ିଶା' ।

କଟକର ତୁଳସୀପୁରସ୍ଥିତ 'ଆନନ୍ଦ ଭବନ'ଠାରେ ବିଜୁ ବାବୁଙ୍କର ଜନ୍ମ ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ । ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଏବଂ ମାତା ଆଶାଲତା ଦେବୀ । 'ତୁଳସୀ ଦୁଇ ପତ୍ରରୁ ବାସିଲା ଭଳି' ପିଲାଟି



ଦିନରୁ ବିଜୁବାବୁଙ୍କର ସମସ୍ତ ପ୍ରତିଭା ବଣମଲ୍ଲୀ ଭଳି ଚାରିଆଡ଼େ ମହକିତ ହୋଇ ଭବିଷ୍ୟତରେ ଜଣେ ମହାନ୍ ବ୍ୟକ୍ତି ଭାବେ ଏ ମାଟିରେ ପ୍ରତିଭାତ ହେବ, ଏହା ଜଣାପଡ଼ି ଯାଇଥିଲା । ସେ ଥିଲେ ପିଲାଟି ଦିନରୁ ସାହସୀ, ଉଚ୍ଚ ଆକାଂକ୍ଷା ସମ୍ପନ୍ନ ତଥା ନିର୍ଭୀକ ପୁରୁଷ । ମାତା ଆଶାଲତା ଦେବୀଙ୍କଠାରୁ ପିଲାଟି ଦିନରୁ ଶୁଣିଥିବା ସ୍ୱାଧୀନତା ସଂଗ୍ରାମୀମାନଙ୍କ କାହାଣୀ ତାଙ୍କ ଜୀବନ ଜିଜ୍ଞାସା ଉପରେ

ଗଭୀର ରେଖାପାତ କରିଥିଲା । ତେଣୁ ସେ ନିଜକୁ ଜଣେ ସଚ୍ଚା ଦେଶମାତୃକାର ସେବକ ଭାବରେ ଗଢ଼ି ତୋଳିଥିଲେ ଏବଂ ଦେଶ ପାଇଁ ଇଂରେଜମାନଙ୍କ ବିରୁଦ୍ଧରେ ସେହି ସମୟରେ ଚାଲିଥିବା ସ୍ୱାଧୀନତା ସଂଗ୍ରାମ ରୂପକ ଅନଳରେ ଝାସ ଦେଇ ସଂଗ୍ରାମୀ ସାଜିଥିଲେ ଏବଂ ଜେଲ୍ ଯାଇଥିଲେ ମଧ୍ୟ । ଏଥିପାଇଁ ତାଙ୍କ ହୃଦୟରେ ନଥିଲା ଗ୍ଲାନି ଅବା ଲେଶମାତ୍ର ଦୁଃଖ । ନିଜ ଜନ୍ମମାଟି ପ୍ରତି ଥିବା ଭଲପାଇବାର ସ୍ୱର, ସମସ୍ତ ଆବେଗ, ଆଉ ତାଙ୍କ ଅନନ୍ୟ କୃତିତ୍ୱ ତଥା ଦୁଃସାହସୀ ପଦକ୍ଷେପ ଏହି ଯୁବାବସ୍ଥାରୁ ହିଁ ପ୍ରତିଭାତ ହୋଇଥିଲା । ଏହାର ଉଦାହରଣ ହେଉଛି କଟକରୁ ପେଶାୱାରକୁ କିଛି ବନ୍ଧୁଙ୍କ ସହିତ ସାଇକେଲରେ ଯାତ୍ରା, ଯେଉଁ ସମୟରେ ଗମନାଗମନର ଏତେ ସୁବିଧା ନଥିଲା ଆମ ଦେଶରେ । ତାଙ୍କର ଏହି କୃତିତ୍ୱ ସମସ୍ତଙ୍କୁ ଚକିତ କରି ଦେଇଥିଲା । ରେଭେନ୍ସା କଲିଜିଏଟ୍ ସ୍କୁଲ, ରେଭେନ୍ସା କଲେଜ ଏବଂ ପାଟଣା ବିଶ୍ୱବିଦ୍ୟାଳୟ ଥିଲା ତାଙ୍କ ଶିକ୍ଷାଲାଭ କ୍ଷେତ୍ର । ତାଙ୍କର ଏହି ସାଇକେଲ ଯାତ୍ରା ତାଙ୍କୁ ପରବର୍ତ୍ତୀ ପର୍ଯ୍ୟାୟରେ ବେସାମରିକ ବିମାନ ସେବାରେ ନିଜକୁ ସାମିଲ କରାଇବାର ସ୍ୱପ୍ନ ସାକାର କରାଇଥିଲା । ଏ ସବୁ କ୍ଷେତ୍ରରେ ଥିଲା ତାଙ୍କ ବାପାଙ୍କ ପ୍ରେରଣା । ତେଣୁ ବି.ଏସ୍‌ସି ପଢୁଥିବା ବେଳେ ସେ ଜଣେ ସୁଦକ୍ଷ ବୈମାନିକ ହେବା ଲକ୍ଷ୍ୟରେ ସଂପୃକ୍ତ ବିଷୟରେ ତାଲିମ ନେଇ ୧୯୩୬ ମସିହାରେ ଇଣ୍ଡିଆନ୍ ଏୟାରୱେଜ୍‌ର ଜଣେ ପାଇଲଟ୍ ଭାବରେ ଯୋଗ ଦେଇଥିଲେ । ଜଣେ ପାଇଲଟ୍ ଭାବରେ ସେ ଯେଉଁ କୀର୍ତ୍ତି ରଖିଯାଇଛନ୍ତି, ତାହା ଓଡ଼ିଶାର ଚିତ୍ରକୁ ସମଗ୍ର ବିଶ୍ୱରେ ପ୍ରତିଷ୍ଠା କରାଇବାରେ ଏକ ମାଇଲ୍ ଖୁଣ୍ଟ ହୋଇ ରହିଛି । ଇତିହାସର ଆଇନାରେ ତାଙ୍କର ପାଇଲଟ୍ ଜୀବନ କାହାଣୀକୁ ନେଇ ଓଡ଼ିଶା ଆଜି ପର୍ଯ୍ୟନ୍ତ ଜାତୀୟ ତଥା ଆର୍ନ୍ତଜାତିକ କ୍ଷେତ୍ରରେ ଅନେକ ସୁନାମର ଅଧିକାରୀ ହୋଇ ରହିପାରିଛି ।

ମାତ୍ର ୧୦ ବର୍ଷ ବୟସରୁ ତାଙ୍କର ସ୍ୱାଧୀନ ଚିନ୍ତାଧାରାର ବିକାଶ ହୋଇଥିଲା ଗାନ୍ଧିଜୀଙ୍କ କଟକର ସ୍ୱରାଜ୍ୟ ଆଶ୍ରମକୁ ଆଗମନ କାଳରୁ । ପୋଲିସର ଲାଠି ମାଡ଼ ଖାଇ ମଧ୍ୟ ସେ ଜନଗହଳି ଭିତରେ ଗାନ୍ଧିଜୀଙ୍କ ସହିତ କରମର୍ଦ୍ଦନ କରିବାକୁ ଧାଇଁ ଯାଇଥିଲେ ଏବଂ ତାଙ୍କର ଏହି ସ୍ୱଦେଶୀ ଭାବ ତାଙ୍କୁ ଜଣେ ଭବିଷ୍ୟତର ଜନନାୟକ ଭାବରେ ଗଢ଼ି ତୋଳିଥିଲା । ସେ ପରବର୍ତ୍ତୀ ପର୍ଯ୍ୟାୟରେ ରାଜନୀତି କ୍ଷେତ୍ରରେ ପ୍ରବେଶ କରି ୧୯୬୧ ମସିହାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାର ଗୌରବ ଅର୍ଜନ କରିଥିଲେ । ଜଣେ ଯୁବ ମୁଖ୍ୟମନ୍ତ୍ରୀ ଭାବରେ ସେ ଯେଉଁ ସବୁ ସ୍ୱପ୍ନ ଦେଖିଥିଲେ ତା'ର ପଟାନ୍ତର ନାହିଁ । ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ସେ ଥିଲେ ବଦ୍ଧପରିକର । ପ୍ରାକୃତିକ ସଂପଦରେ ଭରା ତାଙ୍କ ଜନ୍ମମାଟିକୁ ସେ ଚାହିଁଥିଲେ ବିଶ୍ୱ ଦରବାରରେ ଏକ ବିକାଶଶୀଳ ରାଜ୍ୟ ରୂପେ ପ୍ରତିଷ୍ଠିତ କରାଇବା ପାଇଁ । ତେଣୁ ତାଙ୍କ ସ୍ୱପ୍ନକୁ ସାକାର କରିବା ପାଇଁ ତାଙ୍କ ଚେଷ୍ଟାରେ ପ୍ରତିଷ୍ଠା ହୋଇଥିଲା ପାରାଦ୍ୱୀପ ବନ୍ଦର । ନେହେରୁଙ୍କର ଅତି ପ୍ରିୟ ପାଇଲଟ୍ ଭାବରେ ତାଙ୍କ ନିର୍ଦ୍ଦେଶରେ ସେ ସୁଦୂର ଇଣ୍ଡୋନେସିଆକୁ ଉଡ଼ାଜାହାଜ ଚଳାଇ ତତ୍‌କାଳୀନ ରାଷ୍ଟ୍ରପତି ସୁକର୍ଣ୍ଣଙ୍କୁ ଯେଉଁଭଳି ଭାବରେ ଆକାଶପଥରେ ନେଇ ଆସିଥିଲେ ଆଉ ସେଇଥିପାଇଁ ଏକମାତ୍ର ଓଡ଼ିଆ ଭାବରେ ସେ ଲାଭ କରିଥିଲେ ଇଣ୍ଡୋନେସିଆର ସର୍ବୋଚ୍ଚ ସମ୍ମାନ 'ଭୂମିପୁତ୍ର' ଆଖ୍ୟା । ସେହି ନେହେରୁଙ୍କ ଦ୍ୱାରା ପାରାଦ୍ୱୀପ ବନ୍ଦରର ଶିଳାନ୍ୟାସ କରାଇଥିଲେ । ଆଜି ତାଙ୍କର ଏଇ ସ୍ୱପ୍ନର ପାରାଦ୍ୱୀପ ଆର୍ନ୍ତଜାତିକ କ୍ଷେତ୍ରରେ ଏକ ପ୍ରମୁଖ ବନ୍ଦରର ମାନ୍ୟତା ପାଇ ପାରିଛି । କିନ୍ତୁ ନେହେରୁଙ୍କ କଥାରେ ଇଣ୍ଡୋନେସିଆ ଯିବା ପଛରେ ତାଙ୍କ ମନର କଥା ଥିଲା, ଆମ ଉତ୍କଳୀୟ ସାଧବମାନଙ୍କର ଜାଭା, ସୁମାତ୍ରା, ବାଲି, ଇଣ୍ଡୋନେସିଆ ଆଦି ବିଭିନ୍ନ ଅଞ୍ଚଳକୁ ବୋଇତରେ ବାଣିଜ୍ୟ କାରବାର କରିବା ପଛରେ ଥିବା କାହାଣୀକୁ ଉଜ୍ଜୀବିତ କରିବା ।

ଏତଦ୍‌ବ୍ୟତୀତ ତିନି ତିନିଥର କେନ୍ଦ୍ରାପଡ଼ାରୁ ବିଧାନସଭାକୁ ନିର୍ବାଚିତ ହୋଇ ମଧ୍ୟ ତାଙ୍କ ମନରେ ନଥିଲା ଲେଶମାତ୍ର ଗର୍ବ । ପରନ୍ତୁ ତତ୍‌କାଳୀନ ରାଜନୈତିକ ପାଣିପାଗକୁ ନେଇ ସେ ବିଭିନ୍ନ ସମୟରେ ବିଭିନ୍ନ ଦଳରେ ଯୋଗ ଦେବା ସହ ନୂଆ ଦଳ ଗଠନ କରିଥିଲେ ମଧ୍ୟ

ତାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା ଓଡ଼ିଶାର ପ୍ରଗତି । ତେଣୁ ଓଡ଼ିଶାକୁ ସ୍ୱାବଲମ୍ବୀ କରିବାକୁ ଯାଇ ସେ ଗଢ଼ିଥିଲେ ଚୌଦ୍ୱାରଠାରେ କଳିଙ୍ଗ ଟ୍ୟୁବ୍‌ସ, ଲୁଗାକଳ, ରାଉରକେଲା ଆଞ୍ଚଳିକ ଇଂଜିନିୟରିଂ କଲେଜ, ସୁନାବେଡା ମିଗ୍ ବିମାନ କାରଖାନା, ବୁର୍ଲା ଇଂଜିନିୟରିଂ କଲେଜ, ନାଲ୍‌କୋ ଆଲୁମିନିୟମ ପ୍ରକଳ୍ପ, ଭୁବନେଶ୍ୱରରେ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ବରଗଡ଼ ସିମେଣ୍ଟ କାରଖାନା, ଚାରବାଟିଆ ବିମାନ ଅବତରଣ କେନ୍ଦ୍ର, ବ୍ରହ୍ମପୁର ଏବଂ ସମ୍ବଲପୁରର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା (ଭଞ୍ଜ ବିହାର ଏବଂ ଜ୍ୟୋତି ବିହାର)। ତାଙ୍କ ଜୀବନର ସବୁଠାରୁ ବଡ଼ ସଫଳତା ଥିଲା ୧୩ଟି ଜିଲ୍ଲାକୁ ନେଇ ଗଠିତ ତତ୍‌କାଳୀନ ଓଡ଼ିଶାକୁ ୩୦ଟି ଜିଲ୍ଲାରେ ପୁନର୍ଗଠିତ କରିବା ଏବଂ ଏକା ସାଙ୍ଗରେ ଶିକ୍ଷା, ଶିକ୍ଷାନୁଷ୍ଠାନ ଏବଂ ଶିକ୍ଷକମାନଙ୍କ ପ୍ରତି ଥିବା ଅହେତୁକ ଭଲ ପାଇବା ଏବଂ ଶିକ୍ଷାର ମାନ ବୃଦ୍ଧି କରିବା ଲକ୍ଷ୍ୟରେ ୩୦୦୦ରୁ ଊର୍ଦ୍ଧ୍ୱ ବିଦ୍ୟାଳୟକୁ ସରକାରୀ ବିଦ୍ୟାଳୟର ମାନ୍ୟତା ଦେବା । ଓଡ଼ିଶା ରାଜନୀତି କ୍ଷେତ୍ରରେ ଯେତେସବୁ ମୁଖ୍ୟମନ୍ତ୍ରୀ ଆସିଛନ୍ତି ତାଙ୍କପରି ନିର୍ଭୀକ ତଥା ସାହସିକ ପଦକ୍ଷେପ ଆଜି ପର୍ଯ୍ୟନ୍ତ କେହି ନେଇ ନାହାନ୍ତି । କୌଣସି କ୍ଷେତ୍ରରେ ମୁଣ୍ଡ ନୁଆଁଇବା ନ ଥିଲା ତାଙ୍କର ଜୀବନର ଧର୍ମ । ସାହସର ସହିତ ସବୁ ପରିସ୍ଥିତିର ମୁକାବିଲା କରିବା, ପଦ ପଦବୀର ମୋହ ନ ରଖିବା ଥିଲା ତାଙ୍କ ଜୀବନର ଅଭୁଲା ଦିଗ । ଓଡ଼ିଶାବାସୀଙ୍କ ସର୍ବାଙ୍ଗୀନ ଉନ୍ନତି ପାଇଁ ସେ ଦେଖୁଥିଲେ ସଦାସର୍ବଦା ସ୍ୱପ୍ନ । ଗରିବ ଚାଷୀ ମୂଲିଆର ସେ ଥିଲେ ଯଥାର୍ଥ ବନ୍ଧୁ । ଅନେକ ରାଜନୈତିକ ଝଡ଼ର ସେ ସାମ୍ନା କରିଥିଲେ  ମଧ୍ୟ କେବେ ହାରିବା ଶିଖି ନ ଥିଲେ । ତାଙ୍କ ପାଖରେ ସୁଖ ଆଉ ଦୁଃଖ, ହାରିବା ଜିତିବା ଏ ସବୁ ଥିଲା ଏକାପରି । ଭୀରୁତା ତାଙ୍କୁ ସ୍ପର୍ଶ କରିନଥିଲା । କେନ୍ଦ୍ରମନ୍ତ୍ରୀ ଭାବରେ ହେଉ ଅବା ରାଜ୍ୟ ମୁଖ୍ୟମନ୍ତ୍ରୀ ଭାବରେ ହେଉ ତାଙ୍କୁ ଗର୍ବ ବା ଅହଂକାର କେବେବି ସ୍ପର୍ଶ କରି ନଥିଲା । କର୍ମପ୍ରବଣ ଏହି ମହାନ୍ ଜନନେତାଙ୍କର ମୃତ୍ୟୁ ଥିଲା ଏ ଜାତି ପାଇଁ ଏକ ଅପୂରଣୀୟ କ୍ଷତି। ଏହିଭଳି ଜଣେ ଦୂରଦୃଷ୍ଟିସମ୍ପନ୍ନ ବିଚକ୍ଷଣ ବ୍ୟକ୍ତିତ୍ୱ ଦେଶ ସେବା ପାଇଁ ଯଥାର୍ଥରେ ଥିଲେ ''ଝଡ଼ର ଇଗଲ୍'' ବୋଲି ପୂର୍ବତନ ଦିବଂଗତ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ କହିଥିଲେ ।

ପ୍ଲଟ୍ ନଂ– ୧୮୬୮, ଭକ୍ତମଧୁ ନଗର
ଗଣ୍ଡମୁଣ୍ଡା, ଖଣ୍ଡଗିରି, ଭୁବନେଶ୍ୱର–୩୦



# ଓଡ଼ିଶା ବିଧାନସଭାରେ ମାନ୍ୟବର ରାଜ୍ୟପାଳ ପ୍ରଫେସର ଗଣେଶୀ ଲାଲଙ୍କ ଅଭିଭାଷଣ

ମାନ୍ୟବର ବାଚସ୍ପତି ମହୋଦୟ ଏବଂ ମାନ୍ୟବର ସଦସ୍ୟବୃନ୍ଦ,

ମୁଁ ଆପଣମାନଙ୍କୁ ଷୋଡ଼ଶ ଓଡ଼ିଶା ବିଧାନସଭାର ଷଷ୍ଠ ଅଧିବେଶନକୁ ସ୍ୱାଗତ ଜଣାଇ ଅତ୍ୟନ୍ତ ଆନନ୍ଦିତ । ଏହି ଅବସରରେ ଏହି ପବିତ୍ର ଗୃହର ସମସ୍ତ ମାନ୍ୟବର ସଦସ୍ୟବୃନ୍ଦ ତଥା ଓଡ଼ିଶାର ଜନସାଧାରଣଙ୍କୁ ମୁଁ ନୂତନ ବର୍ଷର ହାର୍ଦ୍ଦିକ ଶୁଭେଚ୍ଛା ଜଣାଉଛି ।

୨. ଏହି ପବିତ୍ର ଗୃହ ଭାରତର ପୂର୍ବତନ ରାଷ୍ଟ୍ରପତି ସ୍ୱର୍ଗତ ଡକ୍ଟର ପ୍ରଣବ କୁମାର ମୁଖାର୍ଜୀ, ରାଜ୍ୟର ପୂର୍ବତନ ପ୍ରଥମ ମହିଳା ସ୍ୱର୍ଗତ ସୁଶିଳା ଦେବୀ, ପୂର୍ବତନ ବାଚସ୍ପତି ସ୍ୱର୍ଗତ ଶରତ କୁମାର କର, ପୂର୍ବତନ ମନ୍ତ୍ରୀ ସ୍ୱର୍ଗତ ହର ପ୍ରସାଦ ମହାପାତ୍ର, ସ୍ୱର୍ଗତ ସହରାଇ ଓରାମ, ସ୍ୱର୍ଗତ ସନାତନ ବିଶି ଏବଂ ସ୍ୱର୍ଗତ ଶେକ୍ ମତଲୁବ ଅଲ୍ଲୀ, ପୂର୍ବତନ ସରକାରୀ ମୁଖ୍ୟ ସଚେତକ ସ୍ୱର୍ଗତ ଗୁରୁପଦ ନନ୍ଦ, ଆସୀନ ସଦସ୍ୟ ସ୍ୱର୍ଗତ ପ୍ରଦୀପ ମହାରଥୀ, ସ୍ୱର୍ଗତ ମଦନ ମୋହନ ଦତ୍ତ ଏବଂ ସ୍ୱର୍ଗତ ବିଷ୍ଣୁ ଚରଣ ଦାସ ଏହି ପବିତ୍ର ଗୃହର ପୂର୍ବତନ ସଦସ୍ୟ ସ୍ୱର୍ଗତ ପ୍ରହଲ୍ଲାଦ ବେହେରା, ସ୍ୱର୍ଗତ ବୀର ସିପକା, ସ୍ୱର୍ଗତ ବିଜୟ କୁମାର ନାୟକ, ସ୍ୱର୍ଗତ ପୁରୁଷୋତ୍ତମ ସେଠୀ, ସ୍ୱର୍ଗତ ଅର୍ଜ୍ଜୁନ ଚରଣ ସେଠୀ, ସ୍ୱର୍ଗତ ନେଲସନ ସୋରେଙ୍ଗ, ସ୍ୱର୍ଗତ ରାମମୂର୍ତ୍ତି ମୁଟିକା, ସ୍ୱର୍ଗତ ରବୀନ୍ଦ୍ରନାଥ ଭୋଇ, ସ୍ୱର୍ଗତ ଅଭିମନ୍ୟୁ କୁମାର, ସ୍ୱର୍ଗତ ଚିନ୍ତାମଣି ଜେନା ଏବଂ ସ୍ୱର୍ଗତ କାର୍ତ୍ତିକେଶ୍ୱର ପାତ୍ର, ଭାରତୀୟ ସେନାର ପୂର୍ବତନ ସିପାହୀ ସ୍ୱର୍ଗତ ଚନ୍ଦ୍ରକାନ୍ତ ପ୍ରଧାନ, ପୂର୍ବତନ ନାଏବ ସୁବେଦାର ସ୍ୱର୍ଗତ ନୁଦୁରାମ ସୋରେନ, ଓଡ଼ିଶା ଆରକ୍ଷୀ ବାହିନୀର ପୂର୍ବତନ ଏସ୍‌ଓଜି କମାଣ୍ଡୋ ସ୍ୱର୍ଗତ ସୁଧିର କୁମାର ଟୁଡୁ, ପୂର୍ବତନ ଏସ୍‌ଓଜି କମାଣ୍ଡୋ ସ୍ୱର୍ଗତ ଦେବାଶିଷ ସେଠୀ, ପୂର୍ବତନ ଗୃହରକ୍ଷୀ ସ୍ୱର୍ଗତ ବନଓ୍ୱାସୀ ମହାରଣାଙ୍କ ଦୁଃଖଦ ବିୟୋଗରେ ଗଭୀର ଶୋକ ପ୍ରକାଶ କରିଛି ।

୩. ମୁଁ ମାନ୍ୟବର ସଦସ୍ୟଗଣଙ୍କୁ ଏହି ଗୃହର ପୂର୍ବତନ ସଦସ୍ୟ ସ୍ୱର୍ଗତ ସୁରେନ୍ଦ୍ରନାଥ ମିଶ୍ର ଏବଂ ଆସାମ ରାଇଫଲ୍‌ସର ପୂର୍ବତନ ଓ୍ୱାରଣ୍ଟ ଅଫିସର (ଜିଡି) ସ୍ୱର୍ଗତ ବିଭୁତି ଭୂଷଣ ନାୟକ, ଓ୍ୱେଷ୍ଟର୍ଣ୍ଣ କମାଣ୍ଡ, ୧୦୬ ଇଂଜିନିୟର ରେଜିମେଣ୍ଟର ପୂର୍ବତନ ଏସ୍‌ପିଆର୍ / ଇବିଆର୍ ସ୍ୱର୍ଗତ ଯଜ୍ଞ ନାରାୟଣ କର, ୧୪ ବିହାର ରେଜିମେଣ୍ଟର ପୂର୍ବତନ ସୁବେଦାର ସ୍ୱର୍ଗତ କୃଷ୍ଣ ଚନ୍ଦ୍ର ପଣ୍ଡା ଏବଂ ରାଜ୍ୟରେ କରୋନା ସଂକ୍ରମଣ ଭଳି କଠିନ ପରିସ୍ଥିତିର ମୁକାବିଲା ସମୟରେ ରାଜ୍ୟବାସୀଙ୍କ ସେବାରେ ନିୟୋଜିତ ହୋଇ ପ୍ରାଣବଳୀ ଦେଇଥିବା ସମସ୍ତ କରୋନା ଯୋଦ୍ଧାମାନଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ନିମନ୍ତେ ମୋ ସହ ଯୋଗଦେବା ପାଇଁ ନିବେଦନ କରୁଛି ।

୪. ବିଗତ ଏକ ବର୍ଷଧରି ସମଗ୍ର ବିଶ୍ୱ ଏକ ଅଭୂତପୂର୍ବ ସଙ୍କଟର ସମ୍ମୁଖୀନ ହୋଇଆସୁଛି । କୋଭିଡ–୧୯ ମହାମାରୀ ପୃଥିବୀରେ ହଇଚଇ ସୃଷ୍ଟିକରି ଜନସ୍ୱାସ୍ଥ୍ୟ ବ୍ୟବସ୍ଥା, ଦେଶର ଅର୍ଥନୀତିକୁ ବିପର୍ଯ୍ୟସ୍ତ କରିବା ସହ ଜନସାଧାରଣଙ୍କ ସାମାଜିକ ଓ ମାନସିକ ସ୍ଥିତିକୁ ବ୍ୟାହତ କରିଛି ।

୫. ମୋ ସରକାର ଏହି ମହାମାରୀର ଭୟାବହତା ସଂପର୍କରେ ସଠିକ୍ ପ୍ରାକ୍-ଆକଳନ କରିପାରିଥିଲେ ଏବଂ ତଦନୁଯାୟୀ ଏଥିପାଇଁ ଦୂରଦୃଷ୍ଟି ସମ୍ପନ୍ନ ପୂର୍ବ ପ୍ରସ୍ତୁତି ପୂର୍ବକ ଏହାର ସଂକ୍ରମଣ ପରିଲକ୍ଷିତ ହେବା ମାତ୍ରେ ଦୃଢ଼ତାର ସହିତ ଏହାର ମୁକାବିଲା କରିଥିଲେ । ଏପରିକି ରାଜ୍ୟରେ ଗୋଟିଏ ବି ସଂକ୍ରମଣ ଘଟିବା ପୂର୍ବରୁ, ୨୦୨୦ ମସିହା ମାର୍ଚ୍ଚ ୧୩ ତାରିଖରେ ଏହି ମହାମାରୀକୁ ଏକ ରାଜ୍ୟ ବିପର୍ଯ୍ୟୟ ରୂପେ ଘୋଷଣା କରି ଆଗତୁରା ଶିକ୍ଷାନୁଷ୍ଠାନଗୁଡିକ ବନ୍ଦ କରିବା ସହ ସାମାଜିକ ତଥା ଧର୍ମୀୟ ଏକତ୍ରୀକରଣ ଉପରେ କଡା ପ୍ରତିବନ୍ଧକ ଲଗାଇଥିଲେ । ଦେଶରେ ତାଲାବନ୍ଦ ଘୋଷଣା ହେବା ପୂର୍ବରୁ ମୋ ସରକାର ୨୦୨୦ ମସିହା ମାର୍ଚ୍ଚ ୨୧ ତାରିଖରେ ରାଜ୍ୟରେ ତାଲାବନ୍ଦ ଲାଗୁ କରାଇଥିଲେ । ସାଧାରଣ ଜୀବନଯାତ୍ରାକୁ ବିଶେଷ ଭାବରେ ବ୍ୟାହତ ହେବାକୁ ନ ଦେଇ ଏହି ତାଲାବନ୍ଦ ବ୍ୟବସ୍ଥା ସୁରୁଖୁରୁରେ ପରିଚାଳିତ ହୋଇଥିଲା । ଅବିଚାରିତ ଭାବେ ପୁଲିସ ବଳ ପ୍ରୟୋଗ ନ କରାଯାଇ ଯଥେଷ୍ଟ ସମ୍ବେଦନଶୀଳତାର ସହିତ ଆରକ୍ଷୀ ବାହିନୀ ଦ୍ୱାରା କଟକଣା ଲାଗୁ କରାଯାଇଥିଲା । ଅତ୍ୟାବଶ୍ୟକ ସାମଗ୍ରୀର ଯୋଗାଣ ଉତ୍ପତ୍ତି ସ୍ଥଳରୁ ଉପଭୋକ୍ତା ପର୍ଯ୍ୟନ୍ତ ଯଥେଷ୍ଟ ସତର୍କତାର ସହିତ ପରିଚାଳନା କରାଯାଇଥିଲା ।

୬. କଠୋର ତାଲାବନ୍ଦ ବ୍ୟବସ୍ଥା ଗରିବ ଜନସାଧାରଣଙ୍କର ଜୀବନ ଜୀବିକାକୁ ପ୍ରଭାବିତ କରିବା ସମ୍ପର୍କରେ ମୋ ସରକାର ଅବଶ୍ୟ ସଚେତନ ଥିଲେ । ଏଣୁ, ଆଗୁଆ ଭତ୍ତା ବଣ୍ଟନ, ସାଧାରଣ ବଣ୍ଟନ ବ୍ୟବସ୍ଥାରେ ଖାଦ୍ୟ ସାମଗ୍ରୀ ଯୋଗାଣ, ମାଗଣା ରନ୍ଧାଖାଦ୍ୟ ବ୍ୟବସ୍ଥା ସହିତ ବିଶେଷ ଅସୁବିଧାରେ ଥିବା ଲୋକଙ୍କ ପାଇଁ ସ୍ୱତନ୍ତ୍ର ସହାୟତା ଭଳି ସଂଖ୍ୟାଧିକ ସାମାଜିକ ସୁରକ୍ଷା ପଦକ୍ଷେପ ଗ୍ରହଣ କରିଥିଲେ ।

୭. ରାଜ୍ୟର ପଂଚାୟତିରାଜ ଅନୁଷ୍ଠାନ ତଥା ଜନସାଧାରଣଙ୍କ ବିନା ସହଯୋଗରେ ଏଭଳି ଏକ ବିଶ୍ୱ ମହାମାରୀ ନିୟନ୍ତ୍ରଣ କରାଯାଇପାରିବ ନାହିଁ । ନିଜ ପଞ୍ଚାୟତ ସୀମା ମଧ୍ୟରେ ବିପର୍ଯ୍ୟୟ ପରିଚାଳନା ଅଧିନିୟମ ଅନୁଯାୟୀ କଟକଣା ଲାଗୁ କରିବା ସହିତ ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ନିମନ୍ତେ ସରପଞ୍ଚଙ୍କୁ କ୍ଷମତା ଅର୍ପଣ କରାଯାଇଥିଲା । ଆମ ରାଜ୍ୟର ସମସ୍ତ ସରପଞ୍ଚ କୋଭିଡ ପରିଚାଳନାରେ ସକ୍ରିୟ ଅଂଶଗ୍ରହଣ କରିଥିଲେ ।

୮. ମହାମାରୀ ପରିସ୍ଥିତି ସମୟରେ ପ୍ରବାସୀ ଓଡିଆ ଶ୍ରମିକମାନେ କିଭଳି ବିନା ଅସୁବିଧାରେ ନିଜ ରାଜ୍ୟକୁ ଫେରିଆସିବେ, ତାହା ମୋ ସରକାର ସୁନିଶ୍ଚିତ କରିଥିଲେ । ଓଡିଶାରେ ଥିବା ପ୍ରବାସୀ ଶ୍ରମିକମାନେ ଯେପରି ନିଜ ରାଜ୍ୟକୁ ସୁବିଧାରେ ଫେରିପାରିବେ ତାହାର ସୁ ବନ୍ଦୋବସ୍ତ ମଧ୍ୟ ମୋ ସରକାରଙ୍କ ଦ୍ୱାରା କରାଯାଇଥିଲା ।

୯. ମୋ ସରକାର କୋଭିଡ୍ ପରୀକ୍ଷାଠାରୁ ଆରମ୍ଭ କରି ଗୁରୁତର ସଂକ୍ରମିତଙ୍କ ଚିକିତ୍ସା ପର୍ଯ୍ୟନ୍ତ ସମସ୍ତ ବ୍ୟବସ୍ଥା କରିବା ସହିତ ଡାକ୍ତରଖାନାରୁ ସୁସ୍ଥ ହୋଇ ଘରକୁ ଫେରିବା ପର୍ଯ୍ୟନ୍ତ ସବୁ ସୁବିଧା ଜନସାଧାରଣଙ୍କ ପାଇଁ ବିନା ଖର୍ଚ୍ଚରେ ସୁନିଶ୍ଚିତ କରିଥିଲେ । ଏହା ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ କୋଭିଡ ସଂକ୍ରମଣରେ ମୃତ୍ୟୁହାର ସହିତ ରାଜ୍ୟରେ ତୁଳନାତ୍ମକ ଭାବରେ ମୃତ୍ୟୁହାର କମ୍ ହେବାର ପ୍ରମୁଖ କାରଣ ଅଟେ ।

୧୦. କୋଭିଡ ଯୋଦ୍ଧାମାନଙ୍କୁ ଉତ୍ସାହିତ ତଥା ସମ୍ମାନିତ କରିବା ସହିତ କୋଭିଡ୍ ମହାମାରୀ ବିରୁଦ୍ଧରେ ସଂଗ୍ରାମ କରିବା ନିମନ୍ତେ ଏକତ୍ରିତ ହେବା ପାଇଁ ମୋ ସରକାର 'ବନ୍ଦେ ଉତ୍କଳ ଜନନୀ' ସଂଗୀତ ସମୂହ ଗାନ ସମାରୋହ ଆୟୋଜନ କରି ବିଶ୍ୱବ୍ୟାପୀ ଓଡିଆମାନଙ୍କୁ ଏକତ୍ରିତ କରିପାରିଥିଲେ ।

୧୧. ଜନ ସହଯୋଗରେ କୋଭିଡ ପରିଚାଳନା ସହିତ ମୋ ସରକାର ସ୍ୱତନ୍ତ୍ର କୋଭିଡ ଚିକିତ୍ସାଳୟ, ଟେମ୍ପୋରାରୀ ମେଡ଼ିକାଲ ସେଣ୍ଟର, କୋଭିଡ କେୟାର ସେଣ୍ଟର, କୋଭିଡ ଗୃହ ଭଳି ବିସ୍ତୃତ କୋଭିଡ ଚିକିତ୍ସା ଭିତ୍ତିଭୂମି ସହ ପଂଚାୟତିରାଜ ଜନପ୍ରତିନିଧି ଏବଂ ସ୍ୱୟଂ ସହାୟକ ଗୋଷ୍ଠୀର ମହିଳାମାନଙ୍କ ସହାୟତାରେ ବ୍ୟାପକ ଜନ ସଚେତନତା କାର୍ଯ୍ୟକ୍ରମ

ସୁନିଶ୍ଚିତ କରିଥିଲେ । ମୁଁ ଅତ୍ୟନ୍ତ ଆନନ୍ଦିତ ଯେ, ସମସ୍ତଙ୍କର ନିଃସ୍ୱାର୍ଥପର ସହଯୋଗ ଯୋଗୁଁ ଓଡିଶା ଆଜି ମହାମାରୀ ପରିସ୍ଥିତିକୁ ସଫଳତାର ସହ ନିୟନ୍ତ୍ରଣ କରିପାରିଛି । କୋଭିଡ ପରିଚାଳନାର ପ୍ରତ୍ୟେକ କ୍ଷେତ୍ରରେ ରାଜ୍ୟ ଉଚ୍ଚକୋଟୀର ପ୍ରଦର୍ଶନ କରି ଏକାଧିକ ଜାତୀୟ ଓ ଅନ୍ତର୍ଜାତୀୟ ସଂଗଠନ ଦ୍ୱାରା ନିଜର ଦୂରଦୃଷ୍ଟି ଏବଂ ଜନଜୀବନକୁ ବିପର୍ଯ୍ୟସ୍ତ ନ କରି ସଫଳତାର ସହିତ ସ୍ଥିତିକୁ ନିୟନ୍ତ୍ରଣ କରିପାରିଥିବା ଯୋଗୁଁ ଉଚ୍ଚ ପ୍ରଶଂସିତ ହୋଇଛି ।

୧୨. 'ସୁସ୍ଥ ଓଡିଶା, ସୁଖୀ ଓଡିଶା' ମୋ ସରକାରଙ୍କ ଲକ୍ଷ୍ୟ । ଆମ ପାଇଁ ପ୍ରତ୍ୟେକ ଜୀବନ ମୂଲ୍ୟବାନ । ଏହି ଦିଗରେ କାର୍ଯ୍ୟ କରିବା ସହ ସମସ୍ତଙ୍କ ପାଇଁ ସମାନ, ସୁଲଭ ତଥା ଗୁଣାତ୍ମକ ମାନର ସ୍ୱାସ୍ଥ୍ୟସେବା ଯୋଗାଇଦେବା ଲକ୍ଷ୍ୟ ନେଇ ମୋ ସରକାର କାର୍ଯ୍ୟ କରୁଛନ୍ତି । ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନାରେ ସମସ୍ତ ସରକାରୀ ସ୍ୱାସ୍ଥ୍ୟ କେନ୍ଦ୍ର ତଥା ତାଲିକାଭୁକ୍ତ ସମସ୍ତ ଘରୋଇ ଚିକିତ୍ସାଳୟରେ ଏବେ ବିନା ଖର୍ଚ୍ଚରେ ଗୁଣାତ୍ମକ ଚିକିତ୍ସା ସୁବିଧା ନିଶ୍ଚିତ କରାଯାଇଛି । ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନାରେ ତାଲିକାଭୁକ୍ତ ସମସ୍ତ ଘରୋଇ ଚିକିତ୍ସାଳୟରେ ଅର୍ଥନୈତିକ ଦୁର୍ବଳ ଶ୍ରେଣୀର ପରିବାର ପାଇଁ ବାର୍ଷିକ ୫ ଲକ୍ଷ ଏବଂ ହିତାଧିକାରୀ ପରିବାରର ମହିଳା ସଦସ୍ୟାମାନଙ୍କ ପାଇଁ ୧୦ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଚିକିତ୍ସା ସୁବିଧା ରାଜ୍ୟର ୭୦ ଲକ୍ଷରୁ ଊର୍ଦ୍ଧ୍ୱ ପରିବାରକୁ ମାଗଣାରେ ଯୋଗାଇ ଦିଆଯାଉଛି । 'ମୋ ସରକାର' କାର୍ଯ୍ୟକ୍ରମରେ ଜନସାଧାରଣଙ୍କଠାରୁ ମତାମତ ସଂଗ୍ରହ ଆଧାରରେ ସ୍ୱାସ୍ଥ୍ୟ ସେବା ପ୍ରଦାନ କ୍ଷେତ୍ରରେ ନିୟୋଜିତ ସମସ୍ତ କର୍ମଚାରୀମାନଙ୍କର ଉତ୍ତରଦାୟିତ୍ୱ, ସ୍ୱାସ୍ଥ୍ୟ ସେବାରେ ସ୍ୱଚ୍ଛତା ବୃଦ୍ଧି ସହିତ ସକାରାତ୍ମକ ପରିବର୍ତ୍ତନ ଅଣାଯାଉଛି ।

୧୩. ରାଜ୍ୟର ସ୍ୱାସ୍ଥ୍ୟ ଭିତ୍ତିଭୂମିକୁ ସମ୍ମୁନ୍ନତ କରାଯିବା ସହିତ ଏହାର ବ୍ୟାପକ ପରିବର୍ଦ୍ଧନ କରାଯାଉଛି । ୫ଟି ମେଡିକାଲ୍ କଲେଜ ଓ ହସ୍ପିଟାଲ୍ ଏବଂ ୭ଟି ଜିଲ୍ଲା ହସ୍ପିଟାଲ୍ ଅଧୁନା ନିର୍ମାଣାଧୀନ ଅଛି । ୩,୫୦୦ କୋଟି ଟଙ୍କା ବିନିଯୋଗରେ ଏସ୍‌ସିବି ମେଡିକାଲ୍ କଲେଜ ଓ ହସ୍ପିଟାଲ୍ ଭଳି ଏକ ପ୍ରମୁଖ ସ୍ୱାସ୍ଥ୍ୟ ସେବା ଅନୁଷ୍ଠାନକୁ ଏମ୍ସ୍-ପ୍ଲସ୍ ଅନୁଷ୍ଠାନ ଭାବରେ ପରିବର୍ତ୍ତିତ କରାଯାଉଛି ।

୧୪. ଅଗମ୍ୟ ଅଚଂଳରେ ସ୍ୱାସ୍ଥ୍ୟ ସେବା ପହଞ୍ଚାଇବା ନିମନ୍ତେ ଅଗମ୍ୟ ଗ୍ରାମଗୁଡିକୁ ବିଜ୍ଞାପିତ କରାଯାଇଛି । ଷ୍ଟ୍ରେଚର୍, ଦୁଇଚକିଆ ଆମ୍ବୁଲାନ୍ସ୍, ବୋଟ୍ ଆମ୍ବୁଲାନ୍ସ ଏବଂ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ କେନ୍ଦ୍ର ପରି ବିକଳ୍ପ ପରିବାହୀ ସ୍ୱାସ୍ଥ୍ୟ ସେବା ସୁବିଧା କାର୍ଯ୍ୟକାରୀ କରାଯାଇଛି । ବିଜ୍ଞାପିତ ଗ୍ରାମଗୁଡିକରେ ଆସନ୍ନ ପ୍ରସବା ମହିଳାଙ୍କ ନିମନ୍ତେ ମାତୃ ପ୍ରତୀକ୍ଷାଳୟ ପ୍ରତିଷ୍ଠା କରାଯାଇଛି ।

ପୁନଶ୍ଚ, ଦୁର୍ଗମ ଅଞ୍ଚଳରେ ରହି ଲୋକଙ୍କ ସ୍ୱାସ୍ଥ୍ୟସେବା କରିବା ନିମନ୍ତେ ଆଗ୍ରହୀ ହେବା ପାଇଁ ମୋ ସରକାର ଡାକ୍ତରମାନଙ୍କ ପାଇଁ ବିଭିନ୍ନ ପ୍ରୋତ୍ସାହନମୂଳକ ବ୍ୟବସ୍ଥା ମଧ୍ୟ ଆରମ୍ଭ କରିଛନ୍ତି ।

୧୫. ଆମ ସ୍ୱାସ୍ଥ୍ୟସେବାର ପରିଦୃଶ୍ୟ ପରବର୍ତ୍ତୀ ପର୍ଯ୍ୟାୟ ପରିବର୍ତ୍ତନ, ଆମ ସାଧାରଣ ସ୍ୱାସ୍ଥ୍ୟସେବା ବ୍ୟବସ୍ଥା ଉପରେ ଜନସାଧାରଣଙ୍କ ଆସ୍ଥା ଓ ବିଶ୍ୱାସ ବୃଦ୍ଧି କରିଛି । ମୋ ସରକାରଙ୍କର ଏକାଧିକ ପଦକ୍ଷେପ ବିଭିନ୍ନ ଜାତୀୟ ଏବଂ ଅନ୍ତର୍ଜାତୀୟ ସ୍ତରରେ ମଧ୍ୟ ପ୍ରଶଂସା ଲାଭ କରିବା ସହ ସ୍ୱୀକୃତି ହାସଲ କରିଛି ।

୧୬. ମୋ ସରକାର ଜାତୀୟ ଖାଦ୍ୟ ସୁରକ୍ଷା ଯୋଜନାରେ ରାଜ୍ୟର ୯୨.୬ ଲକ୍ଷ ପରିବାରର ୩.୨୪ କୋଟି ହିତାଧିକାରୀଙ୍କୁ ସାମିଲ କରି ସେମାନଙ୍କୁ କିଲୋପିଛା ଏକ ଟଙ୍କା ଦରରେ ୧.୬୩ ଲକ୍ଷ ମେଟ୍ରିକ୍ ଟନ୍ ଚାଉଳ ଏବଂ ୨୩,୮୯୦ ମେଟ୍ରିକ୍ ଟନ୍ ଗହମ ପ୍ରତି ମାସରେ ଯୋଗାଇ ଦେଉଛନ୍ତି । ଏତଦ୍ ବ୍ୟତୀତ, ଆମ ନିଜସ୍ୱ ଖାଦ୍ୟ ସୁରକ୍ଷା ଯୋଜନା ଜରିଆରେ ୩.୬୩ ଲକ୍ଷ ଗରିବ, ନିଃସହାୟ ତଥା ଜାତୀୟ ଖାଦ୍ୟ ସୁରକ୍ଷା ଯୋଜନାରୁ ବାଦ୍ ପଡିଥିବା ଯୋଗ୍ୟ ପରିବାରର ୧୦.୯୮ ଲକ୍ଷ ବ୍ୟକ୍ତିଙ୍କୁ କିଲୋ ପ୍ରତି ୧ ଟଙ୍କା ଦରରେ ମାସିକ ମୁଣ୍ଡ ପିଛା ୫ କିଲୋ ଚାଉଳ ଯୋଗାଇ ଦେଉଛନ୍ତି ।

୧୭. ରାଜ୍ୟର କୋଭିଡ୍-୧୯ ମହାମାରୀ ପରିଚାଳନା ବ୍ୟବସ୍ଥାର ଅଂଶ ସ୍ୱରୂପ ମୋ ସରକାର ରାଜ୍ୟ ଖାଦ୍ୟ ସୁରକ୍ଷା ଯୋଜନା ହିତାଧିକାରୀ ଏବଂ ଗତ ମଇ-ଜୁନ୍ ମାସରେ ଆସିଥିବା ପ୍ରାୟ ୧ ଲକ୍ଷ ପ୍ରବାସୀ ଶ୍ରମିକଙ୍କୁ ୮ ମାସ ନିମନ୍ତେ ଅତିରିକ୍ତ ପରିମାଣର ଚାଉଳ ଏବଂ ଡାଲି ମାଗଣାରେ ଯୋଗାଇ ଦେଇଛନ୍ତି ।

୧୮. ମୋ ସରକାର ଏକ ନିରନ୍ତର ସଂସ୍କାର ପ୍ରକ୍ରିୟା ଅବଲମ୍ବନ ଦ୍ୱାରା ଏକ ସ୍ୱଚ୍ଛ, ଦକ୍ଷ, ଉତ୍ତରଦାୟୀ ତଥା ଦୃଢ଼ ଧାନ ସଂଗ୍ରହଣ ବ୍ୟବସ୍ଥା କାର୍ଯ୍ୟକାରୀ କରୁଛନ୍ତି । ମୋ ସରକାର ତଥ୍ୟ ଏବଂ ବୈଷୟିକ ଜ୍ଞାନକୌଶଳର ଯଥାଯଥ ଉପଯୋଗ ମାଧ୍ୟମରେ କ୍ଷୁଦ୍ର ତଥା ନାମମାତ୍ର ଚାଷୀମାନଙ୍କ ଦ୍ୱାରା ଧାନ ସଂଗ୍ରହଣକାରୀ ସମିତି ତଥା ସଂସ୍ଥାକୁ ନିଜ ଉତ୍ପାଦିତ ଧାନ ବିକ୍ରୟ କରିପାରିବାର ଅଧିକାରକୁ ଅଗ୍ରାଧିକାର ଦେଇଛନ୍ତି ।

୧୯. ମୋ ସରକାର ରାଜ୍ୟର ଗ୍ରାମାଞ୍ଚଳକୁ ବିଶୁଦ୍ଧ ପାନୀୟଜଳ ଯୋଗାଇଦେବା ଉଦ୍ଦେଶ୍ୟରେ ୪.୭ ଲକ୍ଷ ନଳକୂପ, ଏବଂ ପରିମଳ କୂପ ଓ ୧୩,୦୫୦ ପାଇପ ଜଳଯୋଗାଣ ପ୍ରକଳ୍ପ ସ୍ଥାପନ କରିଛନ୍ତି । ୨୦୨୦-୨୧ ବର୍ଷରେ ଆମେ ୨୦୯ଟି ହ୍ୟାଣ୍ଡ ପମ୍ପ ଟ୍ୟୁବ୍ ୱେଲ୍‌ରେ ସୌରଚାଳିତ ପମ୍ପର ସୁବିଧା କରିସାରିଛୁ ଏବଂ ୬୩୭ଟି ନୂତନ ପାଇପ୍ ପାନୀୟ ଜଳ ଯୋଗାଣ ପ୍ରକଳ୍ପ ସମେତ ୮୬୦ଟି ପାଇପ୍ ଜଳଯୋଗାଣ ପ୍ରକଳ୍ପର କାର୍ଯ୍ୟ ଶେଷ କରିଛୁ ।

୨୦. ଓଡ଼ିଶା ଖଣି ଅଞ୍ଚଳ ଉନ୍ନୟନ ନିଗମ ପାଣ୍ଠିରୁ ୩୦୫୯ କୋଟି ଟଙ୍କା ବ୍ୟୟରେ ମୋ ସରକାର ସୁନ୍ଦରଗଡ, ମୟୂରଭଞ୍ଜ, ଢେଙ୍କାନାଳ, କୋରାପୁଟ, କେନ୍ଦୁଝର, ଅନୁଗୋଳ, ଝାରସୁଗୁଡା ଓ ଯାଜପୁର ଭଳି ୮ଟି ଜିଲ୍ଲାର ଖଣି କାର୍ଯ୍ୟ ଦ୍ୱାରା ପ୍ରତ୍ୟକ୍ଷ ଭାବରେ ପ୍ରଭାବିତ ୬୯୧ଟି ଗ୍ରାମରେ ୧୮ଟି ମେଗା ପାଇପ୍ ଜଳ ଯୋଗାଣ ପ୍ରକଳ୍ପ କାର୍ଯ୍ୟ ହାତକୁ ନେଇଛନ୍ତି । ସେହିଭଳି ଜିଲ୍ଲା ଖଣିଜ ପାଣ୍ଠିରୁ ୪୧୫୭ କୋଟି ଟଙ୍କା ବ୍ୟୟରେ ୯ଟି ମେଗା ଜଳଯୋଗାଣ ପ୍ରକଳ୍ପ କାର୍ଯ୍ୟ ହାତକୁ ନିଆଯାଇଛି ।

୨୧. ରାଜ୍ୟର ସମସ୍ତ ସହରାଞ୍ଚଳରେ ପାଇପ୍ ଜଳଯୋଗାଣ ବ୍ୟବସ୍ଥା ପ୍ରଚଳନ କରିବାରେ ଓଡ଼ିଶା ଦେଶରେ ଏକ ଅଗ୍ରଣୀ ରାଜ୍ୟ ହୋଇପାରିଛି । ଶତ ପ୍ରତିଶତ ଘରୋଇ ସଂଯୋଗ କାର୍ଯ୍ୟକାରୀ କରି ଭୁବନେଶ୍ୱର ଦେଶର ପ୍ରଥମ ପ୍ରମୁଖ ସହରରେ ପରିଗଣିତ ହେବା ସହିତ ଏହା ଆଉ ୧୩ଟି ସହରରେ ମଧ୍ୟ କାର୍ଯ୍ୟକାରୀ ହୋଇଛି । ଭୁବନେଶ୍ୱର ଏବଂ ପୁରୀର ୧୨ଟି ଜୋନ୍‌ରେ ପାଇଲଟ୍ ପଦ୍ଧତିରେ 'ସୁଜଳ-ଡ୍ରିମ୍ ଫ୍ରମ୍ ଟ୍ୟାପ୍' ମିଶନ ଦ୍ୱାରା ୨୪ ଘଣ୍ଟିଆ ସିଧାସଳଖ ପାନୀୟ ଜଳ ଯୋଗାଣ ଯୋଗୁଁ ୧.୮ ଲକ୍ଷ ଜନସାଧାରଣ ଉପକୃତ ହେଉଛନ୍ତି । ଏହି ମିଶନ ଅନ୍ୟାନ୍ୟ ସହରଗୁଡ଼ିକୁ ପର୍ଯ୍ୟାୟ କ୍ରମେ ସଂପ୍ରସାରିତ ହେବ ।

୨୨.ପାନୀୟ ଜଳର ଗୁଣାତ୍ମକ ମାନ ସୁନିଶ୍ଚିତ କରିବା ଲକ୍ଷ୍ୟରେ ମୋ ସରକାର ଏକ ସୁବ୍ୟବସ୍ଥିତ ଜଳ ଗୁଣବତ୍ତା ପରିଚାଳନା ବ୍ୟବସ୍ଥା କାର୍ଯ୍ୟକାରୀ କରିଛନ୍ତି । ଏଥିପାଇଁ ଆମେ ରାଜ୍ୟର ୭୮ଟି ସ୍ଥାନରେ ଏନ୍.ଏ.ବି.ଏଲ୍ ସ୍ୱୀକୃତ ସର୍ବୋତ୍କୃଷ୍ଟ ମାନର ଜଳ ପରୀକ୍ଷାଗାର ନିର୍ମାଣ କରିଛୁ । ରାଜ୍ୟର ଯେଉଁସବୁ ଅଞ୍ଚଳର ନଳକୂପ ଜଳରେ ଲୌହ ଓ ଫ୍ଲୋରାଇଡ଼ ମାତ୍ରା ରହୁଛି, ସେସବୁ ଅଞ୍ଚଳରେ ଆମେ ୧୨୦୦ଟି ଲୌହ ଅପସାରଣ ପ୍ରକଳ୍ପ ଏବଂ ୬୪୦ଟି ଫ୍ଲୋରାଇଡ୍ ଅପସାରଣ ପ୍ରକଳ୍ପ ସ୍ଥାପନ କରିଛୁ ।

୨୩. ମୋ ସରକାର ସମସ୍ତଙ୍କ ପାଇଁ ପାନୀୟ ଜଳ ଯୋଗାଣର ବୃହତ୍ତର ଲକ୍ଷ୍ୟ ସାଧନ ପାଇଁ, ବିପର୍ଯ୍ୟୟ ପ୍ରତିରୋଧୀ ଜଳଯୋଗାଣ ବ୍ୟବସ୍ଥା, ନାଗରିକ ସଂପୃକ୍ତି ଏବଂ ଉତ୍ତରଦାୟୀ ସେବା ପ୍ରଦାନ ଭଳି ଏକାଧିକ ପଦକ୍ଷେପ ସମ୍ବଳିତ ଏକ ସମୟ ନିର୍ଦ୍ଧାରିତ କାର୍ଯ୍ୟ ଖସଡ଼ା ପ୍ରସ୍ତୁତ କରିଛନ୍ତି ।

୨୪. ମୋ ସରକାର ଏକ ଦୃଢ଼ ତଦାରଖ ବ୍ୟବସ୍ଥା ସହିତ ନିର୍ଦ୍ଧାରିତ ଅବଧି ପୂର୍ବରୁ ଗୃହ ନିର୍ମାଣ ଶେଷ କରୁଥିବା ହିତାଧିକାରୀଙ୍କ ପାଇଁ ପ୍ରୋତ୍ସାହନ ବ୍ୟବସ୍ଥା ଏବଂ ନିର୍ଦ୍ଦିଷ୍ଟ ହିତାଧିକାରୀଙ୍କ ସହିତ କ୍ଷେତ୍ର କର୍ମଚାରୀଙ୍କ ଯୋଗସୂତ୍ର ରକ୍ଷା ଭଳି ଅଭିନବ ପଦକ୍ଷେପ ଦ୍ୱାରା ରେକର୍ଡ ସଂଖ୍ୟକ ଗୃହ ନିର୍ମାଣ କାର୍ଯ୍ୟ ପୂର୍ଣ୍ଣ ସ୍ୱଚ୍ଛତାର ସହ ସଂପୂର୍ଣ୍ଣ କରିବାରେ ସଫଳ ହୋଇଛନ୍ତି । ଉପରୋକ୍ତ ଅଭିନବ ଉପାୟ ସମୂହ ଆପଣେଇ ୨୦୨୦–୨୧ ବର୍ଷରେ ଆମେ ୨.୮ ଲକ୍ଷ ଗୃହ ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ କରିପାରିଛୁ ।

୨୫. ଅପ୍ରେଲ ୨୦୨୦ରୁ ସ୍ୱଚ୍ଛ ଭାରତ ମିଶନ (ଗ୍ରାମୀଣ)ର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହୋଇଛି । ମୋ ସରକାର ପ୍ରାୟ ୭୫୦୦ କୋଟି ଟଙ୍କା ବ୍ୟୟରେ ୬୬ ଲକ୍ଷ ବ୍ୟକ୍ତିଗତ ଶୌଚାଳୟ ନିର୍ମାଣ କରିଛନ୍ତି ଏବଂ ୨୦୧୯ ସେପ୍ଟେମ୍ବରରେ ରାଜ୍ୟ ବାହ୍ୟ ମଳମୁକ୍ତ ଅଞ୍ଚଳ ଭାବେ ଘୋଷିତ ହୋଇଛି । ସମସ୍ତଙ୍କ ପାଇଁ ପରିମଳ ସୁବିଧା ବ୍ୟବସ୍ଥାକୁ ସୁନିଶ୍ଚିତ କରିବା ପାଇଁ ୭୪୭ରୁ ଊର୍ଦ୍ଧ୍ୱ ସମୂହ ଶୌଚାଳୟ ମଧ୍ୟ ନିର୍ମାଣ କରାଯାଇଛି ।

୨୬. ଜନ ସହଯୋଗ ସହିତ ଏକ ବିକେନ୍ଦ୍ରୀକୃତ ବ୍ୟବସ୍ଥା ଜରିଆରେ କଠିନ ବର୍ଜ୍ୟବସ୍ତୁ ପରିଚାଳନା କରିବାରେ ଆମ ରାଜ୍ୟ ଯୁଗାନ୍ତକାରୀ ପଦକ୍ଷେପ ଗ୍ରହଣ କରିଛି । ସଂପ୍ରତି ୧୧୦ଟି ପୌରାଞ୍ଚଳରେ ୧୩୬ଟି ମାଇକ୍ରୋ କମ୍ପୋଷ୍ଟିଂ ସେଣ୍ଟର ଏବଂ ୯୫ଟି ପୌରାଞ୍ଚଳରେ ୧୧୫ଟି ମ୍ୟାଟେରିଆଲ ରିକଭରୀ ଫାସିଲିଟି କାର୍ଯ୍ୟକ୍ଷମ କରାଯାଇ ବୈଜ୍ଞାନିକ ପଦ୍ଧତିରେ ୬୦ ପ୍ରତିଶତ କଠିନ ବର୍ଜ୍ୟବସ୍ତୁକୁ ପ୍ରକ୍ରିୟାକରଣ କରାଯାଇ ଜୈବିକ ଖତ ଏବଂ ପୁନଃ ବ୍ୟବହାରକ୍ଷମ ଏବଂ ବିକ୍ରୟୋପଯୋଗୀ ସମ୍ପଦରେ ପରିବର୍ତ୍ତିତ କରାଯାଉଛି । ୨୦୨୧ ଶେଷ ସୁଦ୍ଧା ରାଜ୍ୟର ସମସ୍ତ ପୌରାଞ୍ଚଳରୁ ବାହାରୁଥିବା ଶତ ପ୍ରତିଶତ ତରଳ ଓ କଠିନ ବର୍ଜ୍ୟବସ୍ତୁ ପ୍ରକ୍ରିୟାକରଣ ଲକ୍ଷ୍ୟ ମୋ ସରକାର ରଖିଛନ୍ତି । ଏ ଦିଗରେ ଓଡ଼ିଶାର ପ୍ରଦର୍ଶନକୁ ଜାତୀୟସ୍ତରରେ ସ୍ୱୀକୃତି ମିଳିଛି ଏବଂ ସ୍ୱଚ୍ଛ ସର୍ବେକ୍ଷଣ–୨୦୨୦ରେ 'ଦ୍ରୁତ ଗତିଶୀଳ' ରାଜ୍ୟ ଭାବେ ଓଡ଼ିଶା ପୁରସ୍କୃତ ହୋଇଛି । ଏତଦ୍‌ବ୍ୟତୀତ, ଆମ ରାଜ୍ୟର ୬ଟି ସହର ମଧ୍ୟ ଜାତୀୟସ୍ତରର ସ୍ୱଚ୍ଛ ସର୍ବେକ୍ଷଣ ୨୦୨୦ରେ ପ୍ରମୁଖ ୨୦ଟି ସହର ମଧ୍ୟରେ ସ୍ଥାନିତ ହୋଇଛନ୍ତି ।

୨୭. ମୋ ସରକାର ଭିନ୍ନକ୍ଷମ, ନିରାଶ୍ରୟ ଏବଂ ବିଧବା, ବରିଷ୍ଠ ନାଗରିକ, କିନ୍ନର, ଏଡ୍‌ସ ଆକ୍ରାନ୍ତ, ନିଶା ସେବନ ଦ୍ୱାରା କ୍ଷତିଗ୍ରସ୍ତ ଲୋକଙ୍କ ଭଳି ସମାଜର ସମ୍ବେଦନଶୀଳ ବର୍ଗଙ୍କ ସାମାଜିକ ନିରାପତ୍ତା ଏବଂ ସଶକ୍ତିକରଣ ପାଇଁ ପ୍ରତିଶ୍ରୁତିବଦ୍ଧ । ସାମାଜିକ ନିରାପତ୍ତା ପେନ୍‌ସନ ପ୍ରଦାନରେ ଦେଶର ସମସ୍ତ ରାଜ୍ୟ ତୁଳନାରେ ମୋ ରାଜ୍ୟ ଜନସଂଖ୍ୟାର ସର୍ବାଧିକ ପ୍ରତିଶତ ହିତାଧିକାରୀଙ୍କୁ ଅନ୍ତର୍ଭୁକ୍ତ କରିଛି । ମୋ ସରକାର ନିରାଶ୍ରୟା, ସ୍ୱାମୀ ପରିତ୍ୟକ୍ତା, ଛାଡପତ୍ର ପାଇଥିବା ମହିଳା ଏବଂ କିନ୍ନରଙ୍କୁ ମଧୁବାବୁ ପେନ୍‌ସନ ଯୋଜନାରେ ପରିସରଭୁକ୍ତ କରିଛନ୍ତି ।

୨୮. ମୋ ସରକାର ରାଜ୍ୟରେ ସର୍ତ୍ତମୂଳକ ଅର୍ଥ ହସ୍ତାନ୍ତର ମାତୃମଙ୍ଗଳ ଯୋଜନା 'ମମତା' କାର୍ଯ୍ୟକାରୀ କରିବା ସହିତ ଏହା ମାଧ୍ୟମରେ ୪୫.୩୦ ଲକ୍ଷ ଗର୍ଭବତୀ ଓ ପ୍ରସୂତି ମହିଳାଙ୍କୁ ଅନ୍ତର୍ଭୁକ୍ତ କରି ସେମାନଙ୍କ ବ୍ୟାଙ୍କ୍ ଆକାଉଣ୍ଟକୁ ୨୧୩୩ କୋଟି ଟଙ୍କାର ସହାୟତା ରାଶି ସିଧାସଳଖ ହସ୍ତାନ୍ତର କରିଛନ୍ତି ।

୨୯. ମୋ ସରକାର କୋଭିଡ୍–୧୯ ଯୋଗୁଁ ରାଜ୍ୟର ଅଙ୍ଗନବାଡି କେନ୍ଦ୍ରଗୁଡିକ ବନ୍ଦ ରହିଥିବା ସତ୍ତ୍ୱେ ଅତିରିକ୍ତ ପୁଷ୍ଟିସାଧନ କାର୍ଯ୍ୟକ୍ରମରେ ଟିଏଚ୍‌ଆର୍, ଶୁଖିଲା ଖାଦ୍ୟ ଏବଂ ଅଣ୍ଡା ଇତ୍ୟାଦି ଶିଶୁ, ଗର୍ଭବତୀ ଏବଂ ପ୍ରସୂତି ମହିଳାଙ୍କୁ ନିୟମିତ ଭାବରେ ଯୋଗାଇଦେଇଛନ୍ତି । ମୋ ସରକାର ଶିଶୁ ଏବଂ ଅତି ସମ୍ବେଦନଶୀଳ ଗର୍ଭବତୀ ମହିଳାଙ୍କ ଉନ୍ନତ ପୁଷ୍ଟିସାଧନ ପାଇଁ ଅଙ୍ଗନବାଡି କେନ୍ଦ୍ରଗୁଡିକରେ ୧୬,୫୦୦ରୁ ଊର୍ଦ୍ଧ୍ୱ 'ମୋ ଉପକାରୀ ବଗିଚା' ବିକଶିତ କରିଛନ୍ତି । ମୋ ସରକାର ଅତିରିକ୍ତ ପୁଷ୍ଟିସାଧନ କାର୍ଯ୍ୟକ୍ରମ ଜରିଆରେ କେନ୍ଦୁଝର ଏବଂ ସୁନ୍ଦରଗଡ ଜିଲ୍ଲାରେ ମିଲେଟ୍ ଯୋଗାଇ ଦେଉଛନ୍ତି, ଯାହା ଜାତୀୟ ସ୍ତରରେ ଏକ ପ୍ରଶଂସନୀୟ ପଦକ୍ଷେପ ବୋଲି ସ୍ୱୀକୃତ ହୋଇଛି ।

୩୦. ଏଠାରେ ଉଲ୍ଲେଖଯୋଗ୍ୟ ଯେ କଳାହାଣ୍ଡି ଜିଲ୍ଲାର ୫ଟି ଅଙ୍ଗନବାଡି କେନ୍ଦ୍ର ଆଇ.ଏସ୍.ଓ. ପ୍ରମାଣପତ୍ର ହାସଲ କରିଛନ୍ତି । ମୋ ସରକାର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ଅପପୁଷ୍ଟି ପ୍ରଭାବିତ ବ୍ଲକ୍‌ଗୁଡିକ ପାଇଁ 'ସୋପାନ' କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ୧୫୬୭ଟି ନୂତନ ଅଙ୍ଗନବାଡି କେନ୍ଦ୍ର ମଞ୍ଜୁର କରିଛନ୍ତି ।

୩୧. ମୋ ସରକାର ବର୍ତ୍ତମାନ 'ବିଜୁ ଶିଶୁ ସୁରକ୍ଷା ଯୋଜନା' ୨୦୨୦କୁ ପରିବର୍ଦ୍ଧିତ କରି ପିତୃମାତୃହୀନ ଅଥବା ପିତା ଓ ମାତାଙ୍କ ମଧ୍ୟରୁ ଜଣଙ୍କୁ ହରାଇଥିବା ଶିଶୁ, ଯତ୍ନ ଏବଂ ସୁରକ୍ଷା ଆବଶ୍ୟକ କରୁଥିବା ଅନ୍ୟାନ୍ୟ ବର୍ଗର ଶିଶୁ, ୪୮ ହଜାର ଟଙ୍କାରୁ କମ୍ ବାର୍ଷିକ ଆୟ କରୁଥିବା ପରିବାରର ଶିଶୁ ଏବଂ ଏଡ୍‌ସ ରୋଗାକ୍ରାନ୍ତ ଶିଶୁମାନଙ୍କୁ ଏହି ଯୋଜନାର ପରିସରଭୁକ୍ତ କରିଛନ୍ତି ।

୩୨. ମୋ ସରକାର କିଶୋରୀମାନଙ୍କ ବିଭିନ୍ନ ସ୍ୱାସ୍ଥ୍ୟ ସମସ୍ୟା ଏବଂ ପୁଷ୍ଟିସାଧନକୁ ଦୃଷ୍ଟିରେ ରଖି ଏକ କିଶୋରୀ ଜୀବନ କୌଶଳ ଶିକ୍ଷା କାର୍ଯ୍ୟକ୍ରମ 'ଅଦ୍ୱିକା- ପ୍ରତ୍ୟେକ ବାଳିକା ଅନନ୍ୟା'ର ଶୁଭାରମ୍ଭ କରିଛନ୍ତି ।

୩୩. ମୋ ସରକାର ମାସ୍କ ତିଆରି, ଫ୍ରି କିଚେନ୍ ପରିଚାଳନା, ଅସ୍ଥାୟୀ ଚିକିତ୍ସା କେନ୍ଦ୍ରରେ ରନ୍ଧା ଖାଦ୍ୟ ଯୋଗାଣ, ଗ୍ରାମପଞ୍ଚାୟତ ପୋଖରୀରେ ମାଛ ଚାଷ, ସହରାଞ୍ଚଳ କର୍ମ ନିଯୁକ୍ତି ଅଭିଯାନ, ପ୍ରାକ୍ ବିଦ୍ୟାଳୟ ଓ ବିଦ୍ୟାଳୟ ଛାତ୍ରଛାତ୍ରୀଙ୍କ ୟୁନିଫର୍ମ ପୋଷାକ ସିଲେଇ ଓ ଯୋଗାଣ, ବିଦ୍ୟୁତ୍ ମିଟର ରିଡ଼ିଂ, ମନରେଗା ଅଧୀନରେ କାର୍ଯ୍ୟସ୍ଥଳୀ ତଦାରଖ, ପୌରାଞ୍ଚଳ ସାଧାରଣ ସେବା କେନ୍ଦ୍ର ଓ 'ଆହାର' କେନ୍ଦ୍ର ପରିଚାଳନା, ଜଳସାଥୀ ଓ ସ୍ୱଚ୍ଛ ସାଥୀ, ମଧ୍ୟାହ୍ନ ଭୋଜନ ପରିଚାଳନା, ଘରକୁ ନିଆଯାଉଥିବା ରାସନ୍ ସାମଗ୍ରୀର ପ୍ରସ୍ତୁତି ଓ ଯୋଗାଣ ଇତ୍ୟାଦି କାର୍ଯ୍ୟକ୍ରମରେ ୫୨,୯୫୮ଟି ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ସମ୍ପୃକ୍ତ କରି ଚଳିତ ବର୍ଷର ପ୍ରଥମ ୯ ମାସରେ ୧,୦୨୨ କୋଟି ଟଙ୍କାର ବ୍ୟବସାୟ ସୁନିଶ୍ଚିତ କରିଛନ୍ତି । ଏହି ବର୍ଷ ମଧ୍ୟରେ ମୋ ସରକାର ମହିଳା ସଦସ୍ୟାମାନଙ୍କ ମଧ୍ୟରେ ଜୀବିକାର୍ଜନକୁ ପ୍ରୋତ୍ସାହନ ଓ ଔଦ୍ୟୋଗିକତା ବୃଦ୍ଧି ପାଇଁ ୧.୪୩ ଲକ୍ଷ ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ୨୫୫୪ କୋଟି ଟଙ୍କାର ବ୍ୟାଙ୍କ୍ ଋଣ ଯୋଗାଇ ଦେଇଛନ୍ତି ।

୩୪. ଜନଜାତି ଛାତ୍ରଛାତ୍ରୀମାନଙ୍କୁ ଆବାସିକ ଶିକ୍ଷା ସୁବିଧା ପ୍ରଦାନ କରିବା ନିମନ୍ତେ ୧୭୩୫ଟି ଆବାସିକ ବିଦ୍ୟାଳୟ ଓ ୪.୫ ଲକ୍ଷରୁ ଉର୍ଦ୍ଧ୍ୱ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ବର୍ଗର ଛାତ୍ରଛାତ୍ରୀଙ୍କ ପାଇଁ ୬୯୫୪ଟି ଛାତ୍ରାବାସ ନିର୍ମାଣ କରି ଓଡ଼ିଶା ଦେଶର ଏକ ଅଗ୍ରଣୀ ରାଜ୍ୟ ହୋଇପାରିଛି । ଅନୁସୂଚିତ ଜନଜାତି, ଅନୁସୂଚିତ ଜାତି ଓ ଅନ୍ୟାନ୍ୟ ପଛୁଆବର୍ଗର ଛାତ୍ରଛାତ୍ରୀମାନଙ୍କୁ ମେଧାବୃତ୍ତି ପ୍ରଦାନ କରିବା ମୋ ସରକାରଙ୍କ ଏକ ପ୍ରମୁଖ ପଦକ୍ଷେପ ଏବଂ ଏଥିରେ ପ୍ରାକ୍ ମାଟ୍ରିକ୍ ସ୍ତରରେ ପ୍ରାୟ ୧୭.୩ ଲକ୍ଷ ଏବଂ ମାଟ୍ରିକ୍ ପରବର୍ତ୍ତୀ ସ୍ତରରେ ପ୍ରାୟ ୪.୫ ଲକ୍ଷ ଛାତ୍ରଛାତ୍ରୀ ଅନ୍ତର୍ଭୁକ୍ତ ହୋଇଛନ୍ତି ।

୩୫. ରାଜ୍ୟର ୬୮୧୫ ଜଣ ଭିନ୍ନକ୍ଷମ ଛାତ୍ରଛାତ୍ରୀଙ୍କୁ ଶିକ୍ଷା ସୁବିଧା ଯୋଗାଇଦେବା ଉଦ୍ଦେଶ୍ୟରେ, ମୋ ସରକାର ରାଜ୍ୟରେ ଶ୍ରୁତିବାଧକ ଛାତ୍ରଛାତ୍ରୀଙ୍କ ନିମନ୍ତେ ୧୦୩ଟି ସ୍ୱତନ୍ତ୍ର ବିଦ୍ୟାଳୟ ଏବଂ ଗୋଟିଏ କଲେଜ ସ୍ଥାପନ କରିଛନ୍ତି । ୨୩,୯୯୫ ଜଣ ଭିନ୍ନକ୍ଷମ ଛାତ୍ରଛାତ୍ରୀମାନଙ୍କୁ ବାଣୀଶ୍ରୀ ଶିକ୍ଷାବୃତ୍ତି ପ୍ରଦାନ କରାଯାଇଛି । ୬୬ଟି ଚିକିତ୍ସା କେନ୍ଦ୍ର ଜରିଆରେ ୩୫୧୧ ଜଣ ଶାରୀରିକ, ମାନସିକ ଏବଂ ସାମାଜିକ ବିକାରଗ୍ରସ୍ତ ରୋଗୀଙ୍କୁ ଥଇଥାନ କରାଯାଇଛି । ୩୬୨୩ଟି ଭିନ୍ନକ୍ଷମ ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରାଯାଇ ସେମାନଙ୍କୁ ସାମାଜିକ ତଥା ଆର୍ଥିକ ସ୍ତରରେ ସ୍ୱାବଲମ୍ବୀ କରାଯାଇଛି ।

୩୬. ରାଜ୍ୟର ୧୦ଟି ଜିଲ୍ଲାରେ ସମନ୍ୱିତ ସାମାଜିକ ନିରାପତ୍ତା ଭିତ୍ତିଭୂମି କମ୍ପ୍ଲେକ୍ସ କାର୍ଯ୍ୟକ୍ଷମ ଅଛି । ଉକ୍ତ କମ୍ପ୍ଲେକ୍ସ ଜରିଆରେ ସମସ୍ତ ସମ୍ବେଦନଶୀଳ ବର୍ଗଙ୍କୁ ଉନ୍ନତମାନର ଆବାସିକ ରହଣି ସୁବିଧା, ସୁଷମ ଖାଦ୍ୟ, ପୋଷାକ, ଗୁଣାତ୍ମକ ସ୍ୱାସ୍ଥ୍ୟସେବା ଓ ଚିକିତ୍ସା ସୁଯୋଗ ପ୍ରଦାନ କରାଯାଉଛି ।

୩୭. ରାଜ୍ୟରେ ୧୪ଟି ସର୍ବାଧିକ ଶ୍ରମିକ ସ୍ଥାନାନ୍ତରପ୍ରବଣ ଅଞ୍ଚଳ ତଥା ଯେଉଁ ଅଞ୍ଚଳରୁ ସର୍ବାଧିକ ଶ୍ରମିକ ବାହାର ରାଜ୍ୟକୁ ଦାଦନ ଖଟିବାକୁ ଯାଉଛନ୍ତି, ସେମାନଙ୍କର ସୁରକ୍ଷା ଏବଂ କଲ୍ୟାଣ ଲକ୍ଷ୍ୟରେ ୨୪ ଘଣ୍ଟିଆ ଦେୟ ମୁକ୍ତ ଶ୍ରମିକ ସହାୟତା ହେଲ୍ପ୍‌ଲାଇନ୍, ଦାଦନ ଶ୍ରମିକମାନଙ୍କ ସମ୍ପର୍କିତ ଘରୋଇ ସର୍ବେକ୍ଷଣ, ସେମାନଙ୍କ ଉଦ୍ଧାର ଏବଂ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କାର୍ଯ୍ୟକ୍ରମ ''ଇ-ଶ୍ରମିକ ସମାଧାନ'' ରୂପକ ଅନ୍‌ଲାଇନ୍ ଅଭିଯୋଗ ପ୍ରତିକାର ବ୍ୟବସ୍ଥା ଖୋଲାଯାଇ ସେମାନଙ୍କ ବିଭିନ୍ନ ଅଭିଯୋଗ ଓ ସମସ୍ୟାର ତତ୍କାଳ ପ୍ରତିକାର ଓ ସମାଧାନ କରାଯାଉଛି । ମୋ ସରକାର ଶ୍ରମ ଉଦ୍ଦେଶ୍ୟରେ ରାଜ୍ୟ ବାହାରକୁ ଯାଉଥିବା ଶ୍ରମିକମାନଙ୍କ ସାମାଜିକ-ଅର୍ଥନୈତିକ ସ୍ଥିତିକୁ ସୁଦୃଢ଼ କରିବା ଉଦ୍ଦେଶ୍ୟରେ ଏକ ସ୍ୱତନ୍ତ୍ର ପ୍ୟାକେଜ୍ ଘୋଷଣା କରିଛନ୍ତି ଏବଂ ବଲାଙ୍ଗୀର, ବରଗଡ, କଳାହାଣ୍ଡି ଏବଂ ନୂଆପଡା ଜିଲ୍ଲାର ୨୦ଟି ବ୍ଲକ୍ ଅନ୍ତର୍ଗତ ୪୭୭ଟି ଶ୍ରମିକ ସ୍ଥାନାନ୍ତରପ୍ରବଣ ଗ୍ରାମପଞ୍ଚାୟତରେ କ୍ରମଶଃ ଏହି କାମ ପାଇଁ ସ୍ଥାନାନ୍ତରଣ ପ୍ରବୃତ୍ତି ହ୍ରାସ ପାଇବାରେ ଲାଗିଛି ।

୩୮. ଗ୍ରାମାଞ୍ଚଳରେ ଛାତ୍ରଛାତ୍ରୀମାନଙ୍କୁ ଗୁଣାତ୍ମକ ଇଂରାଜୀ ମାଧ୍ୟମ ଶିକ୍ଷା ସୁଯୋଗ ଯୋଗାଇ ଦେବା ଲକ୍ଷ୍ୟରେ ମୋ ସରକାର ରାଜ୍ୟର ୨୯ଟି ଜିଲ୍ଲାରେ ୨୧୪ଟି 'ଓଡିଶା ଆଦର୍ଶ ବିଦ୍ୟାଳୟ' ପ୍ରତିଷ୍ଠା କରି ୭୨,୭୦୧ ଜଣ ଛାତ୍ରଛାତ୍ରୀଙ୍କୁ ଗୁଣାତ୍ମକ ଶିକ୍ଷା ପ୍ରଦାନ କରୁଛନ୍ତି । ତନ୍ମଧ୍ୟରୁ ୬୦ଟି ଓଡ଼ିଶା ଆଦର୍ଶ ବିଦ୍ୟାଳୟ ଇତିମଧ୍ୟରେ ଉଚ୍ଚ ମାଧ୍ୟମିକ ସ୍ତରକୁ ଉନ୍ନୀତ ହୋଇଛି ଏବଂ ଆଗାମୀ ଦିନରେ ଉକ୍ତ ବିଦ୍ୟାଳୟଗୁଡିକରେ ବାଣିଜ୍ୟ ପାଠ୍ୟକ୍ରମ ମଧ୍ୟ ପ୍ରଚଳନ ହେବାର ବ୍ୟବସ୍ଥା କରାଯାଉଛି ।

୩୯. ମୋ ସରକାର ରାଜ୍ୟରେ ସରକାରୀ ଏବଂ ଅନୁଦାନପ୍ରାପ୍ତ ବିଦ୍ୟାଳୟର ପ୍ରଥମ ଶ୍ରେଣୀରୁ ୮ମ ଶ୍ରେଣୀ ପର୍ଯ୍ୟନ୍ତ ସମସ୍ତ ଛାତ୍ରଛାତ୍ରୀଙ୍କୁ ମାଗଣାରେ ସ୍କୁଲ ୟୁନିଫର୍ମ ଓ ପାଠ୍ୟ ପୁସ୍ତକ ଯୋଗାଇ ଦେଉଛନ୍ତି । ୨୦୨୦-୨୧ ଶିକ୍ଷାବର୍ଷରେ ୨.୬୯ କୋଟି ପାଠ୍ୟପୁସ୍ତକ ବିତରଣ କରାଯାଇଛି । ମୋ ସରକାର ୨୦୨୧ ବର୍ଷର ମାଟ୍ରିକ୍ ପରୀକ୍ଷାର୍ଥୀଙ୍କ ପାଇଁ ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦଙ୍କ ଦ୍ୱାରା ପ୍ରସ୍ତୁତ ୬.୨୦ ଲକ୍ଷରୁ ଊର୍ଦ୍ଧ୍ୱ 'ପରୀକ୍ଷା ଦର୍ପଣ' ଟେଷ୍ଟ ପେପର ବିତରଣ କରିଛନ୍ତି ।

୪୦. ୨୦୨୦-୨୧ ବର୍ଷରେ, ମୋ ସରକାର ମୁଖ୍ୟମନ୍ତ୍ରୀ ମେଧାବୃତ୍ତି ଯୋଜନାରେ ୩୫,୪୯୦ ଜଣ ମେଧାବୀ ଛାତ୍ରଛାତ୍ରୀଙ୍କୁ ୧୭.୭୫ କୋଟି ଟଙ୍କାର ଛାତ୍ରବୃତ୍ତି ପ୍ରଦାନ କରିବା ସହ ୩୫୪୯ ଜଣ ଛାତ୍ରଛାତ୍ରୀଙ୍କୁ ଓଡିଆ ଭାଷାବୃତ୍ତି ପୁରସ୍କାର ବାବଦରେ ୧.୭୭ କୋଟି ଟଙ୍କା ଏବଂ ୧୦୬୧ଟି ବିଦ୍ୟାଳୟକୁ ଶ୍ରେଷ୍ଠ ବିଦ୍ୟାଳୟ ପୁରସ୍କାର ବାବଦରେ ୧୦.୬୧ କୋଟି ଟଙ୍କା ପ୍ରଦାନ କରିଛନ୍ତି ।

୪୧. ମୋ ସରକାର 'ମୋ ସ୍କୁଲ ଅଭିଯାନ' ଜରିଆରେ ବିଦ୍ୟାଳୟରେ ଅଧୁନା ଅଧ୍ୟୟନରତ ଛାତ୍ରଛାତ୍ରୀଙ୍କ ସହ ପୁରାତନ ଛାତ୍ରଛାତ୍ରୀ, ସେମାନଙ୍କର ଶିକ୍ଷାନୁଷ୍ଠାନ ତଥା ଅଞ୍ଚଳବାସୀ ସମସ୍ତଙ୍କୁ ଭାବର ବନ୍ଧନରେ ଏକତ୍ର କରିବାରେ ସମର୍ଥ ହୋଇଛନ୍ତି । ଏହି ଉଦ୍ୟମ ଜରିଆରେ ସାରା ରାଜ୍ୟର ୧୭,୩୯୬ଟି ସ୍କୁଲରେ ସ୍ୱେଚ୍ଛାକୃତ ଅବଦାନ ଭାବେ ମିଳିଥିବା ୫୮.୭୦ କୋଟି ଟଙ୍କା ସହିତ ସରକାରଙ୍କ ତରଫରୁ ଅନୁରୂପ ଅନୁଦାନ ଭାବେ ପ୍ରଦାନ କରାଯାଇଥିବା ୧୧୭.୨୪ କୋଟି ଟଙ୍କା ସ୍କୁଲଗୁଡିକର ଭିତ୍ତିଭୂମି ବିକାଶ ତଥା ଶିକ୍ଷାଦାନ-ଶିକ୍ଷା ଗ୍ରହଣ ପରିବେଶକୁ ପରବର୍ତ୍ତୀ ପର୍ଯ୍ୟାୟକୁ ଉନ୍ନୀତ କରାଇବା ନିମନ୍ତେ ଉପଯୋଗ କରାଯାଉଛି ।

୪୨. କୋଭିଡ-୧୯ ମହାମାରୀ ସତ୍ତ୍ୱେ, ଛାତ୍ରଛାତ୍ରୀଙ୍କ ପାଠପଢ଼ା ବ୍ୟାହତ ନହେବା ନିମନ୍ତେ ଶିକ୍ଷା ସଂଯୋଗ, ଦୀକ୍ଷା ଆପ୍, ଶିକ୍ଷା ଦର୍ପଣ ଏବଂ ରେଡିଓ ପାଠଶାଳା ଆଦି ଅନ୍‌ଲାଇନ୍ ଶିକ୍ଷାଦାନ ପଦ୍ଧତି ଜରିଆରେ ନିରନ୍ତର ଶିକ୍ଷା

ପ୍ରଦାନ କରାଯାଇଛି । ବିଦ୍ୟାଳୟ ବନ୍ଦ ଥିବା ସମୟରେ ମଧ ରାଜ୍ୟର ସରକାରୀ ଏବଂ ଅନୁଦାନପ୍ରାପ୍ତ ବିଦ୍ୟାଳୟଗୁଡିକର ଛାତ୍ରଛାତ୍ରୀଙ୍କୁ ମଧାହ୍ନ ଭୋଜନ କାର୍ଯ୍ୟକ୍ରମରେ ଖାଦ୍ୟ ନିରାପତ୍ତା ପ୍ରଦାନ କରାଯାଇଛି । ମୋ ସରକାର ଛାତ୍ରଛାତ୍ରୀଙ୍କୁ ସଂକ୍ରମଣ ମୁକ୍ତ ରଖିବା ପାଇଁ କଡା ନିୟମାବଳୀ ଲାଗୁ କରିବା ସହ ଜାନୁଆରୀ ୮ ତାରିଖରୁ ଦଶମ ଓ ଦ୍ୱାଦଶ ଶ୍ରେଣୀ ଛାତ୍ରଛାତ୍ରୀଙ୍କ ନିମନ୍ତେ ସ୍କୁଲ ଏବଂ ହଷ୍ଟେଲ ଖୋଲିଛନ୍ତି ।

୪୩. ମୋ ସରକାର ୫୭୬ଟି ମାଧମିକ ଏବଂ ଉଚ୍ଚମାଧମିକ ବିଦ୍ୟାଳୟରେ ଧନ୍ଦାମୂଳକ ଶିକ୍ଷା ବ୍ୟବସ୍ଥା ପ୍ରବର୍ତ୍ତନ କରିଛନ୍ତି, ଯଦ୍ୱାରା ୫୬,୬୯୨ ଜଣ ଛାତ୍ରଛାତ୍ରୀ ୧୦ଟି ବିଭିନ୍ନ ଧନ୍ଦାମୂଳକ ଶିକ୍ଷା କାର୍ଯ୍ୟକ୍ରମରେ ନାମ ଲେଖାଇଛନ୍ତି ।

୪୪. ଆମ ସରକାରୀ ଶିଳ୍ପ ତାଲିମ ପ୍ରତିଷ୍ଠାନଗୁଡିକ ଜାତୀୟ ସ୍ତରର ଗ୍ରେଡିଂ ପ୍ରକ୍ରିୟାରେ ଅଂଶଗ୍ରହଣ କରି ସେମାନଙ୍କର ଉତ୍କର୍ଷ ପ୍ରତିପାଦିତ କରିପାରିଛନ୍ତି । ଆମ ରାଜ୍ୟର ୬ଟି ସରକାରୀ ଶିଳ୍ପ ତାଲିମ ପ୍ରତିଷ୍ଠାନ ସମଗ୍ର ଦେଶର ୧୦୦ଟି ଶ୍ରେଷ୍ଠ ଆଇଟିଆଇ ମଧରେ ସ୍ଥାନିତ ହେବାର ଗୌରବ ହାସଲ କରିଛନ୍ତି । 'ସୁଦକ୍ଷା' ଉପକ୍ରମ କାର୍ଯ୍ୟକାରୀ ହେବା ଫଳରେ ରାଜ୍ୟ ଶିଳ୍ପାନୁଷ୍ଠାନଗୁଡ଼ିକରେ ବାଳିକାମାନଙ୍କ ଉପସ୍ଥାନ ୬ ପ୍ରତିଶତରୁ ବର୍ତ୍ତମାନ ୧୮ ପ୍ରତିଶତକୁ ବୃଦ୍ଧି ପାଇଛି । ମୋ ସରକାର ପ୍ରତ୍ୟେକ ଶିଳ୍ପ ତାଲିମ ପ୍ରତିଷ୍ଠାନରେ ଅଧୟନ ପାଇଁ ବାଳିକାମାନଙ୍କର ଉପସ୍ଥାନ ଅତିକମ୍‌ରେ ୩୦ ପ୍ରତିଶତକୁ ବୃଦ୍ଧି କରିବା ନିମନ୍ତେ ଲକ୍ଷ୍ୟ ରଖିଛନ୍ତି ।

୪୫.ମୋ ସରକାର ଆଇଟିଇଏସ୍, ସିଙ୍ଗାପୁରର ସହଯୋଗରେ ଭୁବନେଶ୍ୱରରେ ୱାର୍ଲ୍ଡ ସ୍କିଲ୍ ସେଣ୍ଟର ପ୍ରତିଷ୍ଠା କରି ଏଥିରେ ବିଶ୍ୱସ୍ତରୀୟ ସମସ୍ତ ଅତ୍ୟାଧୁନିକ ସୁବିଧାର ବ୍ୟବସ୍ଥା କରାଯାଇଛି, ଯାହା ବୈଷୟିକ ଶିକ୍ଷା ପାଠ୍ୟକ୍ରମ, ଶିକ୍ଷାଦାନ, ପରୀକ୍ଷାଗାର ଏବଂ କର୍ମଶାଳା କ୍ଷେତ୍ରରେ ଏକ ନୂତନ ଅନୁକରଣୀୟ ଉଦାହରଣ ସୃଷ୍ଟି କରିବ । ମୋ ସରକାର ଓଡ଼ିଶା ଦକ୍ଷତା ବିକାଶ କର୍ତ୍ତୃପକ୍ଷଙ୍କ ଦ୍ୱାରା ପ୍ରସ୍ତୁତ ନାନୋ–ୟୁନିକର୍ଣ୍ଣ ପ୍ରକଳ୍ପ ଅଧୀନରେ ୨୫୦ ଜଣ ଯୁବ ଉଦ୍ୟୋଗୀଙ୍କୁ ଚିହ୍ନଟ କରି ଔଦ୍ୟୋଗିକ ବିକାଶ ସମ୍ପର୍କରେ ପ୍ରଶିକ୍ଷଣ ପ୍ରଦାନ କରିଛନ୍ତି । ମୋ ସରକାର ୨୦୧୯–୨୦ ବର୍ଷରେ 'ମୁଖ୍ୟମନ୍ତ୍ରୀ ନିଯୁକ୍ତି ସୃଷ୍ଟି କାର୍ଯ୍ୟକ୍ରମ'ରେ ପ୍ରାୟ ୩.୩ ଲକ୍ଷ ଯୁବକ ଯୁବତୀଙ୍କୁ ସାମାଜିକ ଦକ୍ଷତା ବିକାଶ ପ୍ରଶିକ୍ଷଣ ପ୍ରଦାନ କରିଛନ୍ତି ।

୪୬. ମୋ ସରକାର ଏମ.ସି.ଏ, ଏମ.ବି.ଏ, ବି.ଟେକ୍, ବି.ଇ, ଆଇ.ଟି.ଆଇ ଏବଂ ପଲିଟେକ୍‌ନିକ୍ ସାର୍ଟିଫିକେଟ୍‌ଧାରୀ ବୈଷୟିକ ଛାତ୍ରଛାତ୍ରୀଙ୍କ ଦକ୍ଷତା ସ୍ତର ତଥା ନିଯୁକ୍ତି ସମ୍ଭାବନା ବୃଦ୍ଧି କରିବା ନିମନ୍ତେ 'ଡିଜିଟ୍ ଅଲ୍' କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି । ଏହାଦ୍ୱାରା ସ୍ଥାନୀୟ ଆଇଟି ଉଦ୍ୟୋଗଗୁଡ଼ିକୁ ସେମାନଙ୍କର କାର୍ଯ୍ୟ ପରିସୀମା ବୃଦ୍ଧି ନିମନ୍ତେ ଆବଶ୍ୟକ ଦକ୍ଷ ମାନବ ସମ୍ବଳ ସହଜରେ ଉପଲବ୍ଧ ହୋଇପାରୁଛି । ମୋ ସରକାର ଜିଲ୍ଲାସ୍ତରରେ ୩୪ଟି ଦକ୍ଷତା ବିକାଶ କେନ୍ଦ୍ର ଏବଂ ସରକାରୀ ଆଇଟିଆଇ ଏବଂ ପଲିଟେକ୍‌ନିକ୍‌ ପରିସରରେ ୩୮ଟି ଦକ୍ଷତା ବିକାଶ ସମ୍ପ୍ରସାରଣ କେନ୍ଦ୍ର ପ୍ରତିଷ୍ଠା କରୁଛନ୍ତି, ଯାହାଦ୍ୱାରା ଗ୍ରାମାଞ୍ଚଳର ଯୁବକ ଯୁବତୀମାନଙ୍କର ନିଯୁକ୍ତି ସମ୍ଭାବନା ବୃଦ୍ଧି ପାଇବ ।

୪୭. ଉଚ୍ଚଶିକ୍ଷାର ପ୍ରତ୍ୟେକ କ୍ଷେତ୍ରରେ ଉତ୍କର୍ଷ ହାସଲ କରିବା ଲକ୍ଷ୍ୟରେ ଓଡ଼ିଆ ବିଶ୍ୱବିଦ୍ୟାଳୟ ଆଇନ, ୨୦୧୭ ପ୍ରଣୟନ କରାଯାଇ ଓଡ଼ିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯାଇଛି । ଓଡ଼ିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନିମନ୍ତେ ସତ୍ୟବାଦୀଠାରେ ଆବଶ୍ୟକୀୟ ଜମି ଅଧିଗ୍ରହଣ କରାଯାଇଛି । ମୋ ସରକାର 'ଓଡିଶା ବିଶ୍ୱବିଦ୍ୟାଳୟ ଗବେଷଣା ଓ ନବ ଉନ୍ମେଷ ପ୍ରୋତ୍ସାହନ ଯୋଜନା' ଭଳି ଏକ ନୂତନ ଉଦ୍ୟମ ମାଧମରେ ଗବେଷଣାଜନିତ ଦୂରତ୍ୱ ହ୍ରାସ କରିବା ସହିତ ମହିଳା ଗବେଷକଙ୍କୁ ଅଧିକ ଗୁରୁତ୍ୱ ନେଇ ନୂତନ କ୍ଷେତ୍ରରେ ଗବେଷଣା ନିମନ୍ତେ ସୁଯୋଗ ସୃଷ୍ଟି କରିବ । ଗବେଷକମାନଙ୍କ ପାଇଁ ଆର୍ଥିକ ପ୍ରୋତ୍ସାହନ, ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟରେ କାର୍ଯ୍ୟରତ ଯୁବ ଅଧ୍ୟାପକମାନଙ୍କୁ ଗବେଷଣା ନିମନ୍ତେ ମୂଳ ପୁଞ୍ଜି ସହିତ ସନ୍ଦର୍ଭ ପ୍ରକାଶନ ନିମନ୍ତେ ସହାୟତା ଏହି ଯୋଜନାରେ ଯୋଗାଇ ଦିଆଯିବ ।

୪୮. ଉଭୟ ଜାତୀୟ ଓ ଅନ୍ତର୍ଜାତୀୟ କ୍ଷେତ୍ରରେ ଓଡ଼ିଶା ଏକ କ୍ରୀଡ଼ା ଶକ୍ତିଶାଳୀ ରାଜ୍ୟ ଭାବରେ ଦ୍ରୁତ ପ୍ରତିଷ୍ଠା ଲାଭ କରୁଛି । ମୋ ସରକାର ରାଜ୍ୟକୁ ଦେଶର ପ୍ରମୁଖ କ୍ରୀଡା ଲକ୍ଷ୍ୟସ୍ଥଳରେ ପରିଣତ କରିବା ପାଇଁ ପ୍ରତିବଦ୍ଧ । ଭୁବନେଶ୍ୱର ଓ ରାଉରକେଲାରେ ଏଫ୍.ଆଇ.ଏଚ୍ ପୁରୁଷ ହକି ବିଶ୍ୱ କପ, ୨୦୨୩ର ଆୟୋଜକ ଅଧିକାର ଆମ ପାଇଁ ଏକ ମହତ୍ତ୍ୱପୂର୍ଣ୍ଣ ଉପଲବ୍ଧି । ୨୦୨୩ ବିଶ୍ୱ କପ ହକି ପୂର୍ବରୁ ରାଉରକେଲାରେ ଭାରତବର୍ଷର ବୃହତ୍ତମ ହକି ଷ୍ଟାଡ଼ିୟମ୍‌ର ନିର୍ମାଣ କରାଯାଉଛି ଏବଂ ସୁନ୍ଦରଗଡ଼ ଜିଲ୍ଲାର ସମସ୍ତ ୧୭ଟି ବ୍ଲକ୍‌ରେ ଆଷ୍ଟ୍ରୋଟର୍ଫ ହକି ପଡ଼ିଆ ନିର୍ମାଣ କରାଯାଉଛି । ଏହା ପିଲାମାନଙ୍କୁ ଛୋଟବେଳୁ ଉଚ୍ଚମାନର ପ୍ରଶିକ୍ଷଣ ସୁଯୋଗ ପ୍ରଦାନ କରିବା ସହ ପ୍ରତ୍ୟେକଙ୍କୁ ଜଣେ ଜଣେ ପେଶାଦାର ହକି ଖେଳାଳୀ ଭାବରେ ପ୍ରତିଷ୍ଠିତ ହେବା ନିମନ୍ତେ ବେଶ୍ ସହାୟକ ହେବ ।

୪୯. ମୋ ସରକାର ସର୍ବଦା ତୃଣମୂଳ ସ୍ତରରୁ କ୍ରୀଡ଼ା ପ୍ରତିଭାର ଚିହ୍ନଟ କରି ସେମାନଙ୍କ ନିମନ୍ତେ କ୍ରୀଡ଼ା ଛାତ୍ରାବାସ, ଏକାଡେମୀ ଏବଂ ଉଚ୍ଚମାନ ପ୍ରଦର୍ଶନ କେନ୍ଦ୍ରରେ ତାଲିମ ପ୍ରଦାନ ନିମନ୍ତେ ସଦାସର୍ବଦା ପ୍ରୟାସ କରୁଛନ୍ତି । ରାଜ୍ୟବ୍ୟାପୀ କ୍ରୀଡା ଭିତ୍ତିଭୂମିକୁ ସୁଦୃଢ କରିବା ଉଦ୍ଦେଶ୍ୟରେ ସମସ୍ତ ଜିଲ୍ଲାର ସହରାଞ୍ଚଳରେ ମୋ ସରକାର ଇନ୍‌ଡୋର କ୍ରୀଡାଶାଳା, ଖେଳ ପଡିଆ ଇତ୍ୟାଦି ନିର୍ମାଣ କରୁଛନ୍ତି ।

୫୦. ମୋ ସରକାର ରାଜ୍ୟରେ ସ୍ୱତନ୍ତ୍ର କୃଷି ବଜେଟ, କୃଷି କ୍ଷେତ୍ରର ଦ୍ରୁତ ଅଭିବୃଦ୍ଧି ତଥା କ୍ଷେତ୍ରୀୟ ବିକାଶ ନିମନ୍ତେ କୃଷି କ୍ୟାବିନେଟ, କୃଷକମାନଙ୍କ ନିମନ୍ତେ ଦେଶର ଅନନ୍ୟ କୃଷକ ସହାୟତା ଯୋଜନା 'କାଳିଆ', ଏବଂ ଯୁଗ୍ମ ଦେୟ ଗୋଷ୍ଠୀ ତଥା ଭାଗଚାଷୀମାନଙ୍କୁ ଋଣ ଯୋଗାଣ ନିମନ୍ତେ ଏକ ନୂତନ ଯୋଜନା 'ବଳରାମ' ଭଳି ଏକାଧିକ ସୁଚିନ୍ତିତ ପଦକ୍ଷେପ ଗ୍ରହଣ କରି କୃଷିଭିତ୍ତିକ ଅଭିବୃଦ୍ଧି ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦେଇଛନ୍ତି ।

୫୧. ଏହା ଉଲ୍ଲେଖଯୋଗ୍ୟ ଯେ ନୀତି ଆୟୋଗ ଏବଂ ଭାରତ ସରକାରଙ୍କ କୃଷି ଓ କୃଷକ କଲ୍ୟାଣ ମନ୍ତ୍ରାଳୟ ଓଡ଼ିଶା ମିଲେଟ୍ ମିଶନକୁ ସର୍ବୋତ୍ତମ ମଡେଲ୍ ଭାବରେ ଅଭିହିତ କରିବା ସହିତ ଅନ୍ୟ ରାଜ୍ୟ ସରକାରଙ୍କୁ ଏହି ଜାତୀୟ ଶସ୍ୟ ଉତ୍ପାଦନ ଓ ଅଭିବୃଦ୍ଧି ନିମନ୍ତେ ଓଡ଼ିଶା ମିଲେଟ ମିଶନ ମଡେଲ୍ ଗ୍ରହଣ କରିବା ପାଇଁ ପରାମର୍ଶ ଦେଇଛନ୍ତି । ଓଡ଼ିଶା ମିଲେଟ ମିଶନ ସହ ସହଭାଗିତାରେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଜଳବାୟୁ ଅନୁକୂଳ ଉପଯୋଗିତା ସମ୍ପର୍କରେ କୃଷି ପଦ୍ଧତି ପରିବର୍ତ୍ତନରେ ମିଲେଟ୍ ଚାଷର ଗବେଷଣା କରୁଛି ।

୫୨. ଇଜ୍ ଅଫ୍ ଡୁଇଙ୍ଗ୍ ଏଗ୍ରି–ବିଜିନେସ୍ ସହାୟତାରେ କୃଷି ଉଦ୍ୟୋଗ ବିକାଶ ନିମନ୍ତେ ମୋ ସରକାର 'ମୁଖ୍ୟମନ୍ତ୍ରୀ କୃଷି ଉଦ୍ୟୋଗ ଯୋଜନା'ର କାର୍ଯ୍ୟକାରୀ କରୁଛନ୍ତି ।

୫୩. ଜଳସେଚନ କ୍ଷମତା ସୃଷ୍ଟି ଦ୍ୱାରା ଲୋକଙ୍କ ଜୀବିକା ଅର୍ଜନରେ ଉନ୍ନତି ଆଣିବା ନିମନ୍ତେ ମୋ ସରକାର ମୃତ୍ତିକା ସଂରକ୍ଷଣ ପ୍ରକଳ୍ପ, ବୃକ୍ଷରୋପଣ, ଜଳବିଭାଜିକା ଉନ୍ନୟନ କାର୍ଯ୍ୟ, ଅଣୁ ଜଳବିଭାଜିକା କ୍ଲଷ୍ଟର ଓ ଜଳ ଅମଳ ପ୍ରକଳ୍ପ କାର୍ଯ୍ୟକାରୀ କରୁଛନ୍ତି ।

୫୪. ମୋ ସରକାର ରାଜ୍ୟର କୃଷକ, ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଏବଂ ଉଦ୍ୟୋଗୀମାନଙ୍କର ଅଭିବୃଦ୍ଧି ଉତ୍‌ପ୍ରେରକ ଭାବରେ କୃଷି ଓ ଆନୁଷଙ୍ଗିକ କ୍ଷେତ୍ରକୁ ଚିହ୍ନଟ କରିଛନ୍ତି । ଓଡ଼ିଶାର ମତ୍ସ୍ୟଚାଷ କ୍ଷେତ୍ରରେ ସଫଳତା ସମ୍ପ୍ରତି ମଧୁରଜଳ ମତ୍ସ୍ୟଚାଷ କ୍ଷେତ୍ରରେ ଦୁଇଟି ଜାତୀୟ ସ୍ତରର ପୁରସ୍କାର 'ବେଷ୍ଟ ମେରାଇନ୍ ଷ୍ଟେଟ୍' ଓ କଳାହାଣ୍ଡି ଜିଲ୍ଲା 'ବେଷ୍ଟ ଡିଷ୍ଟ୍ରିକ୍ଟ ଆୱାର୍ଡ଼' ଭଳି ଦୁଇଟି ନୂଆ କୀର୍ତ୍ତିମାନ ଦ୍ୱାରା ପ୍ରମାଣିତ ହୋଇଛି ।

୫୫. ମୋ ସରକାର ଜଳ ସଂରକ୍ଷଣ ଓ ଜଳ ବ୍ୟବହାରରେ ଦକ୍ଷତା ହାସଲ ଉପରେ ଯଥେଷ୍ଟ ଗୁରୁତ୍ୱାରୋପ କରିବା ପାଇଁ ଆସନ୍ତା ୪–୫ ବର୍ଷ ମଧ୍ୟରେ ୧୧,୭୦୦ କୋଟି ଟଙ୍କା ପୁଞ୍ଜି ନିବେଶରେ ଭୂପୃଷ୍ଠ ଜଳ ଓ ନଦୀ ଜଳର

ବ୍ୟାପକ ସଂରକ୍ଷଣ କାର୍ଯ୍ୟ ହାତକୁ ନେଉଛନ୍ତି । 'ଗ୍ରୀନ୍ କ୍ଲାଇମେଟ୍ ଫଣ୍ଡ' ସହଭାଗିତାରେ ୧୦୯୮ କୋଟି ଟଙ୍କାରେ ରାଜ୍ୟର ୧୫ଟି ଜିଲ୍ଲାରେ ୧୦ ହଜାର କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ଓ ଜଳସେଚନ ଟ୍ୟାଙ୍କ୍ ମାଧ୍ୟମରେ ଭୂତଳ ଜଳ ସ୍ତର ବୃଦ୍ଧି ପାଇଁ ଉଦ୍ୟମ କରାଯାଉଛି । ଜଳ ସଂରକ୍ଷଣ ନିମନ୍ତେ 'ମୁଖ୍ୟମନ୍ତ୍ରୀ ଆଡ଼ିବନ୍ଧ ତିଆରି ଯୋଜନା'ରେ ପ୍ରାୟ ୧୬ ହଜାର ଆଡ଼ିବନ୍ଧ ନିର୍ମାଣ କରାଯାଇଛି । ଗଭୀର ନଳକୂପ ଯୋଜନା ଏବଂ ପାର୍ବତୀ ଗିରି ମେଗା ଉଠା ଜଳସେଚନ କାର୍ଯ୍ୟକ୍ରମ ରାଜ୍ୟରେ ଜଳସେଚନ ଦୃଶ୍ୟପଟରେ ପରିଦୃଶ୍ୟ ପରିବର୍ତ୍ତନ ଆଣିପାରିଛି । ଏପର୍ଯ୍ୟନ୍ତ ମୋ ସରକାର କୃଷକମାନଙ୍କୁ ପ୍ରାୟ ୭୯ ହଜାର ଗଭୀର ନଳକୂପ ହସ୍ତାନ୍ତର କରିବା ସହିତ ୧୦୯ଗୋଟି ମେଗା ଉଠାଜଳସେଚନ ପ୍ରକଳ୍ପ କାର୍ଯ୍ୟକାରୀ କରିଛନ୍ତି ।

୫୬. ମୋ ସରକାର ପ୍ରଶାସନରେ ସ୍ୱଚ୍ଛତା ଏବଂ ଶାସନ ବ୍ୟବସ୍ଥାରେ ସକ୍ରିୟ ଜନସହଭାଗିତାକୁ ସର୍ବାଧିକ ଗୁରୁତ୍ୱ ଦିଅନ୍ତି । ୫'ଟି' ଉପକ୍ରମରେ କୃଷକଙ୍କ ଅଭିଯୋଗ ସମାଧାନ ନିମନ୍ତେ ଏକ ମୋବାଇଲ–ଆପ୍ ''ସେଚ ସମାଧାନ'' ସହିତ ଗଭୀର ନଳକୂପ ଏବଂ ଗୋଷ୍ଠୀ ଉଠା ଜଳସେଚନ ପ୍ରକଳ୍ପ ପାଇଁ ଚାଷୀଙ୍କଠାରୁ ଅନ୍‌ଲାଇନ୍ ଆବେଦନପତ୍ର ଗ୍ରହଣ କରିବାକୁ ଏକ ୱେବ୍ ପୋର୍ଟାଲ ପ୍ରସ୍ତୁତ କରାଯାଇଛି । ଏତଦ୍‌ବ୍ୟତୀତ, ବାଣିଜ୍ୟିକ ଓ ଅନ୍ୟାନ୍ୟ ପ୍ରତିଷ୍ଠାନଗୁଡ଼ିକୁ ଜଳ ଯୋଗାଣ ନିମନ୍ତେ ଅନ୍‌ଲାଇନ୍ ଆବେଦନପତ୍ର ଗ୍ରହଣ କରିବା ପାଇଁ ଅନ୍ୟ ଏକ ୱେବ୍ ପୋର୍ଟାଲ ବିକଶିତ କରାଯାଇଛି ।

୫୭. ମୋ ସରକାର, ଚାଷୀମାନେ ଯେପରି ସେମାନଙ୍କ ପାଇଁ ମଞ୍ଜୁର ହୋଇଥିବା ଋଣ ଏଟିଏମ୍ ମାଧ୍ୟମରେ ଉଠାଣ କରିପାରିବେ, ସେଥିପାଇଁ ସମସ୍ତ କିଷାନ୍ କ୍ରେଡ଼ିଟ କାର୍ଡ଼କୁ ରୁ–ପେ କିଷାନ୍ କାର୍ଡ଼ ଭାବେ ପରିବର୍ତ୍ତିତ କରିବା ପାଇଁ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରିଛନ୍ତି । ବିତ୍ତୀୟ ଅନୁଷ୍ଠାନରୁ ବିନା ବନ୍ଧକରେ ଋଣ ପାଇବା ପାଇଁ କ୍ଷୁଦ୍ର, ନାମମାତ୍ର ତଥା ଭୂମିହୀନ ଚାଷୀ, ଭାଗଚାଷୀ ଏବଂ ଗ୍ରାମୀଣ ମହିଳାମାନଙ୍କୁ ବିଭିନ୍ନ ଯୁଗ୍ମ ଋଣ ଗୋଷ୍ଠୀରେ ସଂଗଠିତ କରାଯାଇଛି । ଚଳିତ ଆର୍ଥିକ ବର୍ଷର ଡିସେମ୍ବର ମାସ ସୁଦ୍ଧା ପ୍ରାୟ ୩୮,୦୦୦ଟି ଯୁଗ୍ମ ଋଣ ଗୋଷ୍ଠୀଙ୍କୁ ସମବାୟ ବ୍ୟାଙ୍କ ଜରିଆରେ ୨୩୦ କୋଟି ଟଙ୍କା ଋଣ ଯୋଗାଇ ଦିଆଯାଇଛି । 'କାଳିଆ' ଯୋଜନାରେ ୫୦ ହଜାର ଟଙ୍କା ପର୍ଯ୍ୟନ୍ତ ଋଣକୁ ୨୦୧୯–୨୦ ଠାରୁ ବିନା ସୁଧ ଋଣରେ ପରିଣତ ହୋଇଛି ।

୫୮. ଓଡ଼ିଶା ଦ୍ରୁତ ଗତିରେ ପୂର୍ବ ଭାରତର ଉତ୍ପାଦନ କେନ୍ଦ୍ର ଭାବେ ଉଭା ହେଉଛି । ମୋ ସରକାର ପ୍ରଗତିଶୀଳ ନୀତି ପ୍ରଣୟନ ଏବଂ ଉପଯୋଗ ଏବଂ ସହଜ ବ୍ୟବସାୟିକ ସୁଯୋଗ ସୃଷ୍ଟି କରିବା ନିମନ୍ତେ ସର୍ବୋତ୍ତମ ଭିତ୍ତିଭୂମି ବିକଶିତ କରିବା ସହିତ ରାଜ୍ୟରେ ଶିଳ୍ପ ବିକାଶ ନିମନ୍ତେ ଅନୁକୂଳ ବାତାବରଣ ସୃଷ୍ଟି କରିଛନ୍ତି । କୋଭିଡ଼୍ ମହାମାରୀ ପରିସ୍ଥିତିରେ ମଧ୍ୟ ଓଡ଼ିଶା ବିଭିନ୍ନ କ୍ଷେତ୍ରରେ ବିପୁଳ ପୁଞ୍ଜି ନିବେଶ ଆକୃଷ୍ଟ କରିବାରେ ସକ୍ଷମ ହୋଇଛି ଏବଂ ୧.୨୦ ଲକ୍ଷ କୋଟି ଟଙ୍କାର ପୁଞ୍ଜି ନିବେଶ ପ୍ରସ୍ତାବକୁ ଇତି ମଧ୍ୟରେ ମଞ୍ଜୁର ଦେଇସାରିଛି । ଏହି ସମୟ ମଧ୍ୟରେ ସ୍ୱାସ୍ଥ୍ୟସେବା, ଅକ୍ଷୟ ଶକ୍ତି, ଇସ୍ପାତ ଓ ଆଲୁମିନିୟମ୍‌ର ସହଭାଗୀ ଶିଳ୍ପ, ଆଇଟି ଏବଂ ଖାଦ୍ୟ ପ୍ରକ୍ରିୟାକରଣ ଭଳି ବହୁବିଧ ପ୍ରକଳ୍ପଗୁଡ଼ିକ କାର୍ଯ୍ୟକ୍ଷମ ହୋଇଛି ।

୫୯. ଅଣୁ, କ୍ଷୁଦ୍ର ଓ ମଧ୍ୟମ ଶିଳ୍ପ ପ୍ରତିଷ୍ଠାନଗୁଡିକୁ ପ୍ରୋତ୍ସାହିତ କରିବା ନିମନ୍ତେ ଇଡ୍‌କୋ ରାଜ୍ୟର ପ୍ରମୁଖ ସ୍ଥାନରେ ୧୧୭ ଗୋଟି ଶିଳ୍ପାଞ୍ଚଳ ବିକାଶ କରିଛି । ମୋ ସରକାର ପ୍ରଥମ ପର୍ଯ୍ୟାୟରେ ରହିଥିବା ୧୦ ଗୋଟି ଶିଳ୍ପାଞ୍ଚଳର ଆଧୁନିକୀକରଣ ଏବଂ ସମ୍ପ୍ରସାରଣ କରିବା ସହିତ ଭିଜନ–୨୦୨୫ରେ ପ୍ରସ୍ତାବିତ ୫ ଗୋଟି ସର୍ବୋତ୍କୃଷ୍ଟ ନୂତନ ଶିଳ୍ପପୁଞ୍ଜ ଆଗାମୀ ୫ ବର୍ଷରେ ସୃଷ୍ଟି କରିବାକୁ ପଦକ୍ଷେପ ଗ୍ରହଣ କରିଛନ୍ତି ।

୬୦. ଷ୍ଟାର୍ଟ–ଅପ୍ ଓଡ଼ିଶା ନୀତି ଏବଂ ଷ୍ଟାର୍ଟ–ଅପ୍ ଓଡ଼ିଶା ପୋର୍ଟାଲ୍‌ର ପ୍ରଚଳନ କରି ମୋ ସରକାର ଷ୍ଟାର୍ଟ–ଅପ୍ ଓଡ଼ିଶା ଉପକ୍ରମ ଆରମ୍ଭ କରିଛନ୍ତି । ଭାରତ ସରକାରଙ୍କ ବାଣିଜ୍ୟ ଓ ଶିଳ୍ପ ମନ୍ତ୍ରାଳୟର ଶିଳ୍ପ ଓ ଆଭ୍ୟନ୍ତରୀଣ ବାଣିଜ୍ୟ

ପ୍ରୋତ୍ସାହନ ବିଭାଗ ଦ୍ୱାରା ସମସ୍ତ ରାଜ୍ୟମାନଙ୍କ ମଧ୍ୟରେ ଓଡ଼ିଶା କ୍ରମାଗତ ଭାବେ ୨୦୧୮ ଏବଂ ୨୦୧୯ ମସିହାରେ ଯଥାକ୍ରମେ ''ଶ୍ରେଷ୍ଠ ପ୍ରଦର୍ଶନକାରୀ'' ଓ ''ଶୀର୍ଷ ରାଜ୍ୟ''ର ମାନ୍ୟତା ପାଇଆସିଛି ।

୬୧. ମୋ ସରକାର କୋଭିଡ଼ ପରିସ୍ଥିତିରୁ ମୁକୁଳିବା ପାଇଁ ଅଣୁ, କ୍ଷୁଦ୍ର ଏବଂ ମଧ୍ୟମ ଉଦ୍ୟୋଗଗୁଡ଼ିକ ପାଇଁ ୨୮୯ କୋଟିର ସ୍ୱତନ୍ତ୍ର ସହାୟତା ପ୍ୟାକେଜ୍ ଘୋଷଣା କରିଛନ୍ତି, ଯେଉଁଥିରେ ଇ.ସି.ଜି.ଏସ୍. ସହାୟତା ପ୍ରାପ୍ତ ୧.୭୬ ଲକ୍ଷ ଉଦ୍ୟୋଗ ପାଇଁ ସୁଧ ଛାଡ଼, ପି.ଏମ୍.ଇ.ଜି.ପି. ଅଧୀନସ୍ଥ ୪,୩୫୯ ଅଣୁ ଉଦ୍ୟୋଗ ପାଇଁ ପ୍ରକଳ୍ପ ମୂଲ୍ୟର ୫ ପ୍ରତିଶତ ପ୍ରୋତ୍ସାହନ ଭାଗ ଅନୁଦାନ, କୋଭିଡ-୧୯ ସହାୟତା ପ୍ୟାକେଜ ସହିତ ଉଦ୍ୟୋଗଗୁଡ଼ିକୁ ପାଇଁ ୧୦୦ କୋଟି ଟଙ୍କାର ସହାୟତା, ପି.ଏମ୍.ଏଫ୍.ଏମ୍.ଏଫ.ପି.ଇ. ଅନ୍ତର୍ଭୁକ୍ତ ଖାଦ୍ୟ ପ୍ରକ୍ରିୟାକରଣ ଉଦ୍ୟୋଗଗୁଡ଼ିକ ପାଇଁ ପ୍ରକଳ୍ପ ମୂଲ୍ୟର ୧୫ ପ୍ରତିଶତ ଟପ୍-ଅପ୍ ରିହାତି, ୧୭୫ଟି ଅଣୁ, କ୍ଷୁଦ୍ର ଏବଂ ମଧ୍ୟମ ଉଦ୍ୟୋଗ ପାଇଁ ରାଜ୍ୟ ଜିଏସ୍ଟି ରିହାତି ଏବଂ ଇଡ୍‌କୋ ଶିଳ୍ପାଞ୍ଚଳରେ ଅବସ୍ଥିତ ୫୦୦୦ ଅଣୁ, କ୍ଷୁଦ୍ର ଏବଂ ମଧ୍ୟମ ଉଦ୍ୟୋଗ ପାଇଁ ଇଡକୋକୁ ବାର୍ଷିକ ରକ୍ଷଣାବେକ୍ଷଣ ଦେୟ ଛାଡ଼ ଭଳି ଗୁରୁତ୍ୱପୂର୍ଣ୍ଣ ସହାୟତା ଅନ୍ତର୍ଭୁକ୍ତ ।

୬୨. ଆମ ରାଜ୍ୟରେ ହସ୍ତତନ୍ତ ଓ ହସ୍ତ ଶିଳ୍ପର ଏକ ସମୃଦ୍ଧ ପରମ୍ପରା ରହିଛି । ୨୦୨୦-୨୧ ମସିହାରେ ହସ୍ତତନ୍ତ ଶିଳ୍ପର ବିକାଶ ନିମନ୍ତେ ୫୨ କୋଟି ଟଙ୍କା ସହାୟତା ଆକାରରେ ଯୋଗାଇ ଦିଆଯାଇଛି । ମୋ ସରକାର କୋଭିଡ-୧୯ ମହାମାରୀ ସମୟରେ ହସ୍ତତନ୍ତ ବୁଣାକାରମାନଙ୍କୁ କର୍ମ ନିଯୁକ୍ତି ସୁଯୋଗ ଯୋଗାଇଦେବା ଉଦ୍ଦେଶ୍ୟରେ ରାଜ୍ୟର ଅଗ୍ରଣୀ ବିପଣନ ସଂସ୍ଥା ଉତ୍କଳିକା ଓ ବୟନିକାକୁ ସୁଧମୁକ୍ତ ଋଣ ପ୍ରଦାନ କରିଛନ୍ତି । ଆମ କାରିଗରମାନଙ୍କୁ ବିଶ୍ୱବଜାରରେ ନିଜ ଉତ୍ପାଦ ଅନ୍‌ଲାଇନ୍ ମାଧ୍ୟମରେ ବିକ୍ରି କରିବା ପାଇଁ ଇ-ବଜାର ସୁବିଧା ଯୋଗାଇ ଦେବାକୁ ଫ୍ଲିପ୍‌କାର୍ଟ ଓ ଆଜିଓ ସହ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଛି ।

୬୩. ଓଡ଼ିଶାର ପର୍ଯ୍ୟଟନ ଓ ଆତିଥେୟତା କ୍ଷେତ୍ରରେ ବିପୁଳ ନିଯୁକ୍ତି ସୁଯୋଗ ରହିଛି ଏବଂ ରାଜ୍ୟ ଅର୍ଥନୀତିରେ ଏହାର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି । ଏହା ପ୍ରାୟ ୧.୨ ଲକ୍ଷ ଲୋକଙ୍କୁ ପ୍ରତ୍ୟକ୍ଷ ନିଯୁକ୍ତି ପ୍ରଦାନ କରିଛି ଏବଂ ଏହା ଅଧୀନସ୍ଥ ଆନୁଷଙ୍ଗିକ ସଂଗଠିତ କ୍ଷେତ୍ରରେ ଅନ୍ୟୂନ ୩ ଲକ୍ଷ ଲୋକଙ୍କୁ ନିଯୁକ୍ତି ମିଳିଛି । ପର୍ଯ୍ୟଟନ ସହ ଜଡ଼ିତ ଅଣସଂଗଠିତ କ୍ଷେତ୍ର ସମେତ ଏହି କ୍ଷେତ୍ରରେ ସମୁଦାୟ ନିଯୁକ୍ତି ପ୍ରାୟ ୧୦ ଲକ୍ଷ ହେବ ବୋଲି ଆକଳନ କରାଯାଇଛି । ରାଜ୍ୟରେ ପର୍ଯ୍ୟଟନ ଭିତ୍ତିଭୂମିର ବିକାଶ ନିମନ୍ତେ ନୂତନ ପର୍ଯ୍ୟଟନ ନୀତି ପ୍ରଣୟନ, ପ୍ରମୁଖ ପର୍ଯ୍ୟଟନ କ୍ଷେତ୍ର ଓ ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଭିତ୍ତିଭୂମି ବିକାଶ, କୋଣାର୍କର ପରିବେଶ ପର୍ଯ୍ୟଟନ, ଭିତରକନିକା ଜାତୀୟ ଉଦ୍ୟାନ, ଦାରିଙ୍ଗିବାଡି ଶୈଳ ନିବାସ, ହୀରାକୁଦ ଜଳଭଣ୍ଡାର, କୋଣାର୍କର ରାମଚଣ୍ଡୀ ବେଳାଭୂମି, ସାତକୋଶିଆ ବ୍ୟାଘ୍ର ସଂରକ୍ଷଣ ପ୍ରକଳ୍ପ ଏବଂ ସାତକୋଶିଆ ଓ ଶିମିଳିପାଳଠାରେ ପରିବେଶ ପର୍ଯ୍ୟଟନ ଶିବିର ଆୟୋଜନ ଭଳି ଅନେକ ପଦକ୍ଷେପ ମୋ ସରକାର ଗ୍ରହଣ କରିଛନ୍ତି ।

୬୪. ଶିଳ୍ପସଂସ୍ଥାଗୁଡ଼ିକ ଦ୍ୱାରା ମାଲ୍ ପରିବହନ ପାଇଁ କରିଡର ବ୍ୟବସ୍ଥା, ଠିକ୍ ସମୟରେ ଦ୍ରବ୍ୟ ଓ ସେବା ପହଞ୍ଚାଇବା ଏବଂ ଅପହଞ୍ଚ ଗ୍ରାମାଞ୍ଚଳ ଇଲାକାରେ ବସବାସ କରୁଥିବା ଲୋକଙ୍କ ଜୀବନଧାରଣ ମାନରେ ଉନ୍ନତି ଆଣିବା ପାଇଁ ମୋ ସରକାର ବ୍ୟାପକ ସଡ଼କ ଭିତ୍ତିଭୂମି ନିର୍ମାଣ କରିଛନ୍ତି । ପ୍ରମୁଖ ପର୍ଯ୍ୟଟନ ସ୍ଥଳୀଗୁଡ଼ିକର ଐତିହ୍ୟ ଓ କୀର୍ତ୍ତିରାଜିଗୁଡ଼ିକର ସମନ୍ୱିତ ବିକାଶ ସହିତ ସାରା ରାଜ୍ୟରେ ଥିବା ଐତିହ୍ୟ କ୍ଷେତ୍ରଗୁଡ଼ିକର ସଂରକ୍ଷଣ, ପୁନର୍ବିନ୍ୟାସ ଓ ଉନ୍ନତିକରଣ ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଉଛି । ୨୦୨୦-୨୧ ମସିହାରେ ମୋ ସରକାର ୫୫୦୪ କି.ମି. ଗ୍ରାମାଞ୍ଚଳ ରାସ୍ତା ଏବଂ ବିଭିନ୍ନ ଯୋଜନା ଅଧୀନରେ ଗ୍ରାମାଞ୍ଚଳରେ ୨୫୦ରୁ ଊର୍ଦ୍ଧ୍ୱ ପୋଲ ନିର୍ମାଣ କାର୍ଯ୍ୟ ଶେଷ କରିବା ଲକ୍ଷ୍ୟ ରଖିଛନ୍ତି ।

୬୫. ମୋ ସରକାର ୪୪୧ଟି ବସ୍ ଚଳାଚଳ ସହ ୨୫୬ଟି ରୁଟ୍‌ରେ ବସ୍ ସେବା ଯୋଗାଇ ଦେଇଛନ୍ତି, ଯହିଁରେ ୪୬ଟି ଆନ୍ତଃରାଜ୍ୟ ରୁଟ୍ ମଧ୍ୟ ଅନ୍ତର୍ଭୁକ୍ତ । ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ରେଳ ପ୍ରକଳ୍ପଗୁଡ଼ିକ ପାଇଁ ନିର୍ମାଣ ଖର୍ଚ୍ଚର ପ୍ରାୟ ୨୫ ପ୍ରତିଶତ ଅର୍ଥ ଏବଂ ମାଗଣା ଜମି ଆମେ ଯୋଗାଇ ଦେଉଛୁ । ଏଥିସହିତ ଆମେ କଳାହାଣ୍ଡି ଜିଲ୍ଲାର ନର୍ଲା ରେଳ ଷ୍ଟେସନଠାରୁ ପ୍ରସ୍ତାବିତ ବିଦ୍ୟୁତ ଲୋକୋମୋଟିଭ ୱାର୍କସପ୍ ପର୍ଯ୍ୟନ୍ତ ରେଳ ଲାଇନ୍ ସଂଯୋଗ ପାଇଁ ମାଗଣାରେ ଜମି ଯୋଗାଇ ଦେବାକୁ ନିଷ୍ପତ୍ତି ନେଇଛୁ, ଯାହା ଏହି ଅଞ୍ଚଳରେ ରେଳଭିତ୍ତିକ ଶିଳ୍ପ ଅଭିବୃଦ୍ଧିରେ ସହାୟକ ହେବ । ରାଜ୍ୟରେ ବିମାନ ଚଳାଚଳ ବ୍ୟବସ୍ଥାକୁ ସଂପ୍ରସାରିତ ଓ ଅଧିକ ବିକଶିତ କରିବା ପାଇଁ ମୋ ସରକାର ବିରାଶାଳ ଏୟାର ଷ୍ଟ୍ରିପ୍‌ଠାରେ ଏକ ବିମାନ ଚାଳନା ତାଲିମ କେନ୍ଦ୍ର, ମାଲକାନଗିରିଠାରେ ନୂତନ ଏୟାର ଷ୍ଟ୍ରିପ୍ ନିର୍ମାଣ, ଆରସିଏସ୍–ଉଡାଣ ଯୋଜନାରେ କୋରାପୁଟ ଜିଲ୍ଲାର ଜୟପୁର ଏୟାରଷ୍ଟ୍ରିପ୍, ସୁନ୍ଦରଗଡ ଜିଲ୍ଲାର ରାଉରକେଲା ଏୟାରଷ୍ଟ୍ରିପ୍, କଳାହାଣ୍ଡି ଜିଲ୍ଲାର ଉତ୍କେଲା ଏୟାରଷ୍ଟ୍ରିପ୍‌ର ଉନ୍ନତିକରଣ ଦ୍ୱାରା ଏଗୁଡ଼ିକୁ ପୂର୍ଣ୍ଣ ବିକଶିତ ବିମାନ ବନ୍ଦରରେ ପରିଣତ କରିବାକୁ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ମୋ ସରକାରଙ୍କ ଆନ୍ତରିକ ଉଦ୍ୟମ ଫଳରେ ଝାରସୁଗୁଡ଼ା ଏୟାରଷ୍ଟ୍ରିପ୍‌କୁ ଏକ ପୂର୍ଣ୍ଣାଙ୍ଗ ବ୍ୟବସାୟିକ ବିମାନ ବନ୍ଦରରେ କାର୍ଯ୍ୟକ୍ଷମ କରାଯାଇଛି ଏବଂ ସେଠାରୁ ୨୦୧୯ ମାର୍ଚ୍ଚଠାରୁ ବିମାନ ଚଳାଚଳ ଆରମ୍ଭ ହୋଇଛି ।

୬୬. ମୋ ସରକାର ସମସ୍ତଙ୍କୁ ୨୪ ଘଣ୍ଟିଆ ବିଦ୍ୟୁତ୍ ସେବା ଯୋଗାଇ ଦେବା ପାଇଁ ପ୍ରତିବଦ୍ଧ । ଓଡ଼ିଶା ଏବେ ଶକ୍ତି କ୍ଷେତ୍ରରେ ଏକ ବଳକା ରାଜ୍ୟ ଅଟେ ।

ମୋ ସରକାର ବିଦ୍ୟୁତ୍ ସରବରାହ ଓ ବଣ୍ଟନ ଭିତ୍ତିଭୂମି ବ୍ୟବସ୍ଥାର ସୁଦୃଢ଼ୀକରଣ ପାଇଁ ଓପିଟିସିଏଲ୍ ଓ ବିତରଣ କମ୍ପାନୀଗୁଡ଼ିକୁ ପାଣ୍ଠି ଯୋଗାଇ ଦେଇଛନ୍ତି । ଓଡ଼ିଶାରେ ୧୪ ହଜାର କିଲୋମିଟର ଅତିରିକ୍ତ ଉଚ୍ଚ କ୍ଷମତାସମ୍ପନ୍ନ ଟେନସନ୍ ଲାଇନ୍ ଓ ପ୍ରାୟ ୨୧ ହଜାର ମେଗା ଭୋଲ୍ଟ ଆମ୍ପିୟର ପ୍ରତିଷ୍ଠା କ୍ଷମତା ରହିଥିବା ବଳିଷ୍ଠ ବିଦ୍ୟୁତ ସରବରାହ ବ୍ୟବସ୍ଥା ରହିଛି । ଲୋ ଭୋଲ୍ଟେଜ୍ ପରିସ୍ଥିତିର ସମାଧାନ ପାଇଁ ୩୩/୧୧ କେଭି ଗ୍ରୀଡ୍ ସବ୍‌ଷ୍ଟେସନ ପ୍ରତିଷ୍ଠା କରାଯାଉଛି । ଓଡ଼ିଏସ୍‌ଏସ୍‌ପି ଅଧୀନରେ ୩୩/୧୧ କେଭିସମ୍ପନ୍ନ ୪୭୩ଟି ଗ୍ରୀଡ ସବ୍‌ଷ୍ଟେସନ ପ୍ରତିଷ୍ଠା କରାଯିବାର ଯୋଜନା ରହିଥିବା ବେଳେ ୩୩୫ଟି ସବ୍‌ଷ୍ଟେସନର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଛି ।

୬୭. ଦ୍ୱିତୀୟ ପର୍ଯ୍ୟାୟ ବିଦ୍ୟୁତ ବଣ୍ଟନ ସଂସ୍କାରର ଅଂଶସ୍ୱରୂପ ମୋ ସରକାର ୩ଟି ବିତରଣ କମ୍ପାନୀ ସେସୁ, ସାଉଥ୍‌କୋ ଓ ୱେସ୍କୋର ପରିଚାଳନା ଦାୟିତ୍ୱ ଯଥାକ୍ରମେ ୩ଟି ଯୌଥ ଉଦ୍ୟୋଗ କମ୍ପାନୀ ଟାଟା ପାୱାର ସେଣ୍ଟ୍ରାଲ ଓଡ଼ିଶା ଡିଷ୍ଟ୍ରିବ୍ୟୁସନ ଲିଃ., ଟାଟା ପାୱାର ସଦର୍ଣ୍ଣ ଓଡ଼ିଶା ଡିଷ୍ଟ୍ରିବ୍ୟୁସନ୍ ଲିଃ ଓ ଟାଟା ପାୱାର ୱେଷ୍ଟର୍ଣ୍ଣ ଓଡ଼ିଶା ଡିଷ୍ଟ୍ରିବ୍ୟୁସନ ଲିଃ.କୁ ପ୍ରଦାନ କରିଛନ୍ତି । ଏହି ବିତରଣ କମ୍ପାନୀଗୁଡ଼ିକରେ ମୋ ସରକାରଙ୍କର ୪୯% ଅଂଶଧନ ଥିବାବେଳେ ଟାଟା ପାୱାର କମ୍ପାନୀ ଲିଃ.ର ଅବଶିଷ୍ଟ ୫୧% ଅଂଶଧନ ରହିଛି ।

୬୮. ମୋ ସରକାର ୫ କିଲୋୱାଟ୍ ଆବଶ୍ୟକତା ଥିବା ଉପଭୋକ୍ତାଙ୍କୁ ୪୮ ଘଣ୍ଟା ମଧ୍ୟରେ ବିଦ୍ୟୁତ୍ ସେବା ଯୋଗାଇ ଦେବା ନିମନ୍ତେ 'ମୋ ବିଦ୍ୟୁତ୍ ପୋର୍ଟାଲ୍' ଓ ମୋବାଇଲ୍ ଆପ୍ଲିକେସନର ଶୁଭାରମ୍ଭ କରିବା ସହିତ ବିଦ୍ୟୁତ୍ ବିଲ୍ ପଇଠ ଏବଂ ଅଭିଯୋଗ ଦାଖଲ ନିମନ୍ତେ ଅନ୍‌ଲାଇନ୍ ସେବା ଯୋଗାଇ ଦେଇଛନ୍ତି ।

୬୯. ମୋ ସରକାର ପରିବେଶ, ବନ୍ୟଜନ୍ତୁ ଓ ପ୍ରାକୃତିକ ସମ୍ପଦର ସଂରକ୍ଷଣ, ସୁରକ୍ଷା ଓ ପୋଷଣ ନିମନ୍ତେ ସଂଖ୍ୟାଧିକ ପ୍ରକଳ୍ପ ଓ ପଦକ୍ଷେପ ଗ୍ରହଣ କରିଛନ୍ତି । ସବୁଜ ମହାନଦୀ ମିଶନ, ରାଜ୍ୟରେ ସବୁଜ ବଳୟ ବୃଦ୍ଧି, ଜାତୀୟ ବନୀକରଣ କାର୍ଯ୍ୟକ୍ରମ, ସବୁଜ ଭାରତ ପାଇଁ ଜାତୀୟ ମିଶନ, ଆମ ଜଙ୍ଗଲ ଯୋଜନା, ପ୍ରକୃତି ପର୍ଯ୍ୟଟନ, ଓଡ଼ିଶା ଜଙ୍ଗଲ କ୍ଷେତ୍ରୀୟ ବିକାଶ ଯୋଜନା ଏବଂ ପୋଷଣୀୟ ଜୈବ ବିବିଧତା ପରିଚାଳନା ଇତ୍ୟାଦି ତନ୍ମଧ୍ୟରୁ କେତୋଟି ପ୍ରମୁଖ ଯୋଜନା ।

ମୋ ସରକାର ପରିବେଶ ସଂରକ୍ଷଣ ଓ ସୁରକ୍ଷାକୁ ପ୍ରୋତ୍ସାହିତ କରିବା ନିମନ୍ତେ ବିଶ୍ୱ ପରିବେଶ ଦିବସ ୨୦୨୦ ଅବସରରେ ୧୪୧ଟି ସ୍ୱେଚ୍ଛାସେବୀ ସଂଗଠନ, ଗ୍ରାମ ଓ ଶିକ୍ଷାନୁଷ୍ଠାନକୁ ପ୍ରକୃତି ମିତ୍ର ଏବଂ ୧୫୬ ଜଣ ବ୍ୟକ୍ତିବିଶେଷଙ୍କୁ ପ୍ରକୃତି ବନ୍ଧୁ ପୁରସ୍କାର ପ୍ରଦାନ କରିଛନ୍ତି ।

୭୦. ଓଡ଼ିଶା ତା'ର ସାଂସ୍କୃତିକ ବିବିଧତା ପାଇଁ ପ୍ରଖ୍ୟାତ । ଐତିହ୍ୟ କ୍ୟାବିନେଟ୍‌ର ଦ୍ୱିତୀୟ ବୈଠକରେ ଓଡ଼ିଆ ସଂସ୍କୃତିର ପ୍ରସାର ନିମନ୍ତେ ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ, ଓଡ଼ିଶା ରାଜ୍ୟ ପ୍ରତ୍ନତତ୍ତ୍ୱ ଓ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ନିମନ୍ତେ ପୃଥକ ନିର୍ଦ୍ଦେଶାଳୟ ପ୍ରତିଷ୍ଠା, ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଡିଜିଟାଇଜେସନ୍ ଓ ବିଜୁ ପଟ୍ଟନାୟକଙ୍କ ସ୍ମୃତି ସ୍ମାରକୀ ଆନନ୍ଦ ଭବନର ଭର୍ଚୁଆଲ୍ ପରିଭ୍ରମଣ ଏବଂ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଜନ୍ମସ୍ଥାନ ସୁଆଣ୍ଡୋର ବୌଦ୍ଧିକ ବିକାଶ ଭଳି ୭ଟି ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ ଅନୁମୋଦିତ ହୋଇଥିଲା । ମୋ ସରକାର ମଧ୍ୟ ପ୍ରାଚୀନ ଗୁରୁଶିଷ୍ୟ ସମ୍ପର୍କ ଓ ରାଜ୍ୟରେ ଲୁପ୍ତପ୍ରାୟ କଳାର ପୁନରୁତ୍‌ଥାନ ନିମନ୍ତେ 'ଦିକ୍ଷାନ୍ତ' ନାମରେ ଏକ ନୂତନ କାର୍ଯ୍ୟକ୍ରମର ଶୁଭାରମ୍ଭ କରିଛନ୍ତି ।

୭୧. ଓଡ଼ିଶା ନିଜର ଭୌଗଳିକ ଅବସ୍ଥିତି ପାଇଁ ପ୍ରତିବର୍ଷ ଏକାଧିକବାର ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ହୁଏ, ଯାହା ଜୀବନ ଏବଂ ଜୀବିକା ଉପରେ ପ୍ରତିକୂଳ ପ୍ରଭାବ ପକାଇବା ସହିତ ଆର୍ଥିକ ଅଭିବୃଦ୍ଧି ବ୍ୟାହତ କରିଥାଏ । ବିଗତ ୫ ବର୍ଷ ମଧ୍ୟରେ ରାଜ୍ୟ ବନ୍ୟା, ବାତ୍ୟା ଏବଂ ମରୁଡ଼ି ଭଳି ବିଭିନ୍ନ ଭୟଙ୍କର ବିପର୍ଯ୍ୟୟର ସାମନା କରିଛି, ଯେଉଁଥିରେ ୨୦୧୮ ମସିହାରେ ଭୟଙ୍କର ଘୂର୍ଣ୍ଣିଝଡ଼ ତିତିଲି, ୨୦୧୯ ମେ ମାସରେ ଅତି ଭୟଙ୍କର ବାତ୍ୟା 'ଫନି' ଓ ୨୦୧୯ ନଭେମ୍ବରରେ ଭୟଙ୍କର ଘୂର୍ଣ୍ଣିବାତ୍ୟା 'ବୁଲ୍‌ବୁଲ୍' , ୨୦୨୦ ମେ ମାସର ମହାବାତ୍ୟା ଅମ୍ପାନ୍ ଅନ୍ତର୍ଭୁକ୍ତ । ମୋ ରାଜ୍ୟର ବିପର୍ଯ୍ୟୟ ମୁକାବିଲା ଆନ୍ତର୍ଜାତିକ ସ୍ତରର ହୋଇଥିବାରୁ ଏହି ମାନ୍ୟତା ଅନୁସରଣ ସହିତ ଏକ ଦୂରଦୃଷ୍ଟିସମ୍ପନ୍ନ ଦୃଷ୍ଟିଭଙ୍ଗୀ ଏବଂ ପ୍ରଭାବୀ ପ୍ରାକ୍ ପ୍ରସ୍ତୁତି ଯୋଗୁଁ ମୋ ସରକାର କୋଭିଡ–୧୯ର ସଫଳ ମୁକାବିଲା କରିବାରେ ସଫଳ ହୋଇଛନ୍ତି, ଯାହାଦ୍ୱାରା ସଂକ୍ରମଣକୁ ନିୟନ୍ତ୍ରଣରେ ରଖାଯିବା ସହିତ ସଂକ୍ରମିତଙ୍କ ଚିକିତ୍ସା ପାଇଁ ଉପଯୁକ୍ତ ଚିକିତ୍ସା ସୁବିଧା କରାଯାଇ ଅମୂଲ୍ୟ ମାନବଜୀବନ ରକ୍ଷା କରାଯାଇପାରିଛି । ୨୦୦୫ ବିପର୍ଯ୍ୟୟ ପରିଚାଳନା ଅଧିନିୟମ ଏବଂ ମହାମାରୀ ଅଧିନିୟମ ୧୮୯୭ ଅନୁଯାୟୀ କୋଭିଡ–୧୯ ମହାମାରୀକୁ ସରକାର 'ବିପର୍ଯ୍ୟୟ' ଭାବେ ଘୋଷଣା କରି ବିଭିନ୍ନ ନିୟାମକ ଏବଂ କୋଭିଡ୍ ପରିଚାଳନା ପଦ୍ଧତି ପ୍ରଣୟନ ଦ୍ୱାରା ମହାମାରୀର ସଂକ୍ରମଣକୁ ରୋକାଯାଇପାରିଛି । କୋଭିଡ୍ ପରିଚାଳନା ପାଇଁ ଜିଲ୍ଲା ଏବଂ ସରକାରୀ ବିଭାଗଗୁଡ଼ିକୁ ରାଜ୍ୟ ବିପର୍ଯ୍ୟୟ ସହାୟତା ପାଣ୍ଠିରୁ ଆବଶ୍ୟକୀୟ ସହାୟତା ଯୋଗାଇ ଦିଆଯାଇଛି ।

୭୨. ୨୦୨୦ ମସିହାରେ ରାଜ୍ୟର ଆଇନ୍ ଶୃଙ୍ଖଳା ପରିସ୍ଥିତି ଶାନ୍ତିପୂର୍ଣ୍ଣ ରହିଥିଲା । ପୋଲିସ୍‌ର ଆଗୁଆ ସୁଚିନ୍ତିତ ପଦକ୍ଷେପ ଯୋଗୁଁ କୌଣସି ବଡଧରଣର ଆଇନ ଶୃଙ୍ଖଳା ପରିସ୍ଥିତି ଉପୁଜି ନାହିଁ । କୋଭିଡ ପରିସ୍ଥିତିର ସଠିକ୍ ଭାବେ ପରିଚାଳନା କରାଯାଇଛି । ୪୯ ଜଣ ପୋଲିସ କର୍ମୀ କୋଭିଡ ସଂଗ୍ରାମରେ ନିଜ ଜୀବନ ଉତ୍ସର୍ଗ କରିଛନ୍ତି ଏବଂ ୯୪୦ ଜଣ ପୋଲିସ୍ କର୍ମୀ ଗୁରୁତର କୋଭିଡ଼ ରୋଗୀଙ୍କ ଚିକିତ୍ସା ପାଇଁ ପ୍ଲାଜ୍‌ମା ଦାନ କରିଛନ୍ତି । ଆଗୁଆ ଏବଂ ପ୍ରଶାସନିକ ପଦକ୍ଷେପ ଯୋଗୁଁ ବିଗତ ୫ ବର୍ଷ ମଧ୍ୟରେ ବାମପନ୍ଥୀ ଉଗ୍ରବାଦ ଦ୍ରୁତ ଗତିରେ ହ୍ରାସ ପାଇଛି ।

ମୋ ସରକାର ମାଲକାନଗିରି ଜିଲ୍ଲା ସ୍ୱାଭିମାନ ଅଞ୍ଚଳର ଗୁରୁ ସେତୁ, କଳାହାଣ୍ଡିର ମୂଷାନାଳ ଏବଂ କନ୍ଧମାଳର ସାଡ଼ିଙ୍ଗିଆଠାରେ ନୂତନ ପୋଲିସ୍ କମ୍ପାନୀ ଅପରେସନ ଭିତ୍ତିଭୂମି ସୃଷ୍ଟି କରିଛନ୍ତି । ସ୍ୱାଭିମାନ ଅଞ୍ଚଳରେ ଯୋଡ଼ାମ୍ବୋ ପୋଲିସ ଥାନା କାର୍ଯ୍ୟକ୍ଷମ ହୋଇଛି ।

୭୩. ମୋ ସରକାର ଭୁବନେଶ୍ୱରଠାରେ ଜରୁରୀ ରେସପନ୍ସ ସପୋର୍ଟ ସିଷ୍ଟମ୍ ସହିତ ଏକ କମାଣ୍ଡ ସେଣ୍ଟର କାର୍ଯ୍ୟକାରୀ କରାଇଛନ୍ତି । ଏହି ବ୍ୟବସ୍ଥାରେ ପୋଲିସ୍, ଅଗ୍ନିଶମ ସେବା ଓ ମହିଳା ଓ ଶିଶୁ ହେଲ୍ପ ଲାଇନ୍ ସମସ୍ତଙ୍କୁ ଏକତ୍ର ଅଣାଯାଇଛି । ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ ସମୟରେ ଓଡ଼ିଶା ଅଗ୍ନିଶମ ସେବା ଉଲ୍ଲେଖନୀୟ ରିଲିଫ୍ ଏବଂ ଉଦ୍ଧାର କାର୍ଯ୍ୟ କରିଛି । ୫'ଟି' ଉପକ୍ରମରେ ଏକ ଉତ୍ସର୍ଗୀକୃତ ୱେବ୍ ପୋର୍ଟାଲ 'ଅଗ୍ନିଶମ ସେବା'କୁ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରାଯାଇଛି, ଯାହାଦ୍ୱାରା ଫାୟାର ସେଫ୍‌ଟି ସାର୍ଟିଫିକେଟ୍ ଏବଂ ଅନୁମୋଦନ ଅନ୍‌ଲାଇନ୍ ମାଧ୍ୟମରେ ମିଳିପାରିବ । ଅଗ୍ନିଶମ ସେବାକୁ ମୋ ସରକାରରେ ଅନ୍ତର୍ଭୁକ୍ତ କରାଯାଇ ଉତ୍ତମ ନାଗରିକ କୈନ୍ଦ୍ରିକ ସେବା ପ୍ରଦାନ କରାଯାଉଛି ।

୭୪. ମୋ ସରକାର ବୈଷୟିକ ପରିବର୍ତ୍ତନ ସହିତ ଖାପ ଖୁଆଇ ନ୍ୟାୟପାଳିକାର ଆଧୁନିକୀକରଣ ଉପରେ ଆବଶ୍ୟକୀୟ ଗୁରୁତ୍ୱାରୋପ କରୁଛନ୍ତି । ମାମଲାଗୁଡ଼ିକର ଭର୍ଚୁଆଲ ଶୁଣାଣି ଏବଂ ବିଚାର ପାଇଁ ଓଡ଼ିଶା ହାଇକୋର୍ଟରେ ହାଇସ୍ପିଡ୍ ଇଣ୍ଟରନେଟ୍ ବ୍ୟବସ୍ଥା କରାଯାଇଛି । ୩୦ଟି ଜିଲ୍ଲା ଜଜ୍‌ଙ୍କ ପାଇଁ ମଧ୍ୟ ଏହା ଯଥାଶୀଘ୍ର ବ୍ୟବସ୍ଥା କରାଯିବ । କୋର୍ଟ କେସ୍ ସମ୍ବନ୍ଧୀୟ କାଗଜାତ୍ ଅନ୍‌ଲାଇନ୍‌ରେ ଉପଲବ୍ଧ କରାଇବା ପାଇଁ ଏକ ସ୍କାନିଂ ଏବଂ ଡିଜିଟାଇଜେସନ୍ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି ।

୭୫. ମୋ ସରକାର ଜନସାଧାରଣଙ୍କୁ ସେବା ପ୍ରଦାନରେ ସର୍ବୋତ୍ତମ ସେବା ପ୍ରଦାନ କରିବା ପାଇଁ କେତେକ ନିର୍ଦ୍ଦିଷ୍ଟ ସେବା ପ୍ରଦାନ ପ୍ରକ୍ରିୟାରେ ସଂସ୍କାର ଆଣିବା ସହ ଉତ୍କୃଷ୍ଟ ଉପାୟ ଅବଲମ୍ବନ କରୁଛନ୍ତି । ନିର୍ଦ୍ଧାରିତ ସମୟସୀମା ମଧ୍ୟରେ ନାଗରିକମାନଙ୍କୁ ସମସ୍ତ ବିଜ୍ଞାପିତ ସେବା ନିର୍ଦ୍ଧାରିତ ସମୟସୀମା ମଧ୍ୟରେ ଯୋଗାଇଦେବାକୁ ଓଡ଼ିଶା ଲୋକସେବା ଅଧିକାର ଅଧିନିୟମ-୨୦୧୨ କାର୍ଯ୍ୟକାରୀ କରାଯାଇଛି । ପ୍ରତ୍ୟେକ ନାଗରିକଙ୍କ ପାଖରେ ସମସ୍ତ ସରକାରୀ ସେବା ଅନ୍-ଲାଇନ୍ ମାଧ୍ୟମରେ ଗୋଟିଏ ପୋର୍ଟାଲ ଜରିଆରେ ଯୋଗାଇ ଦେବା ପାଇଁ 'ଓଡ଼ିଶା ୱାନ୍' ପୋର୍ଟାଲ୍ ଉତ୍ସର୍ଗୀକୃତ ଭାବରେ କାର୍ଯ୍ୟ କରୁଛି । ଅଧିକ ସୁବିଧା ଓ ସମୟଭିତ୍ତିକ ଲୋକସେବା ପ୍ରଦାନକୁ ନିଶ୍ଚିତ କରିବା ପାଇଁ ଓଡ଼ିଶା ୱାନ୍ ପୋର୍ଟାଲ୍ ଓ ସେଣ୍ଟ୍ରାଲ୍ ମନିଟରିଂ ମେକାନିଜିମ୍‌କୁ ସମନ୍ୱିତ କରାଯାଇଛି । ପ୍ରତ୍ୟେକ ନାଗରିକ ଓଡ଼ିଶା ୱାନ୍ ପୋର୍ଟାଲ୍ ଜରିଆରେ ଅନ୍‌ଲାଇନ୍ ଆବେଦନ ଓ ପୁନର୍ବିଚାର ପାଇଁ ଆବେଦନ କରିପାରିବେ । ବିଭିନ୍ନ କୋର୍ଟ ମାମଲାଗୁଡ଼ିକୁ ସମୟଭିତ୍ତିକ ସମୀକ୍ଷା କରିବା ପାଇଁ ଲିଟିଗେସନ୍ ମ୍ୟାନେଜ୍‌ମେଣ୍ଟ ସିଷ୍ଟମ୍ କାର୍ଯ୍ୟକାରୀ ହେଉଛି ।

୭୬. କୋଭିଡ୍-୧୯ ମହାମାରୀର ପରିସ୍ଥିତିରେ ଲକ୍-ଡାଉନ୍ ସମୟରେ ତଥ୍ୟ ଓ ପ୍ରଯୁକ୍ତି ପ୍ରୟୋଗରେ ସଂଖ୍ୟାଧିକ ଲୋକସେବା ସାରା ରାଜ୍ୟରେ ଅନ୍‌ଲାଇନ୍ ମାଧ୍ୟମରେ ଉପଲବ୍ଧ କରାଯାଇଥିଲା । ସରକାରୀ ଅଧିକାରୀ ତଥା କର୍ମଚାରୀମାନେ ଭି.ପି.ଏନ୍ ଦ୍ୱାରା ନିଜ ଘରୁ ସରକାରୀ କାର୍ଯ୍ୟ ସଂପାଦନ କରିପାରିଥିଲେ । 'ଓସ୍‌ୱାନ୍' ଦ୍ୱାରା 'ଲୋକସେବା ଭବନ'କୁ ରାଜ୍ୟର ସମସ୍ତ ବ୍ଲକ୍ ସହ ସଂଯୋଗ କରାଯାଇ ସାରା ରାଜ୍ୟରେ ଭିଡ଼ିଓ-କନ୍‌ଫରେନ୍ସିଂ ସୁବିଧା ଯୋଗାଇ ଦିଆଯାଉଛି । ରାଜ୍ୟର ସମସ୍ତ ଜିଲ୍ଲାପାଳ ଓ କ୍ଷେତ୍ର ଅଧିକାରୀଙ୍କ ସହ ସିଧାସଳଖ ଯୋଗାଯୋଗ ପାଇଁ ସମସ୍ତ ବିଭାଗ ଭିଡ଼ିଓ-କନ୍‌ଫରେନ୍ସିଂ ଆୟୋଜନ କରୁଛନ୍ତି । ଓସ୍ୱାସ୍ ସହିତ ଏମ୍‌ଏସ୍ ଅଫିସ୍ ୩୬୫କୁ ସମନ୍ୱିତ କରାଯାଇ ମାଇକ୍ରୋସଫ୍ଟ ଟିମ୍ ଆପ୍ଲିକେସନ୍ ଦ୍ୱାରା ୱେବ୍ କନ୍‌ଫରେନ୍ସିଂ ଅନୁଷ୍ଠିତ ହୋଇପାରୁଛି ।

୭୭. ସୂଚନା ପ୍ରସାରଣ ସହିତ ଜନସାଧାରଣଙ୍କ ନିକଟରେ ଏହାର ସଠିକ୍ ଉପସ୍ଥାପନ, ସରକାର ଓ ଜନସାଧାରଣଙ୍କ ମଧ୍ୟରେ ଏକ ସଂଯୋଗ ଭଳି କାର୍ଯ୍ୟ କରେ । ଏହା ଯେ କେବଳ ବିଭିନ୍ନ ସରକାରୀ ନୀତି, ଯୋଜନା ଓ କାର୍ଯ୍ୟକ୍ରମ ବିଷୟରେ ଲୋକଙ୍କୁ ସଚେତନ କରାଏ ତାହା ନୁହେଁ, ପରନ୍ତୁ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ ସଫଳତାର ସହିତ କାର୍ଯ୍ୟକାରୀ ହେବା ନିମନ୍ତେ ଜନସହଯୋଗକୁ ସୁନିଶ୍ଚିତ କରାଇଥାଏ । କୋଭିଡ୍-୧୯ ମହାମାରୀର ସଂକ୍ରମଣ ସମୟରେ ଜନସାଧାରଣଙ୍କୁ ସଠିକ୍ ତଥ୍ୟ, ସୂଚନା ଦେବା ସହିତ ଏହାର ଭୟାବହତା ସମ୍ପର୍କରେ ସଚେତନ କରିବାକୁ ସରକାର ଏକ ମିଶନ ଭାବରେ

ଗ୍ରହଣ କରି କାର୍ଯ୍ୟ କରିଥିଲେ । ଦୂରଦର୍ଶନ ସ୍ଲଟ୍, ରେଡ଼ିଓ ଜିଙ୍ଗିଲ୍ସ୍, ମୋବାଇଲ୍ ବାର୍ତ୍ତା ତଥା ବିଭିନ୍ନ ସୋସିଆଲ୍ ମିଡ଼ିଆ ପ୍ଲାଟଫର୍ମ ଜରିଆରେ କୋଭିଡ଼ ସଚେତନତା ସନ୍ଦେଶ ନିୟମିତ ମିଡ଼ିଆ/ପ୍ରେସ୍ ସୂଚନା, କମନ୍-ଫିଡ୍ ଟେକ୍ନୋଲୋଜି ଦ୍ୱାରା ବିଭିନ୍ନ ବିଶେଷଜ୍ଞଙ୍କ ସହ ଆଲୋଚନା ଏବଂ ପରାମର୍ଶ ବ୍ୟାପକ ଜନସଚେତନତା ପାଇଁ ବିଭିନ୍ନ ଆଞ୍ଚଳିକ ଚ୍ୟାନେଲ୍‌ରେ ନିୟମିତ ଭାବରେ ପ୍ରଚାର ଓ ପ୍ରସାର କରାଯାଉଛି ।

୭୮. ସୂଚନା ପ୍ରଯୁକ୍ତି ପ୍ରୟୋଗରେ ମୋ ସରକାର ରାଜସ୍ୱ ପ୍ରଶାସନଙ୍କୁ ଅବାଧ, ସ୍ୱଚ୍ଛ ତଥା ସୁଦକ୍ଷ କରିବାରେ ଏକ ଉତ୍କର୍ଷ ସ୍ତର ହାସଲ କରିଛନ୍ତି । ତହସିଲ ଓ ରେଜିଷ୍ଟ୍ରେସନ ଅଫିସଗୁଡ଼ିକର କମ୍ପ୍ୟୁଟରୀକରଣ, ସୂଚନା ଓ ପ୍ରଯୁକ୍ତି ପ୍ରସୂତ ଭୂଲେଖ, ଭୂନକ୍ସା, ଇ-ମ୍ୟୁଟେସନ, ଇ-ରେଜିଷ୍ଟ୍ରେସନ, ଇ-ପାଉତି ଏବଂ ଇ-ସାର୍ଟିଫିକେଟ୍ ପ୍ରଭୃତି ଏ ଦିଗରେ କେତେଗୁଡ଼ିଏ ପ୍ରମୁଖ ପଦକ୍ଷେପ । ୱେବଭିତ୍ତିକ ଆପ୍ଲିକେସନ୍ ଜରିଆରେ ଅନ୍‌ଲାଇନ୍‌ରେ ଆବେଦନପତ୍ର ପୂରଣ, ଆବଶ୍ୟକୀୟ ଫି ଦାଖଲ, ବିଭିନ୍ନ ସାର୍ଟିଫିକେଟଗୁଡ଼ିକର ଅନୁମୋଦନ ଓ ଡାଉନ୍‌ଲୋଡ ବ୍ୟବସ୍ଥା କାର୍ଯ୍ୟକାରୀ କରାଯାଇଛି । ଏହା ବିଭିନ୍ନ ସରକାରୀ କାର୍ଯ୍ୟାଳୟରେ ଓ ନାଗରିକମାନଙ୍କ ବ୍ୟକ୍ତିଗତ ଉପସ୍ଥିତିକୁ ବହୁ ମାତ୍ରାରେ ହ୍ରାସ କରିବା ସହ ଶାସନରେ ସ୍ୱଚ୍ଛ ଏବଂ ଉଚ୍ଚମାନର କରିପାରିଛି । ବର୍ତ୍ତମାନ ସୁଦ୍ଧା ରାଜ୍ୟରେ 'ବସୁନ୍ଧରା' ଯୋଜନା ମାଧ୍ୟମରେ ମୋ ସରକାର ୪୭,୫୮୭ ଜଣ ବ୍ୟକ୍ତିଙ୍କୁ ବାସପୋଯୋଗୀ ଜମି ଆବଣ୍ଟନ କରିସାରିଛନ୍ତି ।

୭୯. ବିଭିନ୍ନ ବ୍ୟାଙ୍କ ଆକାଉଣ୍ଟରେ ଜମା ରହିଥିବା ପ୍ରାୟ ୨,୮୦୦ କୋଟି ଟଙ୍କା ଅର୍ଥ ବ୍ୟବସ୍ଥାକୁ ଫେରାଇ ଆଣିବାରେ ମୋ ସରକାର ସଫଳ ହୋଇଛନ୍ତି । ରାଜ୍ୟ ସମ୍ବଳର ପ୍ରମୁଖ କରଯୁକ୍ତ ଓ କର ବିହୀନ ସାମଗ୍ରୀ ଉପରେ ବକେୟା ଥିବା କର ଆଦାୟ ପାଇଁ ଓଟିଏସ୍ ବ୍ୟବସ୍ଥା ଆରମ୍ଭ କରାଯାଇଛି । ୨୦୨୧ ଜାନୁଆରୀ ମାସ ଶେଷ ସୁଦ୍ଧା ୩୮.୭୬୦ କୋଟି ଟଙ୍କା ରାଜସ୍ୱ ଆଦାୟ କରିବାରେ ମୋ ସରକାର ସଫଳ ହୋଇଛନ୍ତି, ଯାହା ବିଗତ ଆର୍ଥିକ ବର୍ଷରେ ଏହି ସମୟସୀମା ସୁଦ୍ଧା କରାଯାଇଥିବା ରାଜସ୍ୱ ଆଦାୟଠାରୁ ୭.୩ ପ୍ରତିଶତ ଅଧିକ ଅଟେ । ରାଜ୍ୟ ରାଜସ୍ୱ ଉପରେ କୋଭିଡ୍ ମାତ୍ରାଧିକ ପ୍ରଭାବ ସତ୍ତ୍ୱେ ରାଜ୍ୟ ସରକାର ନିଜସ୍ୱ ରାଜସ୍ୱ କ୍ଷେତ୍ରରେ ଏକ ସକାରାତ୍ମକ ଅଭିବୃଦ୍ଧି ହାସଲ କରିବାରେ ସଫଳ ହୋଇଛନ୍ତି, ଯାହାକି ରାଜ୍ୟର ଅର୍ଥନୈତିକ ପ୍ରକ୍ରିୟାରେ ସୁଧାର ଅଣାଯାଇଥିବାର ଏକ ସକାରାତ୍ମକ ସଂକେତ ଅଟେ ।

୮୦. କୋଭିଡ୍ ମହାମାରୀ ରାଜ୍ୟର ସାଧାରଣ ଆୟ ବ୍ୟୟ ବ୍ୟବସ୍ଥା ପ୍ରତି ଏକ ଅଭୂତପୂର୍ବ ଆହ୍ୱାନ ସୃଷ୍ଟି କଲା । ଏହାଦ୍ୱାରା ସୃଷ୍ଟ ଆର୍ଥିକ ସଂକଟକୁ ମୁକାବିଲା କରିବା ପାଇଁ ମୋ ସରକାର ସାଧାରଣ ଆୟ ବ୍ୟୟର ପୁନଃ ଅଗ୍ରାଧିକରଣ କରାଇଲେ, ଯାହାଦ୍ୱାରା କୋଭିଡ୍ ପରିଚାଳନା ପାଇଁ ଅତ୍ୟାବଶ୍ୟକୀୟ ଅର୍ଥ, କୃଷି ଓ ଆନୁଷଙ୍ଗିକ କ୍ଷେତ୍ର ଅଣୁ, କ୍ଷୁଦ୍ର, ମଧ୍ୟମ ଓ ବୃହତ୍ ଶିଳ୍ପ କ୍ଷେତ୍ରରେ ନିଯୁକ୍ତି ସୁଯୋଗ ସୃଷ୍ଟି ପାଇଁ ବ୍ୟୟ ବରାଦ କରିବାକୁ ସକ୍ଷମ ହେଲେ । ସାମୟିକ ଭାବରେ ଓଡ଼ିଶା ଆପାତକାଳୀନ ପାଣ୍ଠିର ୪୦୦ କୋଟି ଟଙ୍କାର କର୍ପସ ପାଣ୍ଠିକୁ ୨୦୦୦ କୋଟିକୁ ବୃଦ୍ଧି କରାଗଲା, ଯାହା ଫଳରେ କୋଭିଡ଼ ମହାମାରୀକୁ ଦୃଢ଼ ଭାବରେ ମୁକାବିଲା କରିବା ପାଇଁ ଆବଶ୍ୟକୀୟ ଆର୍ଥିକ ସ୍ୱାଧୀନତା ମିଳିପାରିଲା । ଆର୍ଥିକ ସଂକଟ କାଳରେ ଆବଶ୍ୟକୀୟ ନଗଦ ଅର୍ଥ ପରିଚାଳନା ପାଇଁ କାମ୍ପା ଓ ଓଏମ୍‌ବିଏଡିସି ଭଳି ଉତ୍ସର୍ଗୀକୃତ ପାଣ୍ଠି ଉପଯୋଗ କରି କୋଭିଡ଼ ସଙ୍କଟ ସମୟରେ ଆର୍ଥିକ ସାବଲୀଳତା ବଜାୟ ରଖାଗଲା । ଖୋଲା ବଜାରରୁ ଋଣ ଓ ସୁଧହାର ତୁଳନାରେ ପ୍ରାୟ ୧୫୦ରୁ ୨୦୦ ମୌଳିକ ପଏଣ୍ଟ କମ୍‌ରେ ଏହା ଉପଲବ୍ଧ ହୋଇପାରିଲା । ଖୋଲା ବଜାରରୁ ଉଠାଯାଇଥିବା ୨୫୦୦ କୋଟି ଋଣର ପୁନଃଦେୟ ଅର୍ଥ ପରିଶୋଧ କରିବା ପାଇଁ ମୋ ସରକାର ସିଏସ୍ଏଫ୍ କର୍ପସ ପାଣ୍ଠିର ଉପଯୋଗ କଲେ, ଯାହା ଏହି ସଙ୍କଟ ସମୟରେ ରାଜ୍ୟକୁ ଅତ୍ୟାବଶ୍ୟକୀୟ ନଗଦ ଅର୍ଥ ନେଣଦେଣରେ ବେଶ୍ ସହାୟକ ହେଲା ।

୮୧. ମୋ ସରକାର ସାଧାରଣ ନେଣଦେଣ ପରିଚାଳନା ପାଇଁ ସର୍ବୋତ୍କୃଷ୍ଟ ବିଶ୍ୱସ୍ତରୀୟ ସଂସ୍କାର ସମୂହ ହାତକୁ ନେଇଛନ୍ତି । ବଜେଟ୍ ସ୍ୱଚ୍ଛତା ବୃଦ୍ଧି, ମଧ୍ୟମକାଳୀନ ଅର୍ଥ ପରିଚାଳନାକୁ ସୁଦୃଢ଼ କରିବା ଦ୍ୱାରା ବଜେଟ୍‌ର ଦକ୍ଷତା ବୃଦ୍ଧି ସମେତ ଆର୍ଥିକ ସ୍ଥିରତା ବୃଦ୍ଧି କରିବା ପାଇଁ ଏହା ଉଦ୍ଦିଷ୍ଟ । ଏହି ସଂସ୍କାରଗୁଡ଼ିକ ମଧ୍ୟରେ ରାଜ୍ୟ ଆର୍ଥିକ ନେଣଦେଣ ଉପରେ ୩ ବର୍ଷ ପାଇଁ ଏକ ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀ ରହିଥିବା ଏମ୍‌ଟିଏଫ୍ଏଫ୍ ପ୍ରଚଳନ, ଲକ୍ଷ୍ୟଭିତ୍ତିକ ବଜେଟ୍ ପ୍ରସ୍ତୁତି ପ୍ରକ୍ରିୟା ପ୍ରଚଳନ, ମାସିକ ଓ ତ୍ରୈମାସିକ ଆର୍ଥିକ ବିଶ୍ଳେଷଣ ରିପୋର୍ଟ ପ୍ରକାଶନ, ବଜେଟ୍ ଡକ୍ୟୁମେଣ୍ଟ ପ୍ରକାଶ୍ୟକରଣ ଏବଂ ସମସ୍ତ ବିଭାଗଗୁଡିକୁ ଏକ ଅଗ୍ରାଧିକାରଭିତ୍ତିକ ବାସ୍ତବ ବଜେଟ୍ ପ୍ରସ୍ତୁତି ପାଇଁ ଆଗୁଆ ଆର୍ଥିକ ସୀମା ନିର୍ଦ୍ଧାରଣ ଏହି ସଂସ୍କାରଧର୍ମୀ ପ୍ରକ୍ରିୟାରେ ଅନ୍ତର୍ଭୁକ୍ତ ।

୮୨. କୋଭିଡ ଲକ୍‌ଡାଉନ୍ ସମୟରେ, ରାଜ୍ୟରେ ଟ୍ରେଜେରୀ କାର୍ଯ୍ୟ ତଥା ଆର୍ଥିକ ପରିଚାଳନାକୁ ସୁଚାରୁରୂପେ କରିବା ନିମନ୍ତେ ମୋ ସରକାର ସୂଚନା ପ୍ରଯୁକ୍ତି ବିଦ୍ୟାର ବ୍ୟବହାର ପୂର୍ବକ ଅନେକ ସଂସ୍କାରମୂଳକ ପଦକ୍ଷେପ ଗ୍ରହଣ କରିଛନ୍ତି । ମୋ ସରକାର କୋଭିଡ ନିୟମାବଳୀକୁ କଡାକଡି ପାଳନ ସହିତ ବୈଷୟିକ ଜ୍ଞାନକୌଶଳ ପ୍ରୟୋଗ ଦ୍ୱାରା ଟ୍ରେଜେରୀ କାର୍ଯ୍ୟରେ ମାନବସମ୍ବଳ ଉପଯୋଗକୁ ସର୍ବନିମ୍ନ ସ୍ତରରେ ରଖି ଟ୍ରେଜେରୀ ସେବା ଯୋଗାଇ ଦେବା ଭଳି ଦ୍ୱିବିଧ ଉପାୟ ଅନୁସରଣ କରିଛନ୍ତି ।

୮୩. କୋଭିଡ୍ ଲକ୍‌ଡାଉନ୍ ସମୟରେ ଟ୍ରେଜେରୀରେ ବିଲ୍ ହସ୍ତଗତ ହେବା ପର୍ଯ୍ୟନ୍ତ ଅପେକ୍ଷା ନ କରି ଅନ୍‌ଲାଇନ୍‌ରେ ବିଲ୍ ପ୍ରସ୍ତୁତି କରାଯାଇ ଟ୍ରେଜେରୀ କାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରାଯାଇଛି । ଏକ ପୃଷ୍ଠା ବିଶିଷ୍ଟ ବିଲ୍ ବ୍ୟବସ୍ଥା କଡାକଡି ଭାବେ କାର୍ଯ୍ୟକାରୀ କରାଯାଇ ଦରମା ବିଲ୍ ପ୍ରସ୍ତୁତି ବାବଦରେ ବହୁଳ ମାତ୍ରାରେ କାଗଜ ବ୍ୟବହାରକୁ ରୋକାଯାଇପାରିବା ସଙ୍ଗେ ସଙ୍ଗେ ବିଲ୍ କାର୍ଯ୍ୟରେ ନିୟୋଜିତ କର୍ମଚାରୀଙ୍କ ସଂଖ୍ୟା ହ୍ରାସ କରାଯାଇପାରିଥିଲା । ଅଭୂତପୂର୍ବ କୋଭିଡ୍ -୧୯ ମହାମାରୀ ସମୟରେ ଦରମା ପ୍ରଦାନ କ୍ଷେତ୍ରରେ ସାର୍ବଜନୀନ ଅନୁଦାନ ପଦ୍ଧତି ଅବଲମ୍ବନ କରାଯାଇ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ କର୍ମଚାରୀମାନଙ୍କୁ ମାସିକ ଦରମା ପ୍ରଦାନ ତଥା ସେମାନଙ୍କର ବ୍ୟକ୍ତିଗତ ଅଗ୍ରୀମ ଅର୍ଥ ପ୍ରଦାନ ଆଦି ବ୍ୟବସ୍ଥା କରାଯାଇଥିଲା । ଲକ୍ ଡାଉନ୍ ସମୟରେ ଭର୍ଚୁଆଲ ମାଧ୍ୟମରେ କାର୍ଯ୍ୟ କରୁଥିବା ଟ୍ରେଜେରୀଗୁଡିକୁ ନିରବଚ୍ଛିନ୍ନ ସେବା ପ୍ରଦାନ ନିମନ୍ତେ ଆବଶ୍ୟକୀୟ ନିୟମାବଳୀ ସହିତ ସାଧାରଣ ପରିଚାଳନା ପ୍ରକ୍ରିୟା ଜାରି କରାଯାଇଥିଲା ।

୮୪. ମୋ ସରକାର ପେନ୍‌ସନ ଏବଂ ଅନ୍ୟାନ୍ୟ ପେନ୍‌ସନ ସୁବିଧା ପ୍ରଦାନ କ୍ଷେତ୍ରରେ କୌଣସି ବିଳମ୍ବ ଏବଂ ଆବଣ୍ଟନ ପ୍ରକ୍ରିୟାରେ କୌଣସି ଅସୁବିଧା ନ ଉପୁଜିବା ପାଇଁ ଡିଜିଟାଲ ସ୍ୱାକ୍ଷରଯୁକ୍ତ ଇଲେକ୍ଟ୍ରୋନିକ୍ ଅଥରିଟି ବ୍ୟବସ୍ଥା ପ୍ରଚଳନ କରିଛନ୍ତି । ପେନ୍‌ସନ୍ ଏବଂ ପାରିବାରିକ ପେନ୍‌ସନ୍ ପ୍ରଦାନ କ୍ଷେତ୍ରରେ ଟ୍ରେଜେରୀରେ ପ୍ରଥମ ପେନ୍‌ସନ ପାଇବା ସମୟରେ ପ୍ରତ୍ୟକ୍ଷ ଭାବେ ଉପସ୍ଥିତ ନ ରହି ମଧ୍ୟ ଉକ୍ତ ସେବା ଲାଭ କରିବା ନିମନ୍ତେ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇଥିଲା । ଟ୍ରେଜେରୀ କୋଡ୍ ଅନୁଯାୟୀ ବର୍ଷକୁ ଥରେ ପେନ୍‌ସନ ପ୍ରଦାନକାରୀ କର୍ତ୍ତୃପକ୍ଷଙ୍କୁ ପେନ୍‌ସନ୍ ଉପଭୋକ୍ତା ଜୀବିତ ପ୍ରମାଣପତ୍ର ପ୍ରଦାନ କରିବା ଆବଶ୍ୟକ ହୋଇଥାଏ । ମହାମାରୀ ସମୟରେ ବୟସ୍କ ପେନ୍‌ସନ୍‌ଧାରୀଙ୍କ ହିତକୁ ଦୃଷ୍ଟିରେ ରଖି ଜୀବିତ ପ୍ରମାଣପତ୍ର ଦାଖଲର ସମୟସୀମା ନଭେମ୍ବର ୨୦୨୦ରୁ ମେ ୨୦୨୧ ପର୍ଯ୍ୟନ୍ତ ବୃଦ୍ଧି କରାଯାଇଛି । କୋଭିଡ୍ କଟକଣା ମଧ୍ୟରେ ହିତାଧିକାରୀଙ୍କ ଜମାଖାତାକୁ ସିଧାସଳଖ ଅର୍ଥ ପ୍ରେରଣ ନିମନ୍ତେ ସମନ୍ୱିତ ଆର୍ଥିକ ପରିଚାଳନା ବ୍ୟବସ୍ଥାରେ ମିଳୁଥିବା ଏହି ଡିବିଟି ସୁବିଧାର ବ୍ୟାପକ ବ୍ୟବହାର କରାଯାଉଛି ।

୮୫. ୨୦୨୦ ମସିହାର ପ୍ରାରମ୍ଭରେ ଯେତେବେଳେ କୋଭିଡ୍-୧୯ର ପ୍ରାଦୁର୍ଭାବ ଦେଖାଦେଲା, ମୋ ସରକାର ତ୍ୱରିତ ପଦକ୍ଷେପ ଗ୍ରହଣ ପୂର୍ବକ କୋଭିଡ୍ ପରୀକ୍ଷାଗାର ସଂଖ୍ୟା ଏବଂ ସାମର୍ଥ୍ୟ ବୃଦ୍ଧି, ପରିସ୍ଥିତିର ସତର୍କତାମୂଳକ ଅନୁଧ୍ୟାନ ଏବଂ ମହାମାରୀର ବ୍ୟାପକତାକୁ ରୋକିବା ନିମନ୍ତେ ତାଲାବନ୍ଦ/ସଂପୂର୍ଣ୍ଣ ବନ୍ଦ ଘୋଷଣା, ସଂକ୍ରମଣ ସ୍ଥଳ

ଚିହ୍ନଟ ସହିତ କଣ୍ଟେନମେଣ୍ଟ ଅଞ୍ଚଳ ଘୋଷଣା, ସାମାଜିକ ଦୂରତ୍ୱ ନିୟମ ପ୍ରଣୟନ, ପରିଚ୍ଛନ୍ନତା ପାଇଁ ଆବଶ୍ୟକୀୟ ପଦକ୍ଷେପ, ମାସ୍କ ପିନ୍ଧିବା ନିୟମ ଲାଗୁ କରିବା ସହ ବ୍ୟକ୍ତିଗତ ସ୍ତରରେ ସର୍ବୋତ୍କୃଷ୍ଟ ପରିଚ୍ଛନ୍ନତା ରକ୍ଷା ଭଳି ଏକାଧିକ ଉଲ୍ଲେଖନୀୟ କାର୍ଯ୍ୟ କରିଥିଲେ । ଓଡିଶା ଏହି ମହାମାରୀକୁ ସଠିକ୍ ଭାବରେ ପରିଚାଳନା କରିବା ସହିତ ଏହାର ସଂକ୍ରମଣକୁ ରୋକିବାରେ ଅଗ୍ରଣୀ ଭୂମିକା ନିର୍ବାହ କରିଥିଲା ।

୮୬. ମହାମାରୀ ଆମ ପାଇଁ କେବଳ ଏକ ବିରାଟ ଆହ୍ୱାନ ନ ଥିଲା, ଏହା ମଧ୍ୟ ଅତ୍ୟାବଶ୍ୟକ ସେବା ପ୍ରଦାନ ବ୍ୟବସ୍ଥାକୁ ତତ୍‌କ୍ଷଣାତ୍ ବିପର୍ଯ୍ୟସ୍ତ କରିବା ସହ ଅର୍ଥନୈତିକ କାର୍ଯ୍ୟକଳାପକୁ ପ୍ରତିହତ କରି ଜୀବନଜୀବିକା ହରାଇବାର ପ୍ରମୁଖ କାରଣ ସାଜିଥିଲା ।

୮୭. ଉତ୍ତମ ପ୍ରଶାସନିକ ବ୍ୟବସ୍ଥା କାର୍ଯ୍ୟକାରୀ କରିବା ଏବଂ ସ୍ୱଚ୍ଛତାର ସହିତ ସାଧାରଣ ସୁବିଧା ଓ ସେବା ପ୍ରଦାନ ନିମନ୍ତେ ବୈଷୟିକ ଜ୍ଞାନକୌଶଳ ପ୍ରୟୋଗ ଏକ ଉପାଦେୟ ଏବଂ ପ୍ରକୃଷ୍ଟ ଉପାୟ । ମୋ ସରକାର ନିଜ ଶାସନ ବ୍ୟବସ୍ଥାରେ ପରିବର୍ତ୍ତନକାରୀ ସଂସ୍କାର ଆଣିବା ପାଇଁ ୫'ଟି' ଏବଂ 'ମୋ ସରକାର' ଭଳି ଉପକ୍ରମ ଆରମ୍ଭ କରିଛନ୍ତି । ଗ୍ରାମାଞ୍ଚଳରେ ଗୃହ ନିର୍ମାଣ, ଆମର ଶିକ୍ଷାନୁଷ୍ଠାନଗୁଡିକରେ ଲକ୍ଷ ଲକ୍ଷ ଅନୁସୂଚିତ ଜନଜାତି ଓ ଜାତି ବର୍ଗର ଛାତ୍ରଛାତ୍ରୀଙ୍କ ରହିବା ବ୍ୟବସ୍ଥା, ଆମର ସାମାଜିକ-ଅର୍ଥନୈତିକ ଜୀବନଧାରାକୁ ପରିବର୍ତ୍ତନ କରିଥିବା ଶକ୍ତିଶାଳୀ ମିଶନ ଶକ୍ତି ଅଭିଯାନ, ପ୍ରମୁଖ ସ୍ୱାସ୍ଥ୍ୟସେବା କାର୍ଯ୍ୟକ୍ରମ, ପ୍ରତ୍ୟେକ ଯୋଗ୍ୟ ବଞ୍ଚିତ ପରିବାର ପାଇଁ ଆମର ନିଜସ୍ୱ ଖାଦ୍ୟ ନିରାପତ୍ତା ଯୋଜନା, କ୍ରୀଡା ଏବଂ ପର୍ଯ୍ୟଟନ ଭିତ୍ତିଭୂମି ଆମ ପ୍ରଶାସନିକ ସଂସ୍କାର ସମୂହ ଅବା ସାଧାରଣ ଅର୍ଥ ବ୍ୟବସ୍ଥା ପରିଚାଳନାରେ ସଂସ୍କାର ଭଳି ଅନେକ କ୍ଷେତ୍ରରେ ମୋ ରାଜ୍ୟ ଉଲ୍ଲେଖନୀୟ ଭାବେ ଉତ୍ତମ ପ୍ରଦର୍ଶନ କରିଛି । ମୋ ସରକାର ସାଧାରଣ ସେବା ପ୍ରଦାନ, ଜୀବିକା ସୁଯୋଗ ସୃଷ୍ଟି, ଯୋଗାଯୋଗ, ନିରାପଦ ପାନୀୟ ଜଳଯୋଗାଣ, ବିଦ୍ୟୁତ୍ ସରବରାହ, କୃଷି ହିତୈଷୀ ଜଳସେଚନ ତଥା ଅନ୍ୟାନ୍ୟ ସୁବିଧାସୁଯୋଗ ଏବଂ ସ୍ୱାସ୍ଥ୍ୟସେବା ଓ ଶିକ୍ଷା କ୍ଷେତ୍ରରେ ପରିବର୍ତ୍ତନକାରୀ ପଦକ୍ଷେପ ଗ୍ରହଣ କରି ଏସବୁକୁ ପରବର୍ତ୍ତୀ ପର୍ଯ୍ୟାୟକୁ ଉନ୍ନୀତ କରିବା ପାଇଁ ନିରନ୍ତର ଉଦ୍ୟମ କରିବ ।

୮୮. ମୁଁ ପୁଣି ଥରେ କହି ରଖିବାକୁ ଚାହେଁ ଯେ, ମୋ ସରକାର ରାଜ୍ୟର ସମସ୍ତ ଅଞ୍ଚଳର ସମଭାବାପନ୍ନ ବିକାଶ ତଥା ସମାଜର ପ୍ରତ୍ୟେକ ବର୍ଗର ଜନସାଧାରଣଙ୍କୁ ସଶକ୍ତ କରିବା ନିମନ୍ତେ ସଂପୂର୍ଣ୍ଣ ଭାବେ ପ୍ରତିବଦ୍ଧ ।

ମୁଁ ବର୍ତ୍ତମାନ ଆଲୋଚନା ଜାରି ରଖିବା ପାଇଁ ଆପଣଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରି ଏହି ଅଧିବେଶନର ସଫଳତା କାମନା କରୁଛି ।

**ବନ୍ଦେ ଉତ୍କଳ ଜନନୀ ।**

